# ଯୌନପଥେ

ପ୍ରଥମ ଭାଗ

ମୁଖ୍ୟ ସଂକଳକ :

**ଭିକାଈଚରଣ ଦାଶ**



ମୂଲ୍ୟ—ପନ୍ଦର ଟଙ୍କା ମାତ୍ର

ପ୍ରଥମ ସଂସ୍କରଣ
୧୯୭୮

ମୁଦ୍ରାକର :

ଅର୍ଚ୍ଚନା ପ୍ରେସ

କାଜିବଜାର,

କଟକ-୧

# ପଦେ ଅଧେ

ମନୁଷ୍ୟ ଜୀବନରେ ଯୌନଶକ୍ତିର ପ୍ରଭାବ କମ୍ ନୁହେଁ । ସମୟେ ସମୟେ ଏହି ପ୍ରଭାବରେ ଅନ୍ଧ ହୋଇ ମନୁଷ୍ୟ ପଶୁବତ୍ ଆଚରଣ କରିଥାଏ । ଏହି ପ୍ରବାହକୁ ଆୟତ୍ତ କରିବାକୁହିଁ ସାଧାରଣତଃ "ସଂଯମ" କହିଥାନ୍ତି ।

ବାର ବା ଚଉଦ ବର୍ଷ ପୂର୍ବେ ସଙ୍ଗମେଳରେ କୌଣସି ଏକ ଚିନ୍ତାଧାରାରେ ପଡ଼ି ଏହିସବୁ ସଂକଳନ କରିଥିଲି । ବନ୍ଧୁ ବାନ୍ଧବଙ୍କ ଅନୁରୋଧ ସତ୍ତ୍ୱେ ଆଜଯାଏଁ ବହିଖଣ୍ଡିକ ପ୍ରକାଶ ପାଇ ପାରି ନ ଥିଲା । ଆଜି ଏହା ପ୍ରକାଶ ପାଉଥିବା ଶୁଣିପାରୁଛି । ଯଦି କୌଣସି ପାଠକର ଉପକାରରେ ଆସେ, ତାହାହେଲେ ପରିଶ୍ରମ ସାର୍ଥକ ହେଲା ବୋଲି ମନେ କରିବି ।

—ମୁଖ୍ୟ ସଂକଳକ

# ସୂଚୀ





# ଆରମ୍ଭ

ଏହି ଯୁଗରେ ଆମେ ଜଟିଳ ଅର୍ଥନୈତିକ ଓ ରାଜନୈତିକ ବାତାବରଣରେ ବାସ କରୁ । ଏହା ଦ୍ୱାରା ଆମର କୁଟୁମ୍ବ-ଜୀବନରେ ବାଧା ଆସିବା ସଙ୍ଗେ ସଙ୍ଗେ ସ୍ୱାସ୍ଥ୍ୟର ଅପଚୟ ଯୋଗୁ ବୈବାହିକ ଜୀବନରେ ମଧ୍ୟ ଅସୁବିଧା ସୃଷ୍ଟି ହୁଏ । ନିଜର ଅର୍ଥନୈତିକ ବା ରାଜନୈତିକ ବା କୁଟୁମ୍ବ-ଜୀବନରେ କୌଣସି ବ୍ୟାଘାତ ଆସିଲେ ଉପଦେଶ ବା ପରାମର୍ଶ ନିମନ୍ତେ ଅନ୍ୟକୁ କହିହୁଏ; କିନ୍ତୁ ବୈବାହିକ ଜୀବନରେ ଯେତେ ଅସୁବିଧା ହେଲେ ମଧ୍ୟ ଲଜ୍ଜା ଯୋଗୁ କାହାର ଆଗରେ ପ୍ରକାଶ କରିବା ସହଜ ହୁଏ ନାହିଁ ।

ପଶୁମାନଙ୍କ ଯୌନକ୍ରିୟା କେବଳ ସେହି ଗୋଷ୍ଠୀର ସଂଖ୍ୟାବୃଦ୍ଧି କରିବା ଉଦ୍ଦେଶ୍ୟରେ ହୋଇଥାଏ । ସେମାନଙ୍କର ପ୍ରତ୍ୟେକ ବର୍ଷ କେବଳ କେତୋଟି ସପ୍ତାହ ନିମନ୍ତେ ଯୌନପ୍ରବୃତ୍ତି ଉତ୍ତେଜିତ ହୁଏ । ଏହାକୁ ସେମାନଙ୍କର ମଦକାଳ କୁହାଯାଏ । ଯେତେବେଳେ ମାଈପଶୁଟି ଗର୍ଭଧାରଣ କରେ, ସେ ପୁଂ-ପଶୁ ପ୍ରତି ଆଉ ଆକୃଷ୍ଟ ହୁଏ ନାହିଁ କିମ୍ବା ଅଗ୍ରସର ହୁଏ ନାହିଁ । ଏଥିରୁ ବୁଝାଯିବ ଯେ ପଶୁମାନଙ୍କର ଯୌନ-କ୍ଷୁଧା ଗର୍ଭଧାରଣରେ ହିଁ ଶେଷ ହୁଏ । ଯୌନକ୍ରିୟାରେ ପଶୁମାନେ ଆନନ୍ଦ ଅନୁଭବ କରିବା ଦେଖାଗଲେ ହେଁ ଗର୍ଭଧାରଣରେ ତାହା ଶେଷ ହୁଏ; ଯେପରି ପାଣି ପିଇବା ତୃଷାନିବାରଣରେ ଶେଷ ହୋଇଥାଏ ।

ଆଦିମ ଯୁଗରୁ ମନୁଷ୍ୟ ଏହି ଦିଗରେ ପଶୁମାନଙ୍କ ଠାରୁ ଭିନ୍ନ । ବର୍ଷର କେତେକ ନିର୍ଦ୍ଦିଷ୍ଟ ସପ୍ତାହ ଛାଡ଼ିଦେଲେ ପଶୁମାନେ ଅନ୍ୟ ସମୟରେ ଯୌନକ୍ରିୟାରେ ରତ ହୁଅନ୍ତି ନାହିଁ; ମାତ୍ର ମନୁଷ୍ୟ ପକ୍ଷରେ ସେପରି କୌଣସି ନିର୍ଦ୍ଦିଷ୍ଟ ଦିନ ବା ସପ୍ତାହ ନାହିଁ । ବର୍ଷସାରା ଯେ କୌଣସି ସମୟରେ ଯୌନ-ପ୍ରବୃତ୍ତି ଚରିତାର୍ଥ ନିମନ୍ତେ ସେ ଯୌନକାର୍ଯ୍ୟରେ

ରତ ହୋଇ ତୃପ୍ତି ଅନୁଭବ କରିପାରେ । ମହିଳାମାନଙ୍କ ଗର୍ଭସଂଗ୍ରହ ପରେ ମଧ୍ୟ ଅନେକ ସ୍ଥାନରେ ସେମାନଙ୍କ ଯୌନତୃଷା ବୃଦ୍ଧି ପାଇବା ଲକ୍ଷ୍ୟ କରାଯାଇଛି । ସେହେତୁ ମନୁଷ୍ୟ ପକ୍ଷେ ଯୌନ-ପ୍ରବୃତ୍ତି ଓ ଯୌନକ୍ରିୟା ଗର୍ଭଧାରଣ ବା ଗର୍ଭସଂଗ୍ରହରେ ଶେଷ ନ ହୋଇ 'ତା'ଠାରୁ ଅଲଗା ବର୍ତ୍ତିରହେ ।

ସନାତନୀମାନେ ଧର୍ମନାମରେ ସ୍ୱାମୀ ଓ ସ୍ତ୍ରୀଙ୍କୁ ବର୍ଷତମାମ ଅଲଗା ଅଲଗା ରହିବା ନିମନ୍ତେ ଉପଦେଶ ଦେଇଥାନ୍ତି । ଏହି ଭାବରେ ଯୌନ-କ୍ଷୁଧାକୁ ଅନିଚ୍ଛା ସତ୍ତ୍ୱେ ଦବାଇ ରଖିବା ଦ୍ୱାରା ଦୁଇ ପ୍ରକାର ଖରାପ ପରିଣତି ହୋଇପାରେ; ଯଥା—(କ) ଏହା ଫଳରେ ମନୁଷ୍ୟ ଜୀବନକୁ ଉପଭୋଗ କରିପାରେ ନାହିଁ ଏବଂ ଜୀବନ ଶୁଷ୍କ ହୋଇଉଠେ । ତଦ୍ଦ୍ୱାରା ମୁଣ୍ଡବ୍ୟଥା, କୋଷ୍ଠକାଠିନ୍ୟ, ଅନିଦ୍ରା ପ୍ରଭୃତି ରୋଗ ଆରମ୍ଭ ହୋଇପାରେ । (ଖ) ପୁନଶ୍ଚ ସମାଜର ମଧ୍ୟ କ୍ଷତି ହୁଏ । କୁଟୁମ୍ବ-ଜୀବନରେ ଖାଇବା, ପିଇବା, ଶୋଇବା ପ୍ରଭୃତିର ସୁବିଧା ରହେ ନାହିଁ । ଖାଇବା ଅର୍ଥାତ୍ ଆର୍ଥିକ ଅବସ୍ଥା ଓ ଶୋଇବା ଅର୍ଥାତ୍ ଜୀବନ ଉପଭୋଗ କରିବା । ସେହେତୁ ପୂର୍ବାଚାର୍ଯ୍ୟମାନେ ଯୌନ-ସମ୍ବନ୍ଧୀୟ ଶିକ୍ଷାର ପ୍ରସାର ନିମନ୍ତେ ଉପଯୁକ୍ତ ଗ୍ରନ୍ଥମାନ ରଚନା କରିଥିଲେ । ସାମାଜିକ ଜୀବନର ଉନ୍ନତି ନିମନ୍ତେ କାମବିଜ୍ଞାନକୁ ଗୋଟିଏ ଶାସ୍ତ୍ର ବୋଲି ଗ୍ରହଣ କରାଯାଇଥିଲା । ଉପଯୁକ୍ତ ଯୌନଶିକ୍ଷା ନ ପାଇ ଯୌନକ୍ରିୟାରେ ରତ ହେବାଦ୍ୱାରା ସମସ୍ତ ସମୟରେ ଯେଉଁ ଭୟାବହ ପରିଣତି ହୁଏ, ତଦ୍ଦ୍ୱାରା କୁଟୁମ୍ବ-ଜୀବନରେ ସୁଖ ସମ୍ଭୂଳେ ନଷ୍ଟ ହୋଇଯାଏ । ଏହା ଦ୍ୱାରା ନିଜର କ୍ଷତି ହେବା ସଙ୍ଗେ ସଙ୍ଗେ ସମାଜର ମଧ୍ୟ କ୍ଷତି ହୁଏ ।

ଅତି ପ୍ରାଚୀନ କାଳରେ ମହିଳାମାନଙ୍କ ସ୍ଥାନ ସେତେ ଉଚ୍ଚରେ ନ ଥିଲା । ଯୌନ-କ୍ଷୁଧା ମେଣ୍ଟାଇବା, ସନ୍ତାନ ଉତ୍ପାଦନ କରିବା ଓ କେତେକ ଧର୍ମକାର୍ଯ୍ୟ କରିବା ନିମନ୍ତେ ସ୍ତ୍ରୀମାନଙ୍କର ଉପସ୍ଥିତି ଆବଶ୍ୟକ ବୋଲି ସେତେବେଳର ସମାଜ ମନେ କରୁଥିଲା । ମହିଳାମାନଙ୍କୁ ଯୌନକ୍ରିୟାରେ ତୃପ୍ତ କରିବା କଷ୍ଟକର ବୋଲି ପୁରୁଷମାନଙ୍କର ଧାରଣା ଥିଲା । ନାରୀମାନେ ଅନେକ ସମୟରେ ଯୌନକ୍ରିୟାରେ ଅତୃପ୍ତ ରହୁଥିଲେ । ନାରୀମାନେ ଯୌନକ୍ରିୟାରେ ଅତୃପ୍ତ ରହିଲେ ସେମାନଙ୍କ ମାନସିକ ଅବସ୍ଥା ଖରାପ ଦିଗକୁ ଗତି କରେ । ଦୈନନ୍ଦିନ କାର୍ଯ୍ୟକ୍ରମରେ

ଅନେକ ସମୟରେ ଏହା ପ୍ରତିଫଳିତ ହୁଏ ଓ ବରାବର ଅତୃପ୍ତ ରହିବା ଦ୍ୱାରା କ୍ରମଶଃ ସ୍ୱାସ୍ଥ୍ୟର ଅବନତି ହୁଏ ।

ନାରୀମାନଙ୍କ ଶିକ୍ଷା ଓ ପ୍ରଗତିର ବୃଦ୍ଧି ସଙ୍ଗେ ସଙ୍ଗେ ସେମାନେ ମାନସିକ କ୍ଷେତ୍ରରେ ପୁରୁଷମାନଙ୍କ ସହିତ ସମକକ୍ଷ ହୋଇ କାର୍ଯ୍ୟ କରିବା ପାଇଁ ସମସ୍ୟା ଉଠିଛି । ଆଜି ପର୍ଯ୍ୟନ୍ତ ସେମାନେ ପୁରୁଷମାନଙ୍କ ଉପରେ ପୂରାପୂରି ନିର୍ଭର କରିଆସୁଥିଲେ । ବର୍ତ୍ତମାନ ସେମାନେ ଅଧିକ ସ୍ୱାଧୀନତା କାମନା କରୁଛନ୍ତି । ଶିକ୍ଷା, ଆର୍ଥିକ କ୍ଷେତ୍ରରେ ସ୍ୱାଧୀନତା ଓ କାର୍ଯ୍ୟ-କ୍ଷେତ୍ରରେ ସ୍ୱାଧୀନତା ସେମାନଙ୍କ ଏହି ଚିନ୍ତାର ମୂଳ ଭିତ୍ତି । ଏପରି କି ଖେଳକସରତ୍, ଉଡ଼ାଜାହାଜ ଚାଳନା, ଦୌଡ଼-ପ୍ରତିଯୋଗିତା ପ୍ରଭୃତିରେ ପୁରୁଷମାନଙ୍କ ସହିତ ପ୍ରତିଯୋଗିତା କରିବା ପାଇଁ ଅନେକ ପ୍ରସ୍ତୁତ ନାହାନ୍ତି ।

ସଭ୍ୟତା ମାନବସମାଜରେ ମାନସିକ ବିକାଶ ଆଣିବା ସଙ୍ଗେ ସଙ୍ଗେ ଜୀବନକୁ ଜଟିଳ କରିଦେଇଛି । ପ୍ରେମ ସହିତ ଧର୍ମର ସଂଯୋଗ ହୋଇଯାଇଛି । ପ୍ରେମ ଓ ସ୍ନେହର ଅନୁଭବ ଅଧିକ ଗମ୍ଭୀର ହୋଇଛି । କିନ୍ତୁ ପ୍ରବୃତ୍ତି ବା ଇଚ୍ଛା ଓ ସେଥିର ତୃପ୍ତିରେ ବହୁତ ବାଧା ସୃଷ୍ଟି ହୋଇଛି । ସେହେତୁ ପୁରୁଷ ଓ ନାରୀ ଉପଯୁକ୍ତ ବୟସରେ ପଦାର୍ପଣ କରି ବୈବାହିକ ଜୀବନ ଆରମ୍ଭ କଲାବେଳେ ଯୌନଶିକ୍ଷା ପାଇବା ଉଚିତ ।

ପୂର୍ବେ ମନୁଷ୍ୟମାନଙ୍କ ଯୌନଜୀବନ ଉପରେ ବିଶେଷ ଗବେଷଣା ହେଉ ନ ଥିଲା । ତଥାପି କେତେକ ଅବସ୍ଥା ନେଇ ସମାଜର ମନୀଷୀମାନେ ସାଧାରଣ ନିୟମମାନ ପ୍ରସ୍ତୁତ କରି ଧର୍ମ ସହିତ ପ୍ରଚାର କରୁଥିଲେ । ଯଥା—ୟୁହୁଦୀମାନଙ୍କର ଧର୍ମଗ୍ରନ୍ଥ 'ତାଲମୁଡ଼'ରେ, ଭାରତର ଶାସ୍ତ୍ରମାନଙ୍କରେ ଏବଂ ବାଇବେଲ୍‌ରେ ମଧ୍ୟ ଏହି ବିଷୟ ଉଲ୍ଲେଖ କରାଯାଇଅଛି ।

ଏହାପରେ ସମାଜର ବିଭିନ୍ନ ଅବସ୍ଥା ଦୃଷ୍ଟିରୁ ହିପୋକ୍ରେଟିସ୍‌ଙ୍କ ପରି ବଡ଼ ବଡ଼ ମନୀଷୀମାନେ ନାରୀମାନଙ୍କ ଶରୀରଗଠନ, ରୋଗ ଓ ବନ୍ଧ୍ୟାଦୋଷ ପ୍ରଭୃତି ବିଷୟରେ ଲେଖିଥିଲେ । ଆରିଷ୍ଟୋଟଲ ମଧ୍ୟ ନାରୀମାନଙ୍କ ଜନନେନ୍ଦ୍ରିୟ ବିଷୟରେ ଆଲୋଚନା କରିଥିଲେ । ଏରିଟ୍ୟୁସ୍ (Aretaeus) ଓ ଗାଲେନ (Galens ) ପ୍ରଭୃତିଙ୍କ ପୁରୁଷ ଓ ନାରୀର ପ୍ରଭେଦ ସଂପର୍କରେ ଲେଖା ଅତ୍ୟନ୍ତ ଉଲ୍ଲେଖଯୋଗ୍ୟ । ଷୋଡ଼ଶ

ଶତାବ୍ଦୀରେ ପ୍ରଥମେ ନାରୀମାନଙ୍କ ରୋଗବିଷୟ ନେଇ ଲେଖାଯାଇଥିଲା । ଏହା ଅଧିକାଂଶ ପୂର୍ବପ୍ରଣୀତ ବିଷୟମାନଙ୍କର ପୁନରାବୃତ୍ତି କହିଲେ ଚଳେ । ଏହାପରେ ଅଷ୍ଟାଦଶ ଶତାବ୍ଦୀରେ ସ୍ତ୍ରୀରୋଗ ଉପରେ ବିଶେଷ ନଜର ପଡ଼ିଥିଲା । ୧୮୩୯ ମସିହାରେ ଲିପ୍‌ଜିଗ୍‌ର ବୁସ୍ (Busch) ଙ୍କଠାରୁ ନାରୀମାନଙ୍କ ଜନନେନ୍ଦ୍ରିୟ ବିଷୟ ନେଇ ବିଶେଷ ଚର୍ଚ୍ଚା ହୋଇଥିଲା ।

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ନାରୀମାନଙ୍କ ଜନନେନ୍ଦ୍ରିୟରେ ରୋଗ ଓ ତାହାର ସ୍ନାୟବିକ ତନ୍ତ୍ରରେ ପ୍ରଭାବ ନେଇ ଗବେଷଣା ହୋଇଥିଲା । ମନୁଷ୍ୟର ବଂଶବୃଦ୍ଧି ନାରୀମାନଙ୍କ ଉପରେ ବିଶେଷ ନିର୍ଭର କରୁଥିବା ଯୋଗୁଁ ଏହି ଦିଗରେ ବହୁ ଡାକ୍ତର ଓ ଯୌନବିତ୍ ଗବେଷଣା କରିଥିଲେ ।

ପ୍ରଥମ ରଜଃସ୍ରାବର ଆରମ୍ଭରୁ ଯୌନଜୀବନର ଶେଷ ପର୍ଯ୍ୟନ୍ତ ନାରୀଜୀବନକୁ କେତୋଟି ସ୍ତରରେ ବିଭକ୍ତ କରାଯାଇପାରେ; ଯଥା— ପ୍ରଥମ ରଜଃସ୍ରାବ, ଜନନେନ୍ଦ୍ରିୟର ପୂର୍ଣ୍ଣାଙ୍ଗପ୍ରାପ୍ତି, ଯୌନ-ସଙ୍ଗମ, ଗର୍ଭସଞ୍ଚାର, ଗର୍ଭଧାରଣ, ପ୍ରସବ ଓ ସ୍ତନ୍ୟଦାନ ଏବଂ ପରିଶେଷରେ ପରିଣତ କାଳର ଆରମ୍ଭ ଓ ରଜଃସ୍ରାବ ବନ୍ଦ ହେବା । ଏଥିର ପ୍ରତ୍ୟେକ ସ୍ତରରେ ନାରୀଶରୀରର ପରିବର୍ତ୍ତନ ଆସେ ଓ ତଦ୍ୱାରା ତାହାର ମାନସିକ ଓ ଶାରୀରିକ ସ୍ୱାସ୍ଥ୍ୟ, ଯଥା—ହୃତ୍‌ପିଣ୍ଡ କ୍ରିୟା, ମସ୍ତିଷ୍କ, ସ୍ନାୟୁ, ଚର୍ମ, ପଞ୍ଚେନ୍ଦ୍ରିୟ, ହଜମଶକ୍ତି ଓ ରକ୍ତ-ସଂଚାଳନ ଇତ୍ୟାଦି ଉପରେ ପ୍ରଭାବ ପଡ଼େ । ପୁଣି ନାରୀର ଯୌନ-ଜୀବନକୁ ତିନିଭାଗରେ ବିଭକ୍ତ କରାଯାଇପାରେ, ଯଥା—

(୧) ରଜଃସ୍ରାବର ଆରମ୍ଭ ବା ଯୌବନର ଆରମ୍ଭ ଯାହାଦ୍ୱାରା ଯୌନ-ପ୍ରବୃତ୍ତି ଆରମ୍ଭ ହେବାର ସୂଚନା ମିଳେ ।

(୨) ଯୌବନ ବା ଯୁବାବସ୍ଥା ଅର୍ଥାତ୍ ବର୍ଦ୍ଧିତ ନାରୀ । ଏହି ସମୟରେ ଯୌନ-ସଙ୍ଗମ, ଗର୍ଭସଂଚାର, ପ୍ରସବ ଓ ସ୍ତନ୍ୟଦାନ ।

(୩) ଯୌନ-ଜୀବନର ଶେଷ ବା ପରିଣତ କାଳ—ଯେଉଁ ସମୟରେ ନାରୀର ମାସିକ ରଜଃସ୍ରାବ କ୍ରମେ ବନ୍ଦ ହୋଇଆସେ ।

ଏହି ତିନୋଟି ଅବସ୍ଥା ନାରୀର ଶାରୀରିକ ଓ ମାନସିକ କ୍ଷେତ୍ରରେ ବହୁତ ପରିବର୍ତ୍ତନ ଆଣେ ।

ମ୍ୟାଡେମ ଡ ଷ୍ଟେଲ (Madame de Stael) କହିଛନ୍ତି ଯେ, ପ୍ରେମ ପୁରୁଷ ପକ୍ଷେ ସାମାନ୍ୟ ଘଟଣା ହୋଇପାରେ; କିନ୍ତୁ ଏହା ନାରୀ-ଜୀବନର ସର୍ବସ୍ୱ।

ସଭ୍ୟତାର ବୃଦ୍ଧିରେ ଆଦିମ ମାନବଠାରୁ ଆଜି ପର୍ଯ୍ୟନ୍ତ ପ୍ରତ୍ୟେକ ଜାତିର ଇତିହାସରେ ଦେଖାଯିବ ଯେ ମନୁଷ୍ୟ କେବଳ ଯୌନଜୀବନର ସମୟ ମଧ୍ୟରେ କାର୍ଯ୍ୟ କରିପାରିଛି। ସେହି ବୟସର ପୂର୍ବରୁ ବା ପରେ ସେ ସେପରି ଉତ୍କୃଷ୍ଟ କାର୍ଯ୍ୟ କରିଥିବାର ପ୍ରାୟ୍ୟ ଦେଖାଯାଏ ନାହିଁ। ଧର୍ମ, ବିଜ୍ଞାନ, ନିୟମ-ପ୍ରଣୟନ, ସ୍ୱାସ୍ଥ୍ୟ ପ୍ରଭୃତି ଦିଗରେ କେବଳ ଏହି ବୟସରେ ମନୁଷ୍ୟ ଯାହା କିଛି କରିଯାଇଛି। ସେହେତୁ ମାନବସମାଜରେ ଯୌନ-ଜୀବନର ଇତିହାସ ତାହାର ସଭ୍ୟତାର ଇତିହାସ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ।

ଆଦିମ ମାନବସମାଜରେ ମନୁଷ୍ୟମାନେ ପ୍ରକୃତିର କୋଳରେ ବାସ କରୁଥିଲେ। ନାରୀ ବା ପୁରୁଷର ଯୌନ-ଜୀବନ ସେମାନଙ୍କର ସେପରି କିଛି ଦୃଷ୍ଟି ଆକର୍ଷଣ କରି ପାରି ନ ଥିଲା। ପ୍ରାଣୀବିତ୍‌ମାନେ କହନ୍ତି, ପ୍ରଥମେ ନାରୀମାନଙ୍କୁ ସମ୍ପତ୍ତି ହିସାବରେ ଦେଖାଯାଉଥିଲା। ଏ ପ୍ରକାର ସମ୍ପତ୍ତିକୁ ବିଶେଷ ମୂଲ୍ୟ ଦିଆଯାଉ ନ ଥିଲା କିମ୍ବା ଜାଗ୍ରତ କରାଯାଉ ନ ଥିଲା। ଏହିପରି ସମାଜରେ ଯୌନ-ପ୍ରବୃତ୍ତି ଉପରେ କୌଣସି ବାଧା ରହି ନ ଥିଲା। ଯୌନ-ପ୍ରବୃତ୍ତିର ତୃପ୍ତି ନିମନ୍ତେ କୌଣସି ନିୟମ ବା ଲଜ୍ଜାର ପ୍ରଶ୍ନ ବା ସ୍ଥାନ ନ ଥିଲା। ପୁରୁଷ ଓ ନାରୀର ଯୌନ-ସଙ୍ଗମରେ କୌଣସି ବାଧା ଆସୁ ନ ଥିଲା। ନାରୀର ସତୀତ୍ୱ ଉପରେ ପୁରୁଷମାନେ ଜୋର୍ ଦେଉ ନ ଥିଲେ କିମ୍ବା ନାରୀର ପ୍ରେମ ନିମନ୍ତେ ପ୍ରତିଯୋଗିତା ହେଉ ନ ଥିଲା। ନାରୀମାନେ ସନ୍ତାନ ଜନ୍ମ କରିବା ଗୋଟିଏ ସାଧାରଣ ବିଷୟ ଥିଲା। ସମାଜରେ ସମସ୍ତ ନାରୀଙ୍କ ଉପରେ ସବୁ ପୁରୁଷମାନଙ୍କର ସମ-ଅଧିକାର ରହିଥିଲା। ପ୍ରତ୍ୟେକ ପୁରୁଷର ପ୍ରତ୍ୟେକ ନାରୀ ଉପରେ ଅଧିକାର ଥିଲା। ପ୍ରତ୍ୟେକ ପୁରୁଷ ତା'ଠାରୁ ଯାହା ଦାବି କରୁଥିଲା, ବାଛ ବିଚାର କରିବାରେ ତାର ଅଧିକାର ନ ଥିଲା।

ଏହା ପରେ ଯୁବତୀର ଶୀଳତା, ଅକ୍ଷତ ଅବସ୍ଥାର ମୂଲ୍ୟ, ସ୍ତ୍ରୀର ସତୀତ୍ୱ, ମାତାର କର୍ତ୍ତବ୍ୟ ଓ ଅଧିକାର କ୍ରମେ କ୍ରମେ ମାନବସମାଜରେ ପ୍ରବେଶ କରି ମାନବସଭ୍ୟତାକୁ ବଢ଼ାଇଦେଲା।

କୁଟୁମ୍ବ-ଜୀବନର ଆରମ୍ଭ ଓ କ୍ରମବିକାଶ, ପ୍ରେମ ଓ ବିବାହର ସାମାଜିକ ସ୍ଥାନ ଆସିବା ପରେ ସମାଜରେ ନାରୀର ସ୍ଥାନ ଉନ୍ନତ ହେଲା ଓ ସେ ଗୃହିଣୀ ହିସାବରେ ସମାଜରେ ପ୍ରଶଂସା ପାଇଲା । କିନ୍ତୁ ଆଧୁନିକ ଯୁଗରେ ନାରୀମାନଙ୍କର ଯେଉଁ ସ୍ୱାଧୀନତା ଦାବି ଓ ଭାବଭଙ୍ଗୀ ଦେଖା-ଯାଉଛି, ସେଥିରେ ସମାଜରେ ନାରୀର ସ୍ଥାନ ଶେଷରେ କେଉଁଠି ହେବ, ତାହା ଦେଖିବାକୁ ରହିଲା ।

ବାଇବେଲ୍‌ରେ ମଧ୍ୟ ନାରୀମାନଙ୍କର ସମାଜରେ ସ୍ଥାନ ଓ ସେମାନଙ୍କର କର୍ତ୍ତବ୍ୟ ବିଷୟରେ ଉଲ୍ଲେଖ ଅଛି । ପ୍ରାଚୀନ ଗ୍ରୀସ୍ ଓ ରୋମ୍ ରାଜ୍ୟରେ କୁଟୁମ୍ବମାନଙ୍କରେ ଗୃହିଣୀ ବା ନାରୀମାନଙ୍କ ପ୍ରଭାବ ଅଧିକ ଥିଲା । ପ୍ରାଚୀନ ଜର୍ମାନ୍ ଦେଶରେ ନାରୀମାନଙ୍କ ସତୀତ୍ୱ ଉପରେ ବିଶେଷ ଜୋର୍ ଦିଆଯାଉଥିଲା । ୟୁରୋପରେ ଖ୍ରୀଷ୍ଟଧର୍ମର ପ୍ରଚାର ଫଳରେ ନାରୀମାନେ ପୁରୁଷର ସାଥୀ ଓ ସମସ୍କନ୍ଧଭାବରେ ସମାଜରେ ଚଳିଲେ । ଖ୍ରୀଷ୍ଟଧର୍ମ ମଧ୍ୟ ନାରୀମାନଙ୍କ ସତୀତ୍ୱ ଉପରେ ଜୋର୍ ଦେଉଥିଲା ।

ସଭ୍ୟତାର ବୃଦ୍ଧି ସଙ୍ଗେ ସଙ୍ଗେ ନାରୀମାନଙ୍କ ପୂର୍ବ ଅବସ୍ଥାର ପରିବର୍ତ୍ତନ ହୋଇ ସାମାଜିକ ନିୟମ ଓ ଧର୍ମ ଭିତରେ ସେମାନଙ୍କ ଯୌନ-ଜୀବନ ସୀମିତ ହେଲା । ସାମାଜିକ ଅବସ୍ଥାର ସୂଚନା ଅନୁସାରେ ନିୟମମାନ ପ୍ରଣୀତ ହେଲା । ସମାଜରେ ଏହି ନିୟମମାନ ଗ୍ରହଣ କଲାବେଳେ ନାରୀମାନଙ୍କ ମାନସିକ ଓ ଶାରୀରିକ ତତ୍ତ୍ୱ ଭଲଭାବେ ବୁଝିବା ଉଚିତ ।

ପୂର୍ବେ ପୁରୁଷମାନେ ବିବାହିତ ନାରୀ ସହିତ ଯୌନକ୍ରିୟା କଲାବେଳେ ଅନେକେ ଗୃହସ୍ଥଧର୍ମର କାର୍ଯ୍ୟ ସମ୍ପାଦନ କରୁଛନ୍ତି ବୋଲି ଭାବୁଥିଲେ । ଆଜିକାଲି ରାଜନୀତିରେ ଯେପରି ବହୁତ ଲୋକ ଛଦ୍ମଭାବ ଗ୍ରହଣ କରିଥାନ୍ତି, ସେହିପରି ଛଦ୍ମଭାବ ଘରୋଇ ଜୀବନରେ ପ୍ରବେଶ କରି ନାନା ଅସୁବିଧା ସୃଷ୍ଟି କଲାଣି । ସାଧାରଣତଃ ସମାଜରେ ସ୍ୱାମୀ ଓ ସ୍ତ୍ରୀ ଉଭୟଙ୍କୁ ଅଭିନ୍ନ ବୋଲି ଧରାଯାଏ । ହିନ୍ଦୁ ଧର୍ମରେ ଏହି ପ୍ରଥା ଅନେକ କାଳରୁ ପ୍ରଚଳିତ । ସେହେତୁ ନାରୀକୁ ଅର୍ଦ୍ଧାଙ୍ଗିନୀ ବା ସହଧର୍ମିଣୀ ବୋଲି କହନ୍ତି । ପାଶ୍ଚାତ୍ୟ ଦେଶରେ ମଧ୍ୟ ଏହାର ପ୍ରଚଳନ ଥିବା ଯୋଗୁ ସେହି ଦେଶମାନଙ୍କରେ ଏହି ପ୍ରଥା ଆଇନରେ ମଧ୍ୟ ସ୍ଥାନ

ପାଇଛନ୍ତି । କିନ୍ତୁ ଏହାର ପ୍ରକୃତ ପ୍ରଭାବ ଅନେକ ଗୃହରେ ଆଉ ରହିନାହିଁ ।

ପ୍ରାଣୀଜଗତରେ ଯୌନ ପ୍ରବୃତ୍ତି କେବଳ ବଂଶବୃଦ୍ଧି ନିମନ୍ତେ ବ୍ୟବହୃତ ହୋଇଥାଏ । ଯେହେତୁ ମଦକାଳ ନ ହେଲେ ପୁଂ-ପଶୁ, ମାଈ ପଶୁ ସହିତ ଯୌନ-ସଙ୍ଗମ କରେ ନାହିଁ । କିନ୍ତୁ ମାନବସମାଜରେ ଆଦିମ ଯୁଗରୁ ଯୌନ-ପ୍ରବୃତ୍ତିର ବଂଶବୃଦ୍ଧି ଇଚ୍ଛା ସହିତ ସମ୍ବନ୍ଧ ରହିଥିଲେ ସୁଦ୍ଧା ତାହା ପୃଥକ୍ ଓ ସ୍ୱତନ୍ତ୍ର । ବିବାହ ଓ ଗୃହସ୍ଥଧର୍ମରେ ଯେଉଁ ଆନନ୍ଦ ମିଳେ, ତାହା ସ୍ନେହ ଓ ପ୍ରେମରେ ହିଁ ଶେଷ ହୁଏ ।

ଯୁବକ ଓ ଯୁବତୀ ଅଜ୍ଞ ରହି ବିବାହ କରିବା ଫଳରେ ନାନାରକମ ଅସୁବିଧା ସୃଷ୍ଟି ହୁଏ । ଯେହେତୁ ଆଜିକାଲି କୁଟୁମ୍ବ-ଜୀବନରେ ଅଧିକାଂଶ ଲୋକଙ୍କ ଘରେ ଆନନ୍ଦ ରହେ ନାହିଁ । କେବଳ ପ୍ରେମ କଲେ ହୁଏ ନାହିଁ, ଚତୁରତା ଓ ପ୍ରକୃତ ଭାବ ନେଇ ପ୍ରେମ କରିବା ଉଚିତ । ଏହାପରେ ଦୁହେଁ ପରସ୍ପରକୁ ଭଲଭାବେ ବୁଝି ଉଭୟଙ୍କ ଭିତରେ ଆଦାନପ୍ରଦାନରୁ ହିଁ ପ୍ରେମ କରିବା ଉଚିତ ।

ପ୍ରେମ ଓ ସ୍ନେହ କରିବା କେବଳ ବହି ପଢ଼ି ଶିଖିହୁଏ ନାହିଁ । ଏହା ମନୁଷ୍ୟମନରେ ସ୍ୱତଃପ୍ରବୃତ୍ତ ଜନ୍ମିବା ଦରକାର । ପଢ଼ା ଓ ଶିକ୍ଷା କେବଳ ସେଥିରେ ସାହାଯ୍ୟ କରେ ।

ପୂର୍ବକାଳରୁ ବାତ୍ସାୟନ, ନାଗାର୍ଜୁନ, ନନ୍ଦୀ, ଶ୍ୱେତକେତୁ ପ୍ରଭୃତି ଯୌନଶାସ୍ତ୍ରରେ ପ୍ରସିଦ୍ଧ ଗ୍ରନ୍ଥମାନ ରଚନା କରିଯାଇଛନ୍ତି । ସେମାନେ କହିଛନ୍ତି ଯେ ବଂଶବୃଦ୍ଧି ରତିକ୍ରିୟାର ଶେଷ ଲକ୍ଷ୍ୟ ହେଲେ ସୁଦ୍ଧା ଅନେକ ସମୟରେ କେବଳ ଯୌନତୃପ୍ତି ନିମନ୍ତେ ମନୁଷ୍ୟ ରତିକ୍ରିୟା କରିଥାଏ । ସେଥିନିମନ୍ତେ ନାରୀକୁ ପ୍ରସ୍ତୁତ କରିବା ପାଇଁ ଅର୍ଥାତ୍ ନାରୀର ଉତ୍ତେଜନା ବୃଦ୍ଧି କରିବା ନିମନ୍ତେ ସଂଳାପ, ଆଲିଙ୍ଗନ, ଚୁମ୍ବନ ଓ ଅନ୍ୟାନ୍ୟ ପ୍ରାଥମିକ କୌଶଳ କିପରି କରିବାକୁ ହେବ ତାହା ସେହି ଶାସ୍ତ୍ରମାନଙ୍କରେ ବର୍ଣ୍ଣନା କରାଯାଇଛି । ଉତ୍ତେଜନାର ଅବସ୍ଥା ପରୀକ୍ଷା କରିବା ନିମନ୍ତେ ନଖକ୍ଷତ, ଦନ୍ତକ୍ଷତ ପ୍ରଭୃତି ଉପାୟର ପ୍ରୟୋଗକଥା କୁହାଯାଇଛି ।

ଉଭୟଙ୍କ ଲିଙ୍ଗର ଅସାମଞ୍ଜସ୍ୟ ଥିଲେ କି କି ଉପାୟ ଅବଲମ୍ବନ କରିବା ଦ୍ୱାରା ରତିକ୍ରିୟାରେ ଅସୁବିଧା ଦୂର ହୁଏ, ତାହା

ମଧ୍ୟ ବର୍ଣ୍ଣନା କରାଯାଇଛି । ଯୁବତୀ ବା କିଶୋରୀମାନେ କାମକଳା ବିଷୟରେ ଭଲଭାବେ ଜ୍ଞାନଅର୍ଜନ କରିବା ନିମନ୍ତେ ଆଲୋଚନା ପ୍ରସଙ୍ଗରେ କୁହାଯାଇଛି ଯେ—ଉପଯୁକ୍ତ ଶିକ୍ଷା ନ ଥାଇ ଘୋଡ଼ା ବା ହାତୀ ଉପରେ ଶାସନ କରିବାରେ ଲୋକ ଯେପରି ଅସୁବିଧା ଭୋଗ କରେ, ସେହିପରି କାମକଳା ଶିକ୍ଷା ନ ଥିଲେ ବିବାହିତା ଯୁବତୀମାନେ ଅସୁବିଧା ଭୋଗ କରିଥାନ୍ତି । ସେହେତୁ ଯୁବତୀମାନେ ଉପଯୁକ୍ତ ନାରୀ କିମ୍ବା ବଡ଼ ଓ ଉଚ୍ଚଶିକ୍ଷିତ ଘରର ବିବାହିତ ଝିଅମାନଙ୍କ ଠାରୁ ଗୁପ୍ତ ଓ ନିର୍ଜନ ସ୍ଥାନରେ କାମକଳା ଶିକ୍ଷା କରିବା ବିଧେୟ ।

ସମାଜ ଓ କୁଟୁମ୍ବିକ ଜୀବନରେ ଆଜକାଲି ଯୌନସମ୍ବନ୍ଧ ଏତେ ଦୂର ପର୍ଯ୍ୟନ୍ତ ଗତି କଲାଣି ଯେ କେତେକ ପାଶ୍ଚାତ୍ୟ ଦେଶରେ ଉଲଗ୍ନ ସମାଜ (Nude Society) ର ଆରମ୍ଭ ହେଲାଣି । ପୃଥିବୀର ଅନେକ ଅଞ୍ଚଳରେ ବିଶେଷତଃ କେତେକ ଆଦିବାସୀ ସମାଜରେ ପୁରୁଷ ଓ ନାରୀମାନେ ଲଙ୍ଗଳା ହୋଇରହୁଥିଲେ ଓ ବର୍ତ୍ତମାନ ମଧ୍ୟ କେତେକ ସ୍ଥାନରେ ସେହିପରି ରହୁଛନ୍ତି । ସଭ୍ୟ ସମାଜର ଲୋକ ସେମାନଙ୍କୁ ଓ ସେମାନଙ୍କ ଆଚରଣ ବ୍ୟବହାର ଦେଖିଲେ ଅସଭ୍ୟ ଓ ଅଶ୍ଳୀଳ ବୋଲି ମନେକରେ । କିନ୍ତୁ ଜର୍ମାନ୍‌ର ଆଧୁନିକ ଶିକ୍ଷିତ ଓ ସଭ୍ୟ ସମାଜ ଲଙ୍ଗଳୀ ସମାଜର ଆରମ୍ଭ କରିଛନ୍ତି । ସେଠାରେ ଶିକ୍ଷିତ ପୁରୁଷ ଓ ନାରୀମାନେ ଲଙ୍ଗଳା ରହନ୍ତି । ଏଥିରୁ ମନେ ହୁଏ ଯେ ସଭ୍ୟତା ଓ ଶୀଳତା ଚକ୍ରାକାରରେ ଗତି କରିଥାଏ ।

ମାନବସମାଜର ସଭ୍ୟତା ବିବାହ ଓ କୌଟୁମ୍ବିକ ଜୀବନରୁ ଆରମ୍ଭ ।

ଆଦିବାସୀ ସମାଜରେ ନାରୀର ବିଶେଷ ସ୍ଥାନ ନାହିଁ । ପୁରୁଷ ତାହାକୁ ସମ୍ପତ୍ତି ଓ ସନ୍ତାନପ୍ରସବକାରିଣୀ ବୋଲି ଧରିନିଏ । ଅନେକ ଆଦିବାସୀ ସମାଜରେ ବ୍ୟଭିଚାର ନିମନ୍ତେ କଠୋର ଦଣ୍ଡ ଦିଆଯାଏ । ତଥାପି ଆଦିବାସୀ ନାରୀମାନେ ଯୌନକ୍ଷେତ୍ରରେ ସଭ୍ୟ ଓ ଶିକ୍ଷିତ ସମାଜର ନାରୀମାନଙ୍କ ଅପେକ୍ଷା ଅତୃପ୍ତ ରହିବା କମ୍ ଦେଖାଯାନ୍ତି । ସାଧାରଣତଃ ପୁରୁଷ ପରି ସହଜରେ ନାରୀ ଯୌନତୃପ୍ତି ପାଏ ନାହିଁ । କିନ୍ତୁ ଆଦିବାସୀ ସମାଜରେ ନାଚଗାନର ଯେଉଁ ବ୍ୟବସ୍ଥା ରହିଛି, ମନେହୁଏ ସେହିସବୁ

ଆଦିବାସୀ ନାରୀ ପକ୍ଷରେ ସହଜରେ ଯୌନତୃପ୍ତି ପାଇବା ନିମନ୍ତେ ସୁବିଧା କରିଦିଏ ।

ପୁରୁଷ ଓ ନାରୀର ଶାରୀରିକ ଓ ମାନସିକ ଗଠନର ଢଙ୍ଗ ଜଟିଳ । ଉଭୟଙ୍କ ମଧ୍ୟରେ ସମ୍ବନ୍ଧ ସେମାନଙ୍କ ଗଠନ ପ୍ରଣାଳୀ ଉପରେ ନିର୍ଭର କରୁଥିବା ହେତୁ ଜଟିଳ ହୁଏ ।

ପୁରୁଷ ଓ ନାରୀର ଯୌନକ୍ଷେତ୍ରରେ ନୈତିକତା ନ ରହିଲେ ଗୃହ ତଥା ସମାଜରେ କଳହ ସୃଷ୍ଟି ହେବ । ଇତିହାସରୁ ଏହାର ଯଥେଷ୍ଟ ପ୍ରମାଣ ମିଳେ ।

ଯୌନନୈତିକତା ଦେଶ ଓ କାଳ ନେଇ ଭିନ୍ନ ଭିନ୍ନ ଭାବରେ ଗତି କରି ଆସୁଛି । ଆଜିର ଶୀଳତା ବୋଧହୁଏ ପୂର୍ବେ ନ ଥିଲା । ୟୁରୋପରେ ଅଷ୍ଟାଦଶ ଶତାବ୍ଦୀର ନାରୀମାନେ ଗୋଡ଼ର ନେଡ଼ ପର୍ଯ୍ୟନ୍ତ ଘୋଡ଼ାଇ ପିନ୍ଧୁଥିଲାବେଳେ ଛାତିର ସ୍ତନମୁଣ୍ଡି ବା ସ୍ତନାଗ୍ର ବାହାରକୁ ରହୁଥିଲା । ଷୋଡ଼ଶ ଶତାବ୍ଦୀରେ ଜର୍ମାନ୍ ଦେଶର ନାରୀମାନେ ସର୍ବସାଧାରଣ ଗାଧିଆ ଘରମାନଙ୍କରେ ଲଙ୍ଗଳା ହୋଇ ସମସ୍ତଙ୍କ ସାମନାରେ ଗାଧୋଉଥିଲେ । ପ୍ରାଚୀନ ରୋମରେ ନବବିବାହିତ ଯୁବତୀ ମଧୁଶଯ୍ୟା ରାତିରେ ସ୍ୱାମୀ ନିକଟକୁ ଯିବାପୂର୍ବରୁ ପଥର-ଲିଙ୍ଗ ଉପରେ ବସୁଥିଲା । ପ୍ରାଚୀନ ଗ୍ରୀସ୍‌ରେ ସୁନ୍ଦର ବାଳକମାନଙ୍କୁ ପୁରୁଷମାନେ ପୁଂ-ମୈଥୁନ କଲେ ମଧ୍ୟ ତାହା ନିୟମ ବିରୁଦ୍ଧ ନ ଥିଲା ।

କାଳର ପରିବର୍ତ୍ତନ ଅନୁଯାୟୀ ଯୌନ-ନୈତିକତାରେ ପରିବର୍ତ୍ତନ ଆସିଲା । ମୁସଲମାନ୍ ଧର୍ମର ଗୋଟିଏ ପୁରୁଷ ଏକାଧିକ ନାରୀ ବିବାହ କରିବା ପ୍ରଥା ଖ୍ରୀଷ୍ଟାଧର୍ମାବଲମ୍ବୀମାନେ ନୈତିକତାର ବିରୁଦ୍ଧ ବୋଲି ଭାବିଲାବେଳେ ବୁରୁଖା ନ ପିନ୍ଧି ଖ୍ରୀଷ୍ଟିଆନ୍ ରମଣୀମାନେ ବୁଲବୁଲ କରିବା ମୁସଲମାନମାନଙ୍କୁ ଅଶ୍ଳୀଳ ପରି ମନେହୁଏ ।

ଯୌନବିଜ୍ଞାନ ଏବଂ ପୁରୁଷନାରୀ ମଧ୍ୟରେ ପ୍ରେମ ସ୍ନେହଜନିତ ସମ୍ବନ୍ଧ ଖେଳ କସରତ ପରି ଲେଖାଯାଇ ପାରେ, କିନ୍ତୁ ଦର୍ଶାଯାଇ ପାରେ ନାହିଁ । ପୁରୁଷ ଓ ସ୍ତ୍ରୀ ମଧ୍ୟରେ ପ୍ରେମର ବୃଦ୍ଧି ନିମନ୍ତେ ଚତୁରତା ଆବଶ୍ୟକ । ବହିରୁ ପାଇଥିବା ଶିକ୍ଷା ଓ ଅନ୍ୟାନ୍ୟ ଅନୁଭୂତି କେବଳ ସେଥିରେ ସାହାଯ୍ୟ କରିଥାଏ ।

ଯୌନବନ୍ଦ୍ର ମିଚଲେ (Michelets) ନାରୀମାନଙ୍କ ପ୍ରେମ ଉପରେ ଲେଖିଛନ୍ତି –"ପ୍ରତ୍ୟେକ ଶତାବ୍ଦୀରେ କେତେକ ବିଶେଷ ରୋଗର ପ୍ରାଦୁର୍ଭାବ ଦେଖିବାକୁ ମିଳେ । ତ୍ରୟୋଦଶ ଶତାବ୍ଦୀରେ କୁଷ୍ଠ ବ୍ୟାଧି ବ୍ୟାପିଥିଲା । ଚତୁର୍ଦ୍ଦଶ ଶତାବ୍ଦୀରେ ପ୍ଲେଗ୍ ରୋଗ ବ୍ୟାପିଥିଲା । ଷୋଡ଼ଶ ଶତାବ୍ଦୀରେ ଉପଦଂଶ ରୋଗ ଦେଖାଦେଇଥିଲା । ବିଂଶ ଶତାବ୍ଦୀରେ ଗର୍ଭାଶୟରେ ରୋଗ ବ୍ୟାପିବାର ଲକ୍ଷଣ ଦେଖାଯାଉଛି ।" ଆଧୁନିକ ଧନୀ ଓ ସଭ୍ୟ ଶ୍ରେଣୀର ନାରୀମାନେ ଯୌନକ୍ଷେତ୍ରରେ ପ୍ରକୃତି ଓ ସ୍ୱାସ୍ଥ୍ୟ-ବିରୋଧୀ କାର୍ଯ୍ୟ ବହୁତ କରିଥାନ୍ତି । ବାଳିକାମାନେ ଯୌବନରେ ପଦାର୍ପଣ କରିବା ପୂର୍ବରୁ ବା ସେମାନଙ୍କ ଶରୀରର ଯୌନଯନ୍ତ୍ର ବର୍ଦ୍ଧିତ ହୋଇ ଠିକ୍‌ଭାବେ କାର୍ଯ୍ୟ କରିବା ପୂର୍ବରୁ ଯୌନସୁଖ କଳ୍ପନାରେ ବୁଡ଼ି ରହନ୍ତି । ଅଶ୍ଳୀଳ ବା ଶୃଙ୍ଗାର ସାହିତ୍ୟ, ଥିଏଟର, ସିନେମା ପ୍ରଦର୍ଶନୀ, ଯୁବକ-ମାନଙ୍କ ସାଙ୍ଗସାଥୀ ହେବା ଯୋଗୁଁ ଏହା ସବୁ ହୋଇଥାଏ ।

ପ୍ରଥମ ରଜଃସ୍ରାବର ଆରମ୍ଭଠାରୁ ବିବାହ ପର୍ଯ୍ୟନ୍ତ ନାରୀର ଶରୀରରେ ଯୌନ-ପ୍ରବୃତ୍ତିର କ୍ରମବିକାଶ ହେଉଥାଏ ଏବଂ ତାହାର ପ୍ରଭାବ ବିଶେଷ ରହେ । ନବପ୍ରତିଷ୍ଠିତ ଯୌନପ୍ରବୃତ୍ତି ସର୍ବଦା ଅନୁଭୂତ ଓ ଉତ୍ତେଜନା ସୃଷ୍ଟି କରେ । ସହଜ ଜୀବନ, ଅନୁଚିତ ଖାଦ୍ୟ, ଉତ୍ତେଜକ ପାନୀୟ ଯୋଗୁଁ ଅନେକ ସମୟରେ ଜନନେନ୍ଦ୍ରିୟରେ କଣ୍ଡୁ ଓ ଉତ୍ତେଜନା ସୃଷ୍ଟି ହୁଏ । ଆଧୁନିକ ସଭ୍ୟ ସମାଜରେ ଡେରିରେ ବିବାହ କରିବା ଯୋଗୁଁ ଯୁବତୀର ଯୌନ ବିଷୟଗୁଡ଼ିକରେ ଜ୍ଞାନ ଥିଲେ ସୁଦ୍ଧା ଅତ୍ୟଧିକ ଉତ୍ତେଜନା ଯୋଗୁଁ ସେ ସ୍ନାୟବିକ ଦୁର୍ବଳତା ଭୋଗୁଥାଏ । ଏପରି ଅବସ୍ଥାରେ ମଧୁଶଯ୍ୟା ରାତିରେ ଯୌନଶକ୍ତି ଅଧା ହରାଇଥିବା ଯୁବକ ସ୍ୱାମୀ ସହିତ ତାହାର ମିଳନ ହୁଏ । ଏହା ଫଳରେ ଯୁବତୀର ମନରେ ନାନା ରକମ ବାଧା ସୃଷ୍ଟି ହୁଏ । ସମୟେ ସମୟେ ମଧୁଶଯ୍ୟା ରାତିରୁ ହିଁ ଜଣେ ଅପରଠାରୁ ରକ୍ତରୋଗର ସଂକ୍ରମଣ ପାଇଥାନ୍ତି ।

ଆଜି କେତେକ ଧନୀ ଓ ସଭ୍ୟ ପରିବାରର ଯୁବତୀମାନେ ବିବାହ ନ କରି ରହନ୍ତି । କିନ୍ତୁ ଯୌନ ପ୍ରବୃତ୍ତିର ବଶବର୍ତ୍ତୀ ହୋଇ ସେମାନେ ସ୍ୱାଭାବିକ ଯୌନସୁଖ ନ ପାଇବା ଯୋଗୁ ନାନା ରକମ ଅସ୍ୱାଭାବିକ ପନ୍ଥାର ଆଶ୍ରୟ ନେଇଥାନ୍ତି । ଫଳରେ ଏମାନେ ନାନା ପ୍ରକାରର ଶାରୀରିକ ଓ ମାନସିକ କଷ୍ଟ ଭୋଗ କରିଥାନ୍ତି ।

ଆଜକାଲି ଶିକ୍ଷିତ ଓ ଧନୀ ପରିବାରର ଯୁବତୀମାନେ ପ୍ରସବଜାତ ସନ୍ତାନକୁ ସ୍ତନ୍ୟଦାନ କରି ନ ଥାନ୍ତି । ପୁଣି ଗର୍ଭସଂଗ୍ରହ ଓ ପ୍ରସବବେଦନା ଉପରେ ନାନା ପ୍ରକାରର କୃତ୍ରିମ ଜନ୍ମନିରୋଧ ପ୍ରଣାଳୀର ବ୍ୟବହାର କରିଥାନ୍ତି । ଏହା ଦ୍ୱାରା ସେମାନଙ୍କ ଶରୀରର ସ୍ନାୟୁବିକ ତନ୍ତ୍ର ଓ ଯୌନ ଅଙ୍ଗ ପ୍ରଭୃତି ଆଘାତ ପାଏ । ଫଳରେ ଶୀଘ୍ର ଯୌନଜୀବନର ଅବସାନ ଆସେ ଓ ରଜଃସ୍ରାବ ଶୀଘ୍ର ବନ୍ଦ ହୋଇଯାଏ । ନାରୀଜୀବନରେ ବର୍ଦ୍ଧିତ ଯୌନଯନ୍ତ୍ରର ପ୍ରଭାବ ବେଶି । ସେମାନଙ୍କ ମନର ସ୍ୱତନ୍ତ୍ରତା ବା ଉତ୍ତେଜନା ଏହା ଉପରେ ବିଶେଷ ଭାବେ ନିର୍ଭର କରେ । ଯୌବନର ଆରମ୍ଭରେ ଯୌନଜ୍ଞାନ ପାଇଁ ତୃଷା ରହେ । ଯୌବନରେ ଯୌନକ୍ଷୁଧାର ତୃପ୍ତି ଓ ମାତୃତ୍ୱ ନିମନ୍ତେ ଇଚ୍ଛା ହୁଏ । ଗର୍ଭସଂଗ୍ରହ, ପ୍ରସବ ଓ ସ୍ତନ୍ୟଦାନ ପ୍ରଭୃତିରେ ଗୃହିଣୀର ଭାବ ଯୋଡ଼ାଇ ରହେ । ପରିଣତ କାଳରେ ଯୌନଜୀବନ ଅବସାନର ଆଶଙ୍କା, ଦୁଃଖ ଓ କଷ୍ଟ ଆଣେ । ଯୌନବିତ୍ ଜାକୋବି (Jacobi) ଗୁଡ୍‌ମ୍ୟାନ୍ (Goodman) ପ୍ରଭୃତି ଗବେଷଣା କରି କହିଛନ୍ତି ଯେ—"ନାରୀମାନଙ୍କର ମୂଳ ଶକ୍ତି ତରଙ୍ଗ ଆକାରରେ କେତେବେଳେ ମନ୍ଥର ଭାବରେ ଓ ଆଉ କେତେବେଳେ ଜୋରରେ ଗତି କରେ । ଏହି ଗତିର ପ୍ରଭାବ ସେମାନଙ୍କ ଉତ୍ପାଦକ ଇନ୍ଦ୍ରିୟମାନଙ୍କରେ ରହେ ।" ଯୌନବିତ୍ ଗୁଡ୍‌ମ୍ୟାନ୍‌ଙ୍କ ମତରେ- ନାରୀମାନଙ୍କ ମାସିକ ଋତୁଚକ୍ରର ସମୟ ଏହି ଦୁଇ ଗତି ମଧ୍ୟରେ ଅଧା ଅଧା ଭାବରେ ଭାଗ କରାଯାଇଛି । ଦ୍ୱିତୀୟ ଭାଗର ସମୟରେ ମୂଳଶକ୍ତିର ଜୋର୍ ବଢ଼ି ଶରୀରର ଉତ୍ତାପ ଓ ରକ୍ତଚାପ ବୃଦ୍ଧି ହୁଏ ଏବଂ ପରିପାକ ମଧ୍ୟ ଅଧିକ ହୁଏ । ପ୍ରଥମ ଭାଗରେ ଏହି ସମସ୍ତ ରଜଃସ୍ରାବ ଯୋଗୁ କମିଯାଏ । ରଜଃସ୍ରାବ ପୂର୍ବରୁ ଶରୀରର ଶକ୍ତି ଜୋର୍‌ରେ କାର୍ଯ୍ୟ କରେ ।

ଡକ୍ଟର କଷ୍ଟଙ୍କ ମତରେ—"ଯେଉଁ ନାରୀମାନଙ୍କର ରଜଃସ୍ରାବ ବା ଯୌବନର ଆରମ୍ଭରେ ହଜମ ଶକ୍ତି, ସ୍ନାୟୁବିକ ଶକ୍ତି ପ୍ରଭୃତିରେ ଅସୁବିଧା ଦେଖାଦେଇଥାଏ, ସେହିଗୁଡ଼ିକ ଶରୀରରେ ଲୁଚିରହି ପରିଣତ କାଳରେ ଦେଖା ଦିଅନ୍ତି ।"

ଆଦିମ ଯୁଗରୁ ଯାହା କି କବି, ଶିଳ୍ପୀ, ଲେଖକ ଓ କଳାକାର-ମାନଙ୍କୁ ଆକୃଷ୍ଟ କରି ଆଧାର ଦେଇଛି ଓ ମନୁଷ୍ୟର ମନ ଓ ପ୍ରାଣରେ

ଉନ୍ମାଦନା ଭଳି ଦେଇଛି, ନାରୀର ସେହି ସୌନ୍ଦର୍ଯ୍ୟ ଯୌବନରେ ହିଁ ଆରମ୍ଭ ହୁଏ ।

ଯୌବନରେ ପଦାର୍ପଣ କରିବା ମାତ୍ରେ ଅଙ୍ଗରେ ଲାଳିତ୍ୟ ଫୁଟି, ବକ୍ଷ ଉନ୍ନତ ହୋଇ ସରଳ ବାଳିକାର ଚେହେରା ବଦଳିଯାଏ । ଶରୀର-ଭିତର ଯୌନ ଓ ଉତ୍ପାଦନ ଯନ୍ତ୍ରଗୁଡ଼ିକର ପୂର୍ଣ୍ଣାଙ୍ଗ ପ୍ରାପ୍ତି ପର୍ଯ୍ୟନ୍ତ ସୌନ୍ଦର୍ଯ୍ୟ ବୃଦ୍ଧିପାଏ । ପ୍ରାୟ କୋଡ଼ିଏ ବା ପଚିଶ ବର୍ଷ ବେଳକୁ ପ୍ରଥମ ପ୍ରସବ ପୂର୍ବରୁ ଶରୀରର ସୌନ୍ଦର୍ଯ୍ୟ ଶେଷ ସୀମାରେ ପହଞ୍ଚେ । ପ୍ରଥମ ଗର୍ଭଧାରଣ, ପ୍ରସବ, ସ୍ତନ୍ୟଦାନ ଶରୀରର ସୌନ୍ଦର୍ଯ୍ୟକୁ ହଠାତ୍ ନ କମାଇଲେ ମଧ୍ୟ କ୍ରମେ କ୍ରମେ କମାଇ ଦିଏ । ରୋଗ, ଅପୁଷ୍ଟି ପ୍ରଭୃତି ଶରୀରର ସୌନ୍ଦର୍ଯ୍ୟକୁ କମାଇ ଦେବାରେ ସାହାଯ୍ୟ କରେ ।

ଯୌବନ ସମୟରେ ଉଚିତ ମାତ୍ରାରେ ଯୌନପ୍ରବୃତ୍ତି ଓ କ୍ଷୁଧା ରହିବା ସ୍ୱାଭାବିକ । ଏହି ବୟସରେ ଯୌନକ୍ଷୁଧା ଯେଉଁମାନଙ୍କର କମିଯାଏ, ସେମାନେ ସନ୍ତାନ ଉତ୍ପାଦନ କରିବା ଉଚିତ ନୁହେଁ । ଯୌନ-କ୍ଷୁଧାର ତୃପ୍ତି ନିମନ୍ତେ ଉଚିତ ବୟସରେ ବିବାହ କରି ଯୌନସଙ୍ଗମ କରିବା ବିଧେୟ । ଏହି ସୁବିଧା ନ ରହିଲେ ଯୌନପ୍ରବୃତ୍ତି ଅସ୍ୱାଭାବିକ ଢଙ୍ଗରେ ଗତି କରିବା ସମ୍ଭବ । ଉଚିତ ବୟସରେ ବିବାହ କରି ଯୌନ-ସଙ୍ଗମ ପାଇବା ଦ୍ୱାରା ସ୍ୱାସ୍ଥ୍ୟ ଓ ସୁଖ ବୃଦ୍ଧି ହୁଏ ।

ପରିଣତ ବୟସର ଆରମ୍ଭରେ ପ୍ରସବ କରି ସ୍ତନ୍ୟଦାନ କରୁଥିବା ଅଧିକାଂଶ ନାରୀମାନଙ୍କ ଶରୀରରେ ଚର୍ବି ଜମିବା ଆରମ୍ଭ ହୁଏ । ଫଳରେ ପୂର୍ବର ଉନ୍ନତ ବକ୍ଷ ନାଭି ପର୍ଯ୍ୟନ୍ତ ଓହଳି ଝୁଲେ । ପେଟଟି ଆକାରରେ ବୃଦ୍ଧି ପାଇ ପଦାକୁ ବାହାରିପଡ଼େ । ଶରୀରର ଚର୍ମ ଶୁଖିଲା ଦିଶି ମୋଡ଼ ମୋଡ଼ ହୋଇ ରହେ । ପୂର୍ବର ସୌନ୍ଦର୍ଯ୍ୟ ଗତ କଥାରେ ହିଁ ରହିଯାଏ । ରଜଃସ୍ରାବ ବନ୍ଦ ହେବା ପରେ ପରେ ବୃଦ୍ଧାବସ୍ଥା ପହଞ୍ଚେ ଓ ପୂର୍ବର ସୌନ୍ଦର୍ଯ୍ୟ ପୁରୁଷମାନଙ୍କ ଅପେକ୍ଷା ନାରୀମାନଙ୍କ ପକ୍ଷେ ଆହୁରି ଦୂରେଇ ଯାଏ ।

ବିଭିନ୍ନ ଦେଶରେ ଭିନ୍ନ ଭିନ୍ନ ବୟସରେ ସୌନ୍ଦର୍ଯ୍ୟର ଶୀର୍ଷରେ ନାରୀମାନେ ପହଞ୍ଚିବା ଦେଖାଯାଏ । ଉଷ୍ଣ ଜଳବାୟୁରେ ପ୍ରାୟ ପନ୍ଦର କୋଡ଼ିଏ ବର୍ଷ ବୟସରେ ନାରୀମାନେ ସୌନ୍ଦର୍ଯ୍ୟର ଶୀର୍ଷରେ

ପହଞ୍ଚିଥାନ୍ତି । ଜର୍ମାନ୍, ହଲଣ୍ଡ, ସ୍କାଣ୍ଡିନେଭିଆ, ଇଂଲଣ୍ଡ ପ୍ରଭୃତି ଥଣ୍ଡା ଜଳବାୟୁର ଦେଶମାନଙ୍କରେ ପ୍ରାପ୍ତ କୋଡ଼ିଏ ବର୍ଷ ବୟସ ବା ପରେ ପହଞ୍ଚିଥାନ୍ତି । ଏହି ଜଳବାୟୁରେ କେତେକ ନାରୀଙ୍କ ସୌନ୍ଦର୍ଯ୍ୟ ତିରିଶ ବା ତେତିଶ ବର୍ଷ ବୟସରେ ଶୀର୍ଷରେ ପହଞ୍ଚିବା ମଧ୍ୟ ଯୌନବିତ୍ ଷ୍ଟ୍ରେଜ (Stratz) ପ୍ରଭୃତି ଲକ୍ଷ୍ୟ କରିଥିଲେ । ଏହି ଯୌନବିତ୍ ଆହୁରି କହନ୍ତି ଯେ ଜଣେ ସୁନ୍ଦରୀ ନାରୀ ପ୍ରଥମ ଗର୍ଭସଂଗ୍ରହର ପ୍ରଥମ ମାସରେ ଆହୁରି ସୁନ୍ଦର ଦିଶେ । ଯେହେତୁ ଏହି ଦୁଇ ଅବସ୍ଥା ଯେଉଁଠି ଏକାଠି ହୁଏ, ସେଠାରେ ନାରୀର ଶରୀରରେ ସୌନ୍ଦର୍ଯ୍ୟ ଶୀର୍ଷ ସ୍ଥାନରେ ପହଞ୍ଚେ । ପ୍ରଥମ ଗର୍ଭସଂଗ୍ରହ ଆରମ୍ଭ ହେଲେ ଶରୀରର ଅଙ୍ଗ ପ୍ରତ୍ୟଙ୍ଗ ଭରି ଉଠେ । ଚର୍ମରେ ରକ୍ତର ସଂଚଳନ ଜୋର ହେବା ଯୋଗୁ କୋମଳ ଓ ଚେକ୍କାସ୍ୱାନ୍ ହୋଇ ସେଥିରେ ଲାଳିତ୍ୟ ଖେଳିଉଠେ । ସ୍ତନ ଦୁଇଟି କୋମଳ ଓ ସୁଦୃଢ଼ ହୋଇରହେ । ନାରୀର ଅଙ୍ଗରେ ସୌନ୍ଦର୍ଯ୍ୟ ବୃଦ୍ଧି ପାଇଲେ ସୁଦ୍ଧା ଏହା ଅଳ୍ପ ଦିନ ପାଇଁ ରହେ । କାରଣ ଗର୍ଭସଂଗ୍ରହର ସମସ୍ତ ବୃଦ୍ଧି ହେବା ବେଳେ ପେଟ ପଦାକୁ ବାହାରି ସୌନ୍ଦର୍ଯ୍ୟକୁ ନଷ୍ଟ କରିଦିଏ । ଏଠାରେ ମନେ ରଖିବା ଉଚିତ ଯେ ଧନୀ ଓ ସଭ୍ୟ ପରିବାରର ନାରୀମାନଙ୍କ ଠାରେ ଶ୍ରମିକ ପରିବାରର ନାରୀମାନଙ୍କ ଅପେକ୍ଷା ଅଧିକ ଦିନ ସୌନ୍ଦର୍ଯ୍ୟ ରହେ ।

ଯୌନକ୍ରିୟାରେ ନାରୀ ସ୍ଥିରାବସ୍ଥା ନେବା ବେଳେ ପୁରୁଷ ସକ୍ରିୟ ହୋଇଥାଏ । ନାରୀ ପ୍ରତ୍ୟେକ ମାସରେ ଗୋଟିଏ ଡିମ୍ବାଣୁ ପ୍ରସ୍ତୁତ କଲାବେଳେ ପୁରୁଷ ପ୍ରତ୍ୟେକ ସ୍ଖଳନରେ କୋଟି କୋଟି ଶୁକ୍ରାଣୁ ବାହାର କରିଦିଏ । ଏଥିରୁ ଜଣାଯାଏ ଯେ ପୁରୁଷର ଶାରୀରିକ ଗଠନ ଓ ଶକ୍ତି ଯୌନକ୍ଷେତ୍ରରେ ନାରୀଠାରୁ ପୃଥକ୍ । ମନୁଷ୍ୟର ବଂଶରକ୍ଷା କରିବା ନିମନ୍ତେ ପୂର୍ଣ୍ଣାଙ୍ଗ କରିବାକୁ ପ୍ରକୃତି ଅନୁରୂପ ସ୍ୱଭାବ ଦେଇ ଉଭୟଙ୍କୁ ଗଢ଼ିଛି । ସେହେତୁ ପ୍ରେମରେ ନାରୀର ସ୍ୱଭାବ ଓ ଚିନ୍ତାଧାରା-ଠାରୁ ପୁରୁଷର ସ୍ୱଭାବ ଓ ଚିନ୍ତାଧାରା ଭିନ୍ନ ରହେ ।

ଯୌନ ଜୀବନର ପ୍ରଭାବ ନାରୀମାନଙ୍କ ଶାରୀରିକ ସମୃଦ୍ଧିରେ ଯାହା ଦେଖାଦିଏ, ତାହା ଜନ୍ମଗତ ସ୍ୱଭାବ, ମାନସିକ ଅବସ୍ଥା, ବଂଶ-ପରମ୍ପରା, ସାମାଜିକ ପରିସ୍ଥିତି ଓ ପରିବେଷ୍ଟନୀ ଉପରେ ନିର୍ଭର କରେ । ଗରିବ

ଓ ଶ୍ରମିକ ଶ୍ରେଣୀର ନାରୀମାନଙ୍କ ଶାରୀରିକ ସମୃଦ୍ଧିରେ ଯୌନଜୀବନର ଯେତିକି ପ୍ରଭାବ ରହେ ତାଠାରୁ ବେଶି ରହେ ଶିକ୍ଷିତ ଓ ଧନୀ ପରିବାରର ନାରୀମାନଙ୍କ ଠାରେ। ପୁନଶ୍ଚ ଚଞ୍ଚଳମତି ନାରୀମାନଙ୍କ ଠାରେ ଏହାର ଆହୁରି ଅଧିକ ପ୍ରଭାବ ରହେ। ଶ୍ରମିକ ପରିବାରର ନାରୀମାନଙ୍କଠାରେ ଯେତିକି ପ୍ରଭାବ ରହେ ତାଠାରୁ ବେଶି ରହେ ଯେଉଁ ପରିବାରରେ ନାରୀମାନଙ୍କ ପ୍ରବୃତ୍ତିକୁ ପିଲାଦିନୁ ସ୍ୱାଧୀନତା ଦିଆଯାଇଥାଏ।

ସମବୟସ୍କ ପୁରୁଷମାନଙ୍କ ଅପେକ୍ଷା ନାରୀମାନଙ୍କର ଯୌବନର ଆରମ୍ଭ କାଳରେ, ଗର୍ଭଧାରଣ ସମୟରେ ଓ ପରିଣତ ବୟସରେ ମୃତ୍ୟୁସଂଖ୍ୟା ବେଶି ହୋଇଥାଏ। କୋଡ଼ିଏ ଠାରୁ ଚାଳିଶ ବର୍ଷ ବୟସ ମଧ୍ୟରେ ଯୌନସଙ୍ଗମ, ପ୍ରସବ ପ୍ରଭୃତି କାରଣ ଯୋଗୁ ଅବିବାହିତା ନାରୀମାନଙ୍କ ଅପେକ୍ଷା ବିବାହିତା ନାରୀମାନଙ୍କର ମୃତ୍ୟୁସଂଖ୍ୟା ବେଶି ହୁଏ।

ଯୌନବିତ୍ ରିବଙ୍ଗ୍ (Ribbing) କହିଛନ୍ତି ଯେ—"ମାନବର ଜନ୍ମ ଯୌନକ୍ରିୟାରୁ ଆରମ୍ଭ। ସମାଜର ଉନ୍ନତି ଓ ଉପକାର ନିମନ୍ତେ ଦିନରାତି ସମୟ ଓ ରକ୍ତ ଦେଇ ପରିଶ୍ରମ କଲେ ସୁଦ୍ଧା ଯୌନଜୀବନ ପ୍ରତି ଉଦାସୀନ ହେଲେ ମୋ ମତରେ ସେସବୁର କିଛି ମୂଲ୍ୟ ରହେ ନାହିଁ।"

ରଜଃସ୍ରାବ ଆରମ୍ଭରୁ ସ୍ରାବ ବନ୍ଦ ହେବା ପର୍ଯ୍ୟନ୍ତ ନାରୀର ଶରୀରରେ ଡିମ୍ବାଶୟରୁ ପରିପକ୍ୱ ଡିମ୍ବାଣୁ ନିୟମିତ ଭାବେ ଖସିଆସେ। ସାଧାରଣତଃ ପ୍ରଥମ ରଜଃସ୍ରାବଠାରୁ ଯୌନ-ଜୀବନର ଆରମ୍ଭ ବୋଲି ଧରାଯାଏ। ନାରୀମାନଙ୍କ ଯୌନଜୀବନ ପ୍ରାୟ ୩୦ ବର୍ଷ ପର୍ଯ୍ୟନ୍ତ ରହେ। କେତେକ ନାରୀଙ୍କର ଯୌନଜୀବନ କେବଳ ଛ'ବର୍ଷ ରହିଥିବାବେଳେ ଆଉ କେତେକଙ୍କର ୪୬ ବର୍ଷ ପର୍ଯ୍ୟନ୍ତ ରହିଥିବା ଦେଖାଯାଇଛି। ଯୌନଜୀବନର ସମୟ (Duration) ବଂଶପରମ୍ପରା, ଶାରୀରିକ ଗଠନ, ସାମାଜିକ ଅବସ୍ଥା ଓ ବାତାବରଣ ଉପରେ ବିଶେଷ ନିର୍ଭର କରେ। ଡକ୍ଟର କିଷ୍ଟଙ୍କ ମତରେ ସାମାଜିକ ପରିସ୍ଥିତି ଓ ଜଳବାୟୁ ସମାନ ରହିଲେ ଯେଉଁ ନାରୀ ଶୀଘ୍ର ବା କମ୍ ବୟସରେ ଯୌବନରେ ପଦାର୍ପଣ କରେ ଅର୍ଥାତ୍ ଯାହାର ଶୀଘ୍ର ରଜଃସ୍ରାବ ଆରମ୍ଭ ହୁଏ, ତାହାର ଯୌନଶକ୍ତି ବା ପ୍ରବୃତ୍ତି ଜୋର୍ ହୁଏ ଓ ଅପେକ୍ଷାକୃତ ବହୁତ ବୟସ

ପର୍ଯ୍ୟନ୍ତ ରହେ ଏବଂ ସେ ବହୁତ ସନ୍ତାନ ପ୍ରସବ କରେ । ଉକ୍ତର କଟ୍ଟଙ୍କ ମତରେ :—

(କ) ଉଷ୍ଣ ଜଳବାୟୁ ଥିବା ଦକ୍ଷିଣ ୟୁରୋପୀୟ ଦେଶମାନଙ୍କରେ ନାରୀମାନଙ୍କର ଶୀଘ୍ର ରଜଃସ୍ରାବ ଆରମ୍ଭ ହୁଏ ଓ ଶୀଘ୍ର ବନ୍ଦ ହୋଇଯାଏ । ଶୀତଳ ଜଳବାୟୁରେ ଥିବା ଉତ୍ତର-ୟୁରୋପୀୟ ଦେଶମାନଙ୍କରେ ନାରୀମାନଙ୍କ ରଜଃସ୍ରାବ ଡେରିରେ ଆରମ୍ଭ ହୁଏ ଓ ସେହିପରି ଡେରିରେ ବନ୍ଦ ହୁଏ ।

(ଖ) ମଧ୍ୟ-ୟୁରୋପୀୟ ଜଳବାୟୁରେ ଯେଉଁ ନାରୀମାନଙ୍କର ଶୀଘ୍ର ରଜଃସ୍ରାବ ଆରମ୍ଭ ହୁଏ ଅର୍ଥାତ୍ ଯାହାର ତେର ଠାରୁ ଷୋଳବର୍ଷ ଭିତରେ ରଜଃସ୍ରାବ ଆରମ୍ଭ ହୁଏ, ସେମାନଙ୍କର ଅନେକ ବର୍ଷ ପର୍ଯ୍ୟନ୍ତ ରଜସ୍ରାବ ବନ୍ଦ ହୁଏ ନାହିଁ । କିନ୍ତୁ ଯେଉଁ ନାରୀମାନଙ୍କର ଷୋଳ ଠାରୁ କୋଡ଼ିଏ ବର୍ଷ ବୟସରେ ରଜଃସ୍ରାବ ଆରମ୍ଭ ହୁଏ, ତାହା ଅପେକ୍ଷାକୃତ ଶୀଘ୍ର ବନ୍ଦ ହୋଇଯାଏ । ଯେଉଁ ନାରୀମାନଙ୍କର ଅତି ଶୀଘ୍ର ରଜଃସ୍ରାବ ଆରମ୍ଭ ହୁଏ ସେମାନଙ୍କର ମଧ୍ୟ ଶୀଘ୍ର ରଜଃସ୍ରାବ ବନ୍ଦ ହୋଇଯାଏ ।

(ଗ) ଯେଉଁ ନାରୀମାନେ ନିୟମିତଭାବେ ଯୌନ ସଙ୍ଗମ କରିଥାଆନ୍ତି ଏବଂ ପ୍ରସବ କରି ସ୍ତନ୍ୟଦାନ କରିଥାନ୍ତି, ସେମାନଙ୍କର ଶୀଘ୍ର ରଜଃସ୍ରାବ ବନ୍ଦ ହୁଏ ନାହିଁ; କିନ୍ତୁ ଅବିବାହିତା, ବିଧବା ବା ବନ୍ଧ୍ୟା ନାରୀ ପ୍ରଭୃତଙ୍କର ଶୀଘ୍ର ରଜଃସ୍ରାବ ବନ୍ଦ ହୋଇଆସେ । କମ୍ ବୟସରୁ ଯୌନ ସଙ୍ଗମ ଆରମ୍ଭ କରିଥିଲେ କିମ୍ବା ପ୍ରସବକାଳରେ ଅତି କଷ୍ଟ ହେଉଥିଲେ କିମ୍ବା ଶୀଘ୍ର ଶୀଘ୍ର ଗର୍ଭସଞ୍ଚାର ହେଉଥିଲେ ନାରୀର ଶୀଘ୍ର ରଜଃସ୍ରାବ ବନ୍ଦ ହୋଇଯାଏ ।

(ଘ) ସମାଜରେ ଧନୀ ଓ ଉଚ୍ଚ ପରିବାରର ନାରୀମାନଙ୍କର ଶ୍ରମିକ ବା ଗରିବ ଶ୍ରେଣୀର ନାରୀମାନଙ୍କ ଅପେକ୍ଷା ଅଧିକ ଦିନ ପର୍ଯ୍ୟନ୍ତ ରଜଃସ୍ରାବ ବନ୍ଦ ହୁଏ ନାହିଁ । ଅକ୍ଳାନ୍ତ ଶାରୀରିକ ପରିଶ୍ରମ କରୁଥିବା, ଉଦ୍‌ବେଗ ବା ଭୀଷଣ ଦୁଃଖରେ ରହିଥିବା ନାରୀମାନଙ୍କର ଶୀଘ୍ର ରଜଃସ୍ରାବ ବନ୍ଦ ହୋଇଆସେ ।

(ଙ) ସ୍ୱାସ୍ଥ୍ୟବତୀ ଓ ବଳିଷ୍ଠ ଶରୀରଗଠନ ଥିବା ନାରୀମାନଙ୍କ ଅପେକ୍ଷା ଦୁର୍ବଳ ନାରୀମାନଙ୍କର ଶୀଘ୍ର ରଜଃସ୍ରାବ ବନ୍ଦ ହୁଏ । ମାସିକ ରଜସ୍ରାବରେ ଅନିୟମିତତା ବା ଅସୁବିଧା ହେଲେ ଶୀଘ୍ର

ରଜଃସ୍ରାବ ବନ୍ଦ ହେବାର ସୂଚନା ଦିଏ । ଶରୀରରେ ବିଶେଷଭାବେ ଚର୍ବି ଜମିଲେ, ଟାଇଫଏଡ଼୍, ମ୍ୟାଲେରିଆ, କଲେରା ଓ ଗର୍ଭାଶୟର କେତେକ ରୋଗରେ ଆକ୍ରାନ୍ତ ହେଲେ ଶୀଘ୍ର ଯୌନ-ଜୀବନରେ ଅବସାନ ଆସେ ।

ଜଳବାୟୁ, ଜାତି-ପରମ୍ପରା, ଯୌବନ ଆରମ୍ଭର ବୟସ ବ୍ୟତୀତ ଯୌନକ୍ରିୟାର ମଧ୍ୟ ପ୍ରଭାବ ରହେ । ଅଧିକ ସନ୍ତାନ ପ୍ରସବ କରି ସ୍ତନ୍ୟଦାନ କରିବା ଦ୍ୱାରା ଯୌନଜୀବନର ଶୀଘ୍ର ଅବସାନ ହୁଏ ନାହିଁ ।

ସାମାଜିକ ଓ କୌଟୁମ୍ବିକ ଜୀବନରେ ପୁରୁଷ ଅପେକ୍ଷା ନାରୀର ଦାୟିତ୍ୱ ବେଶି । ପୁରୁଷ ବ୍ୟଭିଚାର କଲେ ସମାଜ କ୍ଷମା କରିଥାଏ; କିନ୍ତୁ ନାରୀ ବ୍ୟଭିଚାର କଲେ ସହଜରେ କ୍ଷମା ପାଏ ନାହିଁ ।

ଯୌନଶକ୍ତିହୀନ ପୁରୁଷ ଓ ନାରୀମାନେ ସନ୍ତାନ ପ୍ରସବ କରିବା ଉଚିତ ନୁହେ । ସେମାନେ ବାପାମା ହେବା ପାଇଁ ଅନୁପଯୁକ୍ତ । ଆଜିକାଲି ସମାଜରେ ଷୋହଳ ବା ଅଠର ବର୍ଷ ବୟସ ହେଲେ ଯୁବକମାନେ ଯୌନ ଉତ୍ତେଜନା ପାଇଥାନ୍ତି । ସ୍ୱାଭାବିକ ଉପାୟରେ ଯୌନତୃପ୍ତି ପାଇବାର ବିଳମ୍ବ ହେଲେ କେତେକଙ୍କର ଅପକାର ହୁଏ । ଆଉ କେତେକ ସହ୍ୟ ନ କରି ପାରି ଅସ୍ୱାଭାବିକ ପନ୍ଥାର ଆଶ୍ରୟ ନିଅନ୍ତି । କିନ୍ତୁ ଯୌନଶକ୍ତି ଆରମ୍ଭର ଅଳ୍ପ କେତେ ଦିନ ପରେ ସ୍ୱାଭାବିକ ଭାବେ ଯୌନତୃପ୍ତି ପାଇବା ଦ୍ୱାରା ସ୍ୱାସ୍ଥ୍ୟ ବୃଦ୍ଧି ହୁଏ ଓ ଜୀବନ ଆନନ୍ଦମୟ ହୁଏ । ସନ୍ତାନଜନ୍ମର ଭୟରେ କିମ୍ବା ଆର୍ଥିକ ପରିସ୍ଥିତି ଯୋଗୁ ବିବାହ ନ କରି ଅପରିତ୍ର ଉପାୟର ଆଶ୍ରୟ ନେବା ଉଚିତ ନୁହେ ।

ମାନସିକ ବା ଶାରୀରିକ ବିକାରଗ୍ରସ୍ତ ନାରୀ ବା ପୁରୁଷ ସନ୍ତାନ ପ୍ରସବ କରିବା ଠିକ୍ ନୁହେ । ଅତ୍ୟଧିକ ସଂଖ୍ୟାରେ ସନ୍ତାନ ଜନ୍ମ କରି କୁଟୁମ୍ବ ବୃଦ୍ଧି କରିବା ଦ୍ୱାରା କୁଟୁମ୍ବର ଆର୍ଥିକ ପରିସ୍ଥିତି ଜଟିଳ ହୁଏ । ବାପମା'ମାନେ ମଧ୍ୟ ପିଲାମାନଙ୍କ ପ୍ରତି ନଜର ଦେଇ ପାରନ୍ତି ନାହିଁ ।

ସାମାଜିକ ପରିସ୍ଥିତି ନେଇ ବିବାହ କରିବା ପୂର୍ବରୁ ପ୍ରତ୍ୟେକ ଯୁବକ ଓ ଯୁବତୀ ଯୌନଜ୍ଞାନ ପାଇବା ଉଚିତ । ସ୍ୱାମୀଙ୍କୁ ନିଜର ଶତ୍ରୁ ବୋଲି ସ୍ତ୍ରୀର ଧାରଣା ହେବା ଭଲ ନୁହେ । ଯୌବନରେ ପଦାର୍ପଣ କରିବା ପରେ ପ୍ରତ୍ୟେକ ଯୁବକ ଓ ଯୁବତୀ ବିବାହ କରିବା ଉଚିତ ।

ଏହା ଦ୍ୱାରା ସଙ୍ଗସୁଖ ଭଲ ହୁଏ ଏବଂ ଭବିଷ୍ୟତ୍ ବଂଶଧରମାନେ ବଳିଷ୍ଠ ଓ ଶକ୍ତିଶାଳୀ ହୁଅନ୍ତି ।

ଏଠାରେ ପ୍ରତ୍ୟେକ ଯୁବତୀ ମନେ ରଖିବା ଉଚିତ ଯେ କେବଳ ସନ୍ତାନ ପ୍ରସବ କରିବା ନାରୀର ଏକମାତ୍ର କାମ ନୁହେ । ସେହିପରି ପ୍ରତ୍ୟେକ ସ୍ୱାମୀ ମନେ ରଖିବା ଉଚିତ ଯେ ସର୍ବଦା ସନ୍ତାନ ପ୍ରସବ କରିବା ଓ ସ୍ୱାମୀର ଯୌନ ପ୍ରବୃତ୍ତିର ତୃପ୍ତି କରିବା ନିମନ୍ତେ ନାରୀ ବିବାହ କରିନାହିଁ ।

ପ୍ରତ୍ୟେକ ନାରୀ ଓ ପୁରୁଷର ଯୌନ ଜୀବନରେ ନୈତିକତାର ପ୍ରଭାବ ରହିବା ଉଚିତ ଏବଂ ନାରୀପକ୍ଷେ ଏହାର ମାତ୍ରା ଅଧିକ ରହିବା ଉଚିତ । ସଂଯମ, ସତୀତ୍ୱରକ୍ଷା ଓ ମାତୃତ୍ୱରେ ଆନନ୍ଦ ପାଇବା ହେଉଛି ସମାଜରେ ନାରୀ-ଜୀବନର ମହତ୍ତ୍ୱ ।

ଆଜିକାଲିର ପରିବେଷ୍ଟନୀ ବହୁ ଉତ୍ତେଜନା ସୃଷ୍ଟି କରିଥାଏ । ଉଚ୍ଚମନ ଓ ସଦ୍‌ଗୁଣ ପାଇବାକୁ ହେଲେ ଯୌନ ଆକର୍ଷଣକୁ ପ୍ରତିରୋଧ କରିବା ଉଚିତ । ନୈତିକ ବଳ ଶାରୀରିକ ଶକ୍ତି ଉପରେ ପ୍ରଭାବ ବିସ୍ତାର କରିବା ଦରକାର । ଯୌନ ପ୍ରବୃତ୍ତିକୁ ନିୟନ୍ତ୍ରଣ କରିବା ଉଚିତ ଯେହେତୁ ଧର୍ମ ଓ ଇନ୍ଦ୍ରିୟମାନଙ୍କ ସୁଖ ଏକ ସଙ୍ଗେ ଚଳିପାରେ ନାହିଁ ।

ଆଜିକାଲିର ସହର ଓ ମଫସଲର ଯୁବତୀମାନେ ଆଦିବାସୀ ସମାଜର ଯୁବକ ଓ ଯୁବତୀମାନଙ୍କ ତୁଳନାରେ ସଭ୍ୟ ଓ ଶିକ୍ଷିତ । ଶିକ୍ଷା, ଶୁଣାଶୁଣି ବା ପଢ଼ାପଢ଼ିରୁ ସେ କେତେକାଂଶରେ ଯୌନ ଜ୍ଞାନ ପାଇଥାଏ । ତଥାପି ବିବାହ ଓ ଗୃହସ୍ଥ ଜୀବନରେ ଅଧିକାଂଶ ସ୍ଥାନରେ ଆନନ୍ଦ ରହେ ନାହିଁ କାହିଁକି ?



—୬—

## ଯୌନଶିକ୍ଷା ଓ ସଭ୍ୟତା

ସଭ୍ୟ ଯୁଗରେ ମନୁଷ୍ୟର ମାନସିକ ବିକାଶ ଯେତେ ଦୂର ବୃଦ୍ଧି-ଲାଭ କରିଛି, ତାର ଜୀବନ ମଧ୍ୟ ସେତେ ଦୂର ଜଟିଳ ହୋଇ ପଡ଼ିଛି । ଯୌନକ୍ରିୟା ପୂର୍ବରୁ ପ୍ରେମ ସମ୍ଭାଷଣ ଓ ପ୍ରେମକ୍ରୀଡ଼ା ଯୌନତୃପ୍ତିକୁ ଗମ୍ଭୀର କରିଦେଇଛି । କିନ୍ତୁ ଏହି ସମସ୍ତ ଦ୍ୱାରା ଯୌନପ୍ରବୃତ୍ତିର ମାତ୍ରା ମଧ୍ୟ ବୃଦ୍ଧି ପାଇଛି । ସମୂହ ଦୃଷ୍ଟିରୁ ଦେଖିବାକୁ ଗଲେ ଜଣାଯିବ ଯେ ଏହା ଦ୍ୱାରା ସଭ୍ୟ ମନୁଷ୍ୟର ଯୌନତୃପ୍ତିରେ ବାଧା ଆସିଛି ଏବଂ ଆଦିମ ମନୁଷ୍ୟ ଅପେକ୍ଷା ସଭ୍ୟଯୁଗର ମନୁଷ୍ୟ ଯୌନକର୍ମରେ ଅତୃପ୍ତ ।

ନାରୀ ରତିକ୍ରିୟାରେ ଯୌନତୃପ୍ତି ପାଇବା ତାହାର ଶାରୀରିକ ଓ ମାନସିକ ଅବସ୍ଥା ଉପରେ ନିର୍ଭର କରେ । ଆଦିବାସୀମାନଙ୍କର ପର୍ବର ନାଚ, ଗୀତ ପ୍ରଭୃତିରେ ବିଶେଷ ଭାବେ ଅଶ୍ଳୀଳତା ଦେଖାଯାଇଥାଏ । ସେମାନେ ଏଥିନିମନ୍ତେ ଲଜ୍ଜା ଅନୁଭବ କରନ୍ତି ନାହିଁ । ସଭ୍ୟତା ସେମାନଙ୍କୁ ଛୁଇଁ ନ ଥାଏ । ବିବାହ ପୂର୍ବରୁ ସେମାନେ ଯୌନପ୍ରବୃତ୍ତି ଦ୍ୱାରା ପ୍ରଭାବିତ ହୋଇ ନ ଥିଲେ ମଧ୍ୟ ସେମାନଙ୍କର ଯୌନ ସ୍ୱାଧୀନତା ରହେ । ପରମ୍ପରା ଦେଇ ଏ ସବୁ ଚାଲେ । ଆଦିବାସୀ ମନୁଷ୍ୟର ଯୌନପ୍ରବୃତ୍ତି ନିଜର ଆୟତ୍ତାଧୀନ ନୁହେ । ସେହେତୁ ତାହାର ଯୌନ-କ୍ରିୟା ପଶୁବତ୍, ନିଷ୍ଠୁର ଓ ନିର୍ଦ୍ଦୟ । ଆଦିବାସୀ ରମଣୀମାନଙ୍କର ସେହିପରି ଅବସ୍ଥାରେ ପ୍ରବଳ ଯୌନ ଆକାଙ୍କ୍ଷା ରହେ । ସେହେତୁ ସେ ଶୀଘ୍ର ଯୌନତୃପ୍ତି ଲାଭ କରେ । ତାହା ନିକଟରେ ଗର୍ଭଧାରଣର ଭୟ କିମ୍ବା ଯୌନରୋଗର ଆଶଙ୍କା ନ ଥାଏ । ସେଠାରେ ସ୍ନେହ ଓ ପ୍ରେମର ବିଶେଷ ସ୍ଥାନ ରହେ ନାହିଁ କିମ୍ବା ଦୀର୍ଘ-ଜୀବନ ସହବାସର କାମନା ମଧ୍ୟ ନ ଥାଏ । ତଥାପି ଆଦିବାସୀ ନାରୀମାନେ ଯୌନତୃପ୍ତି ଲାଭ କରିବାର କାରଣ ହେଉଛି ଯେ ନାରୀର ଯୌନତୃପ୍ତି ଉପରେ ହିଁ ପୁରୁଷର ପୌରୁଷ ଭିତ୍ତି କରିଥାଏ ।

ଅନେକ ଆଦିବାସୀ ଗାଁମାନଙ୍କରେ ଆଦିବାସୀ ଝିଅମାନେ ଯୌବନରେ ପହଞ୍ଚିବା ମାତ୍ରେ ସେମାନେ ଗାଁର ଗୋଟିଏ ସ୍ୱତନ୍ତ୍ର ଘରେ

ରହନ୍ତି । ସେମାନେ ବିବାହ କରିବାବେଳେ ସେହି ଘରୁ ବାହାରି ଆସନ୍ତି । ସେହିପରି ଗାଁର ଅବିବାହିତ ଯୁବକମାନେ ଗୋଟିଏ ଅଲଗା ଘରେ ରହିଥାନ୍ତି । ଏହି ଘରମାନଙ୍କରେ ରହିବା ସମୟରେ ସେମାନେ ଯୌନଶିକ୍ଷା ପାଇଥାନ୍ତି । ଏହି ବୟସର ଯୁବକ ଓ ଯୁବତୀମାନଙ୍କ ଯୌନପ୍ରବୃତ୍ତି ଉପରେ ଆଦିବାସୀ ସମାଜ କଟକଣା ଜାରି କରେ । କୌଣସି ଯୁବତୀ ବ୍ୟଭିଚାର କରିବା ଜଣାଗଲେ ମୃତ୍ୟୁଦଣ୍ଡର ମଧ୍ୟ ସମ୍ଭାବନା ରହେ ।

ଆଦିବାସୀ ସମାଜରେ ନାରୀର ସ୍ଥାନ ବହୁତ ନିମ୍ନରେ । ସାଧାରଣତଃ ଅନେକ ଆଦିବାସୀ ସମାଜରେ ନାରୀମାନଙ୍କୁ ବିକ୍ରୀ କରାଯାଏ କିମ୍ବା ବଳାତ୍କାରରେ କିଏ ନେଇ ଚାଲିଯାଇଥାନ୍ତି । ସେହେତୁ ସେମାନେ ମାଲିକର ଇଚ୍ଛା ଅନୁଯାୟୀ କାର୍ଯ୍ୟ କରିଥାନ୍ତି । ଯେଉଁ ପୁରୁଷର ଯେତୋଟି ଅଧିକ ନାରୀ ଥାଆନ୍ତି କିମ୍ବା ଲଟେଇବିଦ୍ୟାରେ ଯେ ନିପୁଣ, ସମାଜରେ ତାର ସ୍ଥାନ ସେତେ ଉଚ୍ଚରେ ।

ଆଦିବାସୀ ସମାଜରେ ମାଲିକ ତାହାର ନାରୀକୁ ଛାଡ଼ିଦେଇ ପାରେ କିମ୍ବା ବିକ୍ରୀ କରିଦେଇ ପାରେ କିମ୍ବା ଅନ୍ୟ କାହାକୁ ଉଧାର ଦେଇପାରେ । ଏଥିରେ ନାରୀର କିଛି କହିବାର ନାହିଁ । ଗତ କେତେବର୍ଷ ପର୍ଯ୍ୟନ୍ତ ଫିଜି ଓ ଦକ୍ଷିଣ ସାଗର ଉପଦ୍ୱୀପରେ ନାରୀମାନଙ୍କୁ ଭଲଭାବେ ଖାଇବାକୁ ଦେଇ ସେମାନଙ୍କୁ ମୋଟା କରାଯାଉଥିଲା । ସେମାନେ ମୋଟି ହେଲେ ତାଙ୍କୁ ମାରି ମାଂସ ଭକ୍ଷଣ କରୁଥିଲେ । ସେଠାର ସମାଜରେ ଲୋକଙ୍କ ଧାରଣା ଥିଲା ଯେ ନାରୀର ମାଂସ ଭକ୍ଷଣ କଲେ ପୁରୁଷର ଯୌନଶକ୍ତି ବୃଦ୍ଧି ପାଏ ବା ତାର ପୁନରୁଦ୍ଧାର ହୁଏ ।

ଆଫ୍ରିକା ମହାଦେଶର ଅନେକ ସ୍ଥାନରେ ନାରୀମାନଙ୍କୁ ବିକାକିଣା କରୁଥିଲେ । ଗୋଟିଏ ପୁରୁଷ ଅନେକ ନାରୀ ବିବାହ କରିବା ପ୍ରଥା ସେଠାରେ ପ୍ରଚଳିତ । ରଜା ଓ ସମାଜର ମୁଖିଆ ଲୋକମାନେ ଅନେକ ନାରୀଙ୍କୁ ବିବାହ କରି ରଖୁଥିଲେ । ପଇସା, ଶ୍ରମ କିମ୍ବା ଜିନିଷ କନ୍ୟାପିତାକୁ ବଦଳ ଦେଇ ତାଠାରୁ ଝିଅ ଖରିଦ କରି ନେଉଥିଲେ ।

ଆଦିବାସୀ ସମାଜରେ ନାରୀ ହେଉଛି ପୁରୁଷର ଦାସୀ । ନାରୀ ପରିଶ୍ରମ କରି ଆଦାୟ କରେ; କିନ୍ତୁ ପୁରୁଷ ଖିଆପିଆ କରି, ମଦପିଇ ଧୂମପାନ କରି ଅଳସୁଆ ହୋଇ ଘରେ ରହେ । ସମାଜ ସଭାରେ

ଭାଗ ନିଏ କିମ୍ବା ମାଛ ଧରିବା, ଶିକାର କରିବା ବା ଲଢ଼େଇ କରିବା ପାଇଁ ଯାଏ । ଏପରି ଅବସ୍ଥାରେ ନିଜର ପରାକ୍ରମ ଦେଖାଇବା କରିବା ନିମନ୍ତେ ସାଧାରଣତଃ ବିଶେଷ ବିବାହ କରିବା ପାଇଁ ସ୍ତ୍ରୀ ସ୍ୱାମୀଙ୍କୁ କହିଥାଏ । ଆଦିବାସୀମାନଙ୍କର ଯୌନଜୀବନରେ ଅନେକ ରକମ ପ୍ରଜାପତିମାନଙ୍କରେ ଯେଉଁ ନାଚଗୀତ ହୁଏ, ସେଥିରେ ଯୌନସମ୍ବନ୍ଧୀୟ ନାଚଗୀତ, କୁସ୍ତିକସରତର ପରୀକ୍ଷା ହୋଇଥାଏ । ଏଥିରେ ଭଲ କଲେ ଯୁବକଙ୍କୁ ପୁରୁଷସମାଜରେ ଗ୍ରହଣ କରାଯାଏ । ଆଦିବାସୀ ଯୁବକ ଯାହାର କି ପ୍ରକୃତ ବିଷୟଟି ବୁଝିବାର ଶକ୍ତି ନ ଥାଏ ସେ ଏ ସମସ୍ତଙ୍କୁ ଧର୍ମ ସହିତ ମିଶାଇ ବିଶ୍ୱାସ କରନ୍ତି ।

ସାଧାରଣତଃ ଆଦିବାସୀମାନଙ୍କର ଜୀବନକୁ ତିନି ଭାଗରେ ବିଭକ୍ତ କରାଯାଇ ପାରେ—

(କ) ଯୌବନରେ ପଦାର୍ପଣ କରିବା ପର୍ଯ୍ୟନ୍ତ ସେମାନେ ନାରୀ-ମାନଙ୍କ ସହିତ ଏକାଠି ରହନ୍ତି । ପିଲାମାନଙ୍କ ମଧ୍ୟରେ ଯୌନ ସ୍ୱାଧୀନତା ରହେ । ବାଳିକାମାନଙ୍କର ରଜଃସ୍ରାବ ଆରମ୍ଭ ହେଲେ କିମ୍ବା ଛାତିର ସ୍ତନ ଫୁଲି ଉଠିଲେ ସେମାନଙ୍କୁ ଯୁବତୀ ବୋଲି ଧରାଯାଏ ।

(ଖ) ଯୌବନରେ ପଦାର୍ପଣ କରିବା ଠାରୁ ବୃଦ୍ଧାବସ୍ଥା ପର୍ଯ୍ୟନ୍ତ ଏବଂ ବାଳିକାମାନଙ୍କର ରଜଃସ୍ରାବ ଆରମ୍ଭଠାରୁ ରଜଃସ୍ରାବର ଶେଷ ପର୍ଯ୍ୟନ୍ତ କିମ୍ବା ସ୍ତନ ଦୁଇଟି ପେଟପର୍ଯ୍ୟନ୍ତ ଓହଳି ଝୁଲିବା ପର୍ଯ୍ୟନ୍ତ ।

(ଗ) ନାରୀମାନଙ୍କ ରଜଃସ୍ରାବ ବନ୍ଦ ହେବା ପରେ ଯୌନଶକ୍ତି ହରାଇ ବୃଦ୍ଧାବସ୍ଥାଠାରୁ ମୃତ୍ୟୁ ପର୍ଯ୍ୟନ୍ତ ।

ବାଳକ ଓ ବାଳିକାମାନେ ଯୌବନରେ ପଦାର୍ପଣ କଲାବେଳେ ବହୁତ ମେଳା ମହୋତ୍ସବ ହୋଇ ଗାଁରେ ଥିବା ଯୁବକ ଓ ଯୁବତୀମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ଘରମାନଙ୍କରେ ରହନ୍ତି । ସେହି ଘରେ ରହିଥିବା ଯାଏଁ ଯୁବତୀମାନେ ଯୁବକଙ୍କ ଠାରୁ ପୃଥକ୍ ରହିବା ନିମନ୍ତେ କଠୋର ବ୍ୟବସ୍ଥା ହୁଏ । କୌଣସି ଯୁବତୀ ଯୁବକମାନଙ୍କ ଘରକୁ ଗଲେ ମୃତ୍ୟୁଦଣ୍ଡ ପାଇବାର ମଧ୍ୟ ସମ୍ଭାବନା ରହେ ।

ଯୁବକ ଓ ଯୁବତୀମାନଙ୍କର ଯୌବନରେ ପଦାର୍ପଣ କଲାବେଳେ ଯେଉଁ ପର୍ବ ହୁଏ, ତାହା ପ୍ରତ୍ୟେକ ଆଦିବାସୀ ସମାଜରେ ପ୍ରାୟ

ଭିନ୍ନ ଭିନ୍ନ ରୂପ ଧାରଣ କରେ ଏପରି କି ପଟର ପ୍ରଣାଳୀ ଏହାକୁ ଘୋଡ଼େଇ ଦିଏ ।

କେତେକ ସମାଜରେ ବାଳକ ଯୌବନରେ ପଦାର୍ପଣ କଲାବେଳେ ତାହାକୁ ବଳାତ୍କାରରେ ଜଙ୍ଗଲ ଭିତରକୁ ନେଇ ଯାଆନ୍ତି ଓ ସେଠାରେ ସମସ୍ତଙ୍କଠାରୁ ଅଲଗା କରି ତାହାକୁ ରଖନ୍ତି । ତା ପରେ ଦିନଠାରୁ ବୃଦ୍ଧମାନେ ଆସି ଯୌନବିଦ୍ୟା, ଯାଦୁମନ୍ତ୍ର ପ୍ରଭୃତିରେ ଶିକ୍ଷା ଦେଇଥାନ୍ତି । ସେହିପରି ପ୍ରାୟ ଦଶବର୍ଷ ବୟସ ହେଲେ ବାଳିକାମାନଙ୍କୁ ନେଇ ବାଳକମାନଙ୍କ ଘରେ ରଖନ୍ତି ଓ ବିବାହ ପର୍ଯ୍ୟନ୍ତ ସେମାନଙ୍କୁ ସେଠାରେ ରହିବାକୁ ହୁଏ । ବାଳକମାନେ ଶିକ୍ଷା ପାଇ ସାରିବା ପରେ ପ୍ରଥମ ଶିକାର କରି ପାରିଲେ ସମାଜ ସେମାନଙ୍କୁ ଯୁବକ ଓ ବିବାହ-ଯୋଗ୍ୟ ବୋଲି ଗ୍ରହଣ କରେ ।

ବାଳକମାନଙ୍କୁ ସମାଜରେ ବିବାହଯୋଗ୍ୟ ଯୁବକ ବୋଲି ଗ୍ରହଣ କରିବା ପୂର୍ବରୁ ଅନେକ କଷ୍ଟ ଭୋଗିବାକୁ ପଡ଼େ । କେତେକ ଆଦିବାସୀ ସମାଜରେ ଦାନ୍ତରେ କଳା ରଙ୍ଗ ଲଗାଯାଏ । ଏହା ବ୍ୟତୀତ କେତେକ ସ୍ଥାନରେ କେତେଦିନ ପର୍ଯ୍ୟନ୍ତ ଉପବାସ ରହିବାକୁ ହୁଏ । କେତେକ ରାତି ଅନିଦ୍ରା ବା କେତେକ ଦିନ ଖଟରେ ହଲଚଲ ନ ହୋଇ ପଡ଼ି-ରହିବାକୁ ହୁଏ । ସେହି ଆଦିବାସୀ ସମାଜମାନଙ୍କରେ ଏହାକୁ ପୁନର୍ଜନ୍ମ ବୋଲି ଭାବିଥାନ୍ତି ।

ଆଫ୍ରିକାର କ୍ୟାମିରନ୍ ଆଦିବାସୀ ସମାଜରେ ବାଳକମାନଙ୍କୁ ରଙ୍ଗରେ ଚିତ୍ର କରି ଯୁବତୀଙ୍କ ପରି କଦଳୀପତ୍ରରେ ଗୋଟିଏ ତୋରଣ ଅଣ୍ଟାରେ ଭିଡ଼ି ଦିଅନ୍ତି । ଏହି ପରି ଛ'ମାସ ପର୍ଯ୍ୟନ୍ତ ଜଙ୍ଗଲରେ ସେମାନଙ୍କୁ ସମାଜର ପୁରୋହିତ ସହିତ ରହିବାକୁ ହୁଏ । ଛମାସ ଶେଷରେ ପୁରୋହିତ କୁଡ଼ିଆଘରର ଭିତରେ ପଶି ଗୋଟିଏ ରକ୍ତାକ୍ତ ମୂନିଆ ଭୂଷା ଭୁଷି ଦିଏ । ଏଥିର ଅର୍ଥ ହୁଏ ଯେ ଯେଉଁ ରାକ୍ଷସ ବା ପିଶାଚ ବାନ୍ଧି ରଖିଥିଲା, ତାହାକୁ ନାଶ କରିଗଲା । ଏହା ପରେ ସେମାନେ ଯୌନ-ପ୍ରବୃତ୍ତିରେ ମାତନ୍ତି ଓ ଯେଉଁ ଯୁବତୀ ସହଯୋଗ କରେ ସେ କଦଳୀ-ପତ୍ରର ତୋରଣଟିକୁ ଯୁବକର ଅଣ୍ଟାରୁ ବାହାର କରିଦିଏ । ଅନେକ ସମୟରେ ବାଲ୍ୟ ଅବସ୍ଥାର ନାମ ବଦଳିଯାଇ ନୂତନ ନାମ ସେ ଧାରଣ

କରେ । ଶରୀରରେ ଭିନ୍ନ ଭିନ୍ନ ରକମର ଚିତା କୁଟାଇ ସମାଜରେ ଯୁବକ ହିସାବରେ ସେ ପରିଚୟ ପାଏ ।

ଆଉ କେତେକ ଆଦିବାସୀ ସମାଜରେ ମଣିଚର୍ମର ବ୍ୟବଚ୍ଛେଦ ପ୍ରଥା ରହିଛି । ବୃଦ୍ଧାବସ୍ଥାରେ ଯୌନଶକ୍ତିର ବୃଦ୍ଧି ବା ଯୌନଶକ୍ତିର ପୁନରୁଦ୍ଧାର ନିମନ୍ତେ କେତେକ ବୃଦ୍ଧଲୋକ ମଧ୍ୟ ସେହି ବୟସରେ ପୁଣି ମଣିଚର୍ମର ବ୍ୟବଚ୍ଛେଦ କରିଥାନ୍ତି । ବିଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ରକମର ମଣିଚ୍ଛେଦର ବ୍ୟବଧାନ ପ୍ରଥା ଦେଖାଯାଏ । କେତେକ ସ୍ଥାନରେ ଗୋଲେଇ ମଣିଚର୍ମର ଗୋଟିଏ ସ୍ଥାନରେ କାଟିଦେଇ ଖୋଲି ଦିଅନ୍ତି । ଆଉ କେତେକ ସ୍ଥାନରେ ମଣିରେ ମଧ୍ୟ ଫୋଡ଼ି କରନ୍ତି । କିନ୍ତୁ ସାଧାରଣତଃ ମଣିଚର୍ମକୁ ପୂର୍ଣ୍ଣ ବା ଆଂଶିକ ଭାବେ କଟାଯାଇଥାଏ ।

ବାଳକାମାନେ ଯୌବନରେ ପଦାର୍ପଣ କରିବାବେଳେ ପ୍ରାୟ ଏହିପରି ହୁଏ । ସେହି ଗାଁର 'ବାଳକାମାନଙ୍କ ଘରେ' ଥିବା ପର୍ଯ୍ୟନ୍ତ ଯେଉଁ ଯୁବକଙ୍କୁ ସେ ବିବାହ କରିବ ତାହା ଛଡ଼ା ଅନ୍ୟାନ୍ୟ ଲୋକଙ୍କ ସଙ୍ଗେ ଦେଖାଶୁଣା କରି ପାରେ । 'ବାଳକାଘର' ଛାଡ଼ିବା ପରେ ସ୍ୱାମୀର ହୋଇ ରହେ । 'ବାଳକାଘର'ରେ ରହିବା ସମୟରେ ବ୍ରହ୍ମଚର୍ଯ୍ୟ ପାଳନ କରିଥାଏ । ସେହି ସମୟରେ କୌଣସି ପୁରୁଷ ସହିତ ଯୌନ ସଙ୍ଗମ କରିବା ଦେଖାଗଲେ ମୃତ୍ୟୁଦଣ୍ଡର ଆଶଂକା ରହେ । କିନ୍ତୁ ଅନେକ ଆଦିବାସୀ ସମାଜରେ ଯୁବତୀର ଏହି ସମୟରେ ପଦସ୍ଖଳନ ହେଲେ ସାଧାରଣତଃ ମୃତ୍ୟୁଦଣ୍ଡ ଦିଆଯାଏ ନାହିଁ । ସେ ତାର ପୁରୁଷ ସହିତ ସମ୍ବନ୍ଧ ରଖିପାରେ, କିନ୍ତୁ ବ୍ରହ୍ମଚର୍ଯ୍ୟ ପାଳିଲା ପରି ଦେଖାହୁଏ ।

'ବାଳକା ଗୃହ'ରେ ଅନୁଭୂତିସମ୍ପନ୍ନ ବୃଦ୍ଧା ନାରୀମାନଙ୍କ ସହିତ ସେମାନେ ରହିନ୍ତି । ଏହି ବୃଦ୍ଧା ନାରୀମାନେ ବିବାହ ବିଷୟରେ ଶିକ୍ଷା ଦେଇଥାନ୍ତି । ମାଟିର କଣ୍ଢେଇ ଏଥିପାଇଁ ତିଆରି ହୁଏ । ତାହାରି ସାହାଯ୍ୟରେ ସେମାନଙ୍କୁ ଶିକ୍ଷା ଦିଆଯାଏ । ଆଫ୍ରିକାର ଓ ଜାଞ୍ଜିବାର୍‌ର ଆଦିବାସୀ ସମାଜରେ ଯୌନସଙ୍ଗମରେ ଯୌନ ଉତ୍ତେଜନା ବୃଦ୍ଧି କରିବା ନିମନ୍ତେ ନାନା ରକମର କଟିଗୃଳନାର ଶିକ୍ଷା ଦିଆଯାଏ । ଏହି ଶିକ୍ଷା ଯେଉଁଠାର ଯେଉଁ ଯୁବତୀ ପାଇ ନ ଥାଏ, ତାହାକୁ ଅନୁପଯୁକ୍ତ କନ୍ୟା ବୋଲି ସମାଜରେ ଭାବନ୍ତି ।

ସେହେତୁ ଏହି ସମସ୍ତରୁ ଦେଖାଯିବ ଯେ ପ୍ରଥମ ଯୌନସଙ୍ଗମ-ବେଳେ ସଭ୍ୟ ସମାଜର ନାରୀ ଅପେକ୍ଷା ଆଦିବାସୀ ସମାଜର ନାରୀ ଅଧିକ ଅଭିଜ୍ଞ ।

କେତେକ ଆଦିବାସୀ ସମାଜରେ 'ବାଳକାବୃଦ୍ଧ' ଛାଡ଼ିବା ବେଳେ ବାଳକାମାନଙ୍କର କେତେକ ଦାନ୍ତ ଉପାଡ଼ି ଦିଆଯାଏ ବା ସେମାନଙ୍କ ଶରୀରରେ ଶିତା କୁଟାଯାଏ ଏବଂ ନାକ ଓ କାନ ଫୋଡ଼ାଯାଏ ।

ଆଫ୍ରିକାର ଭିକ୍ଟୋରିଆ ହ୍ରଦ ନିକଟରେ ରହୁଥିବା ଆଦିବାସୀ ସମାଜରେ ଏବଂ ଅନ୍ୟାନ୍ୟ କେତେକ ସ୍ଥାନର ଆଦିବାସୀ ସମାଜରେ ତଳ ଓଠ ଓ କାନରେ ଫୋଡ଼ି କରି ବଡ଼ ବଡ଼ କାଠଚକ ଲଗାଇଥାନ୍ତି । ଏହା ବର୍ତ୍ତମାନ ନାରୀର ବେଶଭୂଷା ଓ ସୌନ୍ଦର୍ଯ୍ୟ ବୋଲି ସେମାନଙ୍କ ସମାଜରେ ଧରାଯାଏ । ପୂର୍ବେ ଏହି ଅଞ୍ଚଳକୁ ବ୍ୟବସାୟୀମାନେ ଆସି ସୁନ୍ଦରୀ ଯୁବତୀମାନଙ୍କୁ ବଳାତ୍କାରରେ ବେଦୁଇନ୍ ସମାଜର ମୁଖିଆଲୋକଙ୍କ ବିବାହ ନିମନ୍ତେ ନେଇ ଯାଉଥିଲେ କିମ୍ବା କ୍ରୀତଦାସୀ ସ୍ୱରୂପ ବିକ୍ରି କରୁଥିଲେ । ଯୁବତୀର ସୌନ୍ଦର୍ଯ୍ୟ ନଷ୍ଟ କରିଦେବା ନିମନ୍ତେ ଏହି ପ୍ରଥାର ପ୍ରଚଳନ ହେଲା; କିନ୍ତୁ ପରେ ଏହାକୁ ଅଭ୍ୟାସକ୍ରମେ ସମାଜରେ ସୌନ୍ଦର୍ଯ୍ୟବୃଦ୍ଧି ନିମନ୍ତେ ଅଳଙ୍କାର ବୋଲି ଧରାଗଲା । ଅବଶ୍ୟ ଆଦିବାସୀମାନଙ୍କ ସୌନ୍ଦର୍ଯ୍ୟଜ୍ଞାନକୁ ସଭ୍ୟ ଜଗତର ମାପକାଠି ପକାଇ ଦେଖିବା ଠିକ୍ ନୁହେଁ ।

ଯୌବନରେ ପଦାର୍ପଣ କଲାବେଳେ ବାଳିକାମାନଙ୍କର ମଧ୍ୟ କେତେକ ଆଦିବାସୀ ସମାଜରେ ବ୍ୟବଚ୍ଛେଦର ପ୍ରଥା ରହିଛି । ଅଳ୍ପ କେତେକ ସ୍ଥାନରେ ଭଗାଙ୍କୁର ବା ଭଗୌଷ୍ଠର ବ୍ୟବଚ୍ଛେଦ ହୁଏ । କିନ୍ତୁ ଅନେକ ସ୍ଥାନରେ କେବଳ କୁମାରୀଚ୍ଛଦକୁ ନଷ୍ଟ କରି ଦେଇଥାନ୍ତି । କେତେକ ସ୍ଥାନରେ କୁମାରୀଚ୍ଛଦକୁ କୃତ୍ରିମ ଉପାୟରେ ଓ ଆଉ କେତେକ ସ୍ଥାନରେ ଦଳର ମୁଖିଆ, ପୁରୋହିତ, ବା ବାପା ନିଜେ ରତିକ୍ରିୟା କରି ନଷ୍ଟ କରିଥାନ୍ତି । ଏହାଦ୍ୱାରା ଭବିଷ୍ୟତରେ ଯୌନସଙ୍ଗମ ନିମନ୍ତେ ଯୋନିମୁଖ ବଡ଼ ହୁଏ ବୋଲି ଆଦିବାସୀ ସମାଜ ବିଶ୍ୱାସ କରେ ।

ନାଚରେ ଯୋଗ ଦେବା ନାରୀମାନଙ୍କ ଠାରେ ଯୌନ ଉତ୍ତେଜନା ସୃଷ୍ଟି କରିବା ଆଦିବାସୀମାନଙ୍କ ନାଚ ଓ ଗାନର ଉଦ୍ଦେଶ୍ୟ । ଦକ୍ଷିଣ

ଆମେରିକାର ପେରୁ ଆଦିବାସୀ ସମାଜରେ ଅନ୍ଧକାରରେ ଏକରକମ ନାଚ ଆରମ୍ଭ ହୁଏ । ଏଥିରେ ପୁରୁଷମାନେ କେତେ ସମୟ ନାଚିବା ପରେ ନାରୀମାନେ ଯୋଗ ଦେଇ ନିତମ୍ବକୁ ଝାଡ଼ିଲା ପରି କରି କଟିକୁ ହଲାଇଥାନ୍ତି । ନାଚରେ ଶରୀରର ଅନେକ ଇନ୍ଦ୍ରିୟ ଏକ ସମୟରେ କାର୍ଯ୍ୟ କରେ, ଯଥା— ଦୃଷ୍ଟି, ଶ୍ରବଣ (ନାଚଗୀତ ସମୟରେ ଯେଉଁ ବାଦ୍ୟ ବା ଶବ୍ଦ ହୁଏ ତାହା ଶୁଣିବା ପାଇଁ), ଘ୍ରାଣ (ଶରୀରମାନଙ୍କରୁ ଯେଉଁ ଗନ୍ଧ ବାହାରେ) ଏବଂ ଶେଷରେ ସ୍ପର୍ଶ । ସେମାନଙ୍କ ଉତ୍ସବମାନ ସାଧାରଣତଃ ଗାନ, ମଦ୍ୟପାନ, ନାଚ ଓ ଶେଷରେ ଯୌନକ୍ରିୟାରେ ସମାପ୍ତ ହୁଏ । ମଦ୍ୟନିଶା ଯୋଗୁଁ ଯୌନସଙ୍ଗମ ବେଳେ ବାଳିକା, ସ୍ତ୍ରୀ, ଝିଅ ଓ ମା' ନେଇ ଅନେକ ସମୟରେ ବାଛବିଚାର ରହେ ନାହିଁ ।

ପେରୁଭିୟା ସମାଜରେ ଡିସେମ୍ବର ମାସରେ ଶସ୍ୟ ଅମଳ ସମୟରେ ଗୋଟିଏ ଉତ୍ସବ ହୁଏ । ଉତ୍ସବର କେତେଦିନ ପୂର୍ବରୁ ସମସ୍ତେ ଉପବାସ ରହି ବ୍ରହ୍ମଚର୍ଯ୍ୟ ପାଳନ କରନ୍ତି । ଉତ୍ସବ ଦିନ ପୁରୁଷ ଓ ନାରୀମାନେ ଲଙ୍ଗଳା ହୋଇ ବଗିଚାରେ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚନ୍ତି । ଯେତେବେଳେ ସୂଚନା ଦିଆଯାଏ ସେତେବେଳେ ସମସ୍ତେ ଦୂରରେ ଥିବା ଗୋଟିଏ ପାହାଡ଼ ଆଡ଼େ ଦୌଡ଼ନ୍ତି । ଏହି ଦୌଡ଼-ପ୍ରତିଯୋଗିତା ବେଳେ ଯେଉଁ ପୁରୁଷ ଯେଉଁ ନାରୀକୁ ଦୌଡ଼ି ଟପିଯାଏ ସେହି ନାରୀ ସହିତ ସେ ପୁରୁଷ ରତି କରିଥାଏ । ଏହି ଉତ୍ସବ ଛ'ଦିନ ଓ ଛ'ରାତି ପର୍ଯ୍ୟନ୍ତ ହୁଏ ।

କ୍ୟାମିରନ୍‌ର ଆଦିବାସୀ ସମାଜରେ ଅନ୍ୟ ଏକରକମ ନୃତ୍ୟ ହୁଏ । ଏହି ନୃତ୍ୟରେ ଯୁବତୀମାନେ ଗୋଟିଏ ଧାଡ଼ିରେ ଠିଆ ହୋଇ ନିଜର ଶରୀରକୁ ହଲଉଥାନ୍ତି । ପୁରୁଷମାନେ ସେମାନଙ୍କ ସାମନାରେ ଆଉ ଗୋଟିଏ ଧାଡ଼ିରେ ଠିଆ ହୁଅନ୍ତି । ହଠାତ୍ ପୁରୁଷଙ୍କ ଧାଡ଼ିରୁ ଗୋଟିଏ ପୁରୁଷ ବାହାରି ଯେଉଁ ଯୁବତୀକୁ ଭଲ ପାଉଥାଏ ତାହାରି ଆଗରେ ଗୋଡ଼ ବଙ୍କାଇ ଠିଆ ହୁଏ ଏବଂ ଯୁବତୀର ପେଟକୁ ଆଉଁସେ । କେତେବେଳେ କପରି ଯୁବତୀଟି ନଇଁପଡ଼ି ତାର ସ୍ତନ ଦୁଇଟି ପୁରୁଷକୁ ଦେଖାଇ ଦିଏ ଓ ପୁରୁଷଟି ସ୍ତନକୁ ଚୁମ୍ବେ । ଏହିପରି ପ୍ରତ୍ୟେକ ଯୁବତୀ ନିକଟକୁ ସେମାନଙ୍କ ପସନ୍ଦକାରୀମାନେ ଯାଇଥାନ୍ତି ।

ଆଇକାର ବ୍ରୁସ୍‌ମ୍ୟାନ ସମାଜରେ ବର୍ଷରେ କେତେକ ନିର୍ଦ୍ଦିଷ୍ଟ ଦିନରେ ପୁରୁଷ ଓ ନାରୀମାନେ ଖୋଲା ପଡ଼ିଆରେ ନାଚ କରନ୍ତି । ଏହି ନାଚରେ ବୁଢ଼ୀ ନାରୀମାନେ ଗୀତ ଗାଇ ତାଳ ମାରି ବାଦ୍ୟ ବଜାନ୍ତି । ଯୁବତୀମାନେ ଧାଡ଼ିରେ ଠିଆ ହୋଇ ହାତ ହଲାଇ ବାଦ୍ୟ ଅନୁଯାୟୀ ଗୋଡ଼ରେ ତାଳ ପକାନ୍ତି । ସେମାନଙ୍କ ନଗ୍ନ ନିତମ୍ବଗୁଡ଼ିକ ଆସ୍ତେ ଆସ୍ତେ ହଲୁଥାଏ । ଏହିପରି କେତେକ ସମୟ ପରେ ଗୋଟିଏ ଯୁବକ ମୁଣ୍ଡରେ ଶିଙ୍ଗ ଲଗାଇ ହଠାତ୍ ପହଞ୍ଚି ଯୁବତୀମାନଙ୍କ ଆଡ଼କୁ ଯାଏ ଓ ଯୁବତୀ-ମାନଙ୍କ ଧାଡ଼ିର ଚାରିପଟେ ଦୌଡ଼େ । ତାପରେ ସେ ଧାଡ଼ିମଧ୍ୟରୁ ଗୋଟିଏ ଯୁବତୀକୁ ହଠାତ୍ ଟାଣିନିଏ ଓ ଯୌନକ୍ରିୟା ସମୟର ଅଙ୍ଗ-ଚାଳନା କରି ପରି ନାଚେ । ଗୋଟିକ ପରେ ଗୋଟିଏ ଧାଡ଼ିରୁ ଯୁବତୀ ନେଇ ଅନେକ ସମୟ ପର୍ଯ୍ୟନ୍ତ ନାଚ ଚାଲେ ଓ ଶେଷରେ ଧାଡ଼ି ଭାଙ୍ଗି ଯାଏ ।

ତେନମ୍ବାର (Tenembar) ଓ ଟିମାର୍ଲୋ (Timorlao) ଦ୍ୱୀପର ଆଦିବାସୀ ସମାଜରେ ବିବାହପୂର୍ବରୁ ପ୍ରଣୟ (Courtship) ଆରମ୍ଭ ହୁଏ । ରାତିରେ ଯୁବତୀ ଯେଉଁ ଘରେ ବା ଘରର ଯେଉଁ ବଖରାରେ ଶୋଇଥାଏ ସେହି ବଖରାର ବାଡ଼ରେ ହାତ ମାରି ଯୁବକ ଡାକେ । ଯୁବତୀ ଯୁବକକୁ ଜାଣି ପାରିଲେ ମଧ୍ୟ ତାହାର ନାମ ପଚାରେ । ଯୁବକ ନିଜର ପରିଚୟ ଦେଇ ପାଚିଲା ପିନାଙ୍ଗ ଫଳ ମାଗେ । ଯୁବତୀମାନେ ଶୋଇଲାବେଳେ ପାଚିଲା 'ପିନାଙ୍ଗ' ଫଳ ପାଖରେ ରଖି ଶୁଅନ୍ତି । ଯୁବତୀ ଯଦି ଯୁବକକୁ ଭଲପାଏ, ତାହାହେଲେ ପାଚିଲା ପିନାଙ୍ଗ ଫଳ ବଢ଼ାଇ ଦିଏ ଓ ବାଡ଼ର ବାହାର ପଟକୁ ହାତ ବଢ଼ାଇ ଯୁବକର ମୁଣ୍ଡର ବାଳରେ ହାତ ବୁଲାଏ । ଏହି ସମୟରେ ଯୁବକ ମଧ୍ୟ ଯୁବତୀର ସ୍ତନକୁ ସ୍ପର୍ଶ କରେ । ତହିଁ ଆର ଦିନ ଯୁବତୀ ଜଙ୍ଗଲକୁ ଯାଏ ଓ ବୃକ୍ଷମୂଳେ ଯୁବକକୁ ଭେଟେ । ସେମାନଙ୍କ ପ୍ରଥମ ଯୌନସଙ୍ଗମ ପରେ ଯୁବକର ଲଙ୍ଗରୁ ଯୁବତୀ ବଳାଟିକୁ ବାହାର କରି ନେଇଯାଏ । ଏହି ଯୌନସଙ୍ଗମରୁ ଗର୍ଭସଞ୍ଚାର ହେଲେ ପିତୃତ୍ୱର ସ୍ଥାପନା କରିବା ନିମନ୍ତେ ଯୁବତୀ ଏହା କରିଥାଏ । ଏହିପରି କେତେଦିନ ବିତିଗଲା ପରେ ଯୁବକ କୌଣସି ବୃଦ୍ଧାଦ୍ୱାରା ବିବାହ ପ୍ରସ୍ତାବ ଦେଇ ଯୁବତୀର ବାପା ନିକଟକୁ ଖବର ଦିଏ ।

କେତେକ ଆଦିବାସୀ ସମାଜରେ ବାଲ୍ୟକାଳରୁ ଝିଅମାନଙ୍କର ଭଗୌଷ୍ଠକୁ ଆକାରରେ ବଢ଼ାଇବା ପାଇଁ ମା'ମାନେ ବରାବର ଚେଷ୍ଟା କରିଥାନ୍ତି । ଏହାଦ୍ୱାରା ଝିଅମାନେ ଯୁବାବସ୍ଥାରେ ପହଞ୍ଚିଲା ବେଳକୁ ସେମାନଙ୍କ ଭଗୌଷ୍ଠ ଦୁଇଟି ଖୁବ୍ ଲମ୍ବ ହୋଇଯାଇଥାଏ । ଭଗୌଷ୍ଠ ବହୁତ ବଡ଼ ହେଲେ ଯୌନସଙ୍ଗମରେ ଯୌନତୃପ୍ତି ଭଲଭାବେ ମିଳେ ବୋଲି ସେମାନଙ୍କର ବିଶ୍ୱାସ ।

ପୂର୍ବ କେରୋଲିନ ଦ୍ୱୀପପୁଞ୍ଜର ପୋନାପି ଠାରେ (Ponape, one of the Eastern Caroline Islands) ଯୋନି ବଡ଼ ହୋଇ ଢିଲା ରହିଲେ ସୁବିଧା ହୁଏ ବୋଲି ବାଳିକାମାନଙ୍କର ଯୋନିକୁ ଟାଣି ବଡ଼ କରିବା ପାଇଁ ବୃଦ୍ଧ ଓ କ୍ଳୀବ ପୁରୁଷମାନଙ୍କୁ ନିଯୁକ୍ତ କରାଯାଏ ।

ସାଧାରଣତଃ ଆଦିବାସୀ ପୁରୁଷ ଓ ନାରୀମାନେ ପଶୁମାନଙ୍କୁ ଅନୁକରଣ କରି ହାମୁଡ଼ିବା ଅବସ୍ଥାରେ ଯୌନକ୍ରିୟା କରୁଥିଲେ । ସେମାନେ ସାଧାରଣତଃ ଜଙ୍ଗଲରେ ରହି ପଶୁମାନଙ୍କ ରତିକ୍ରିୟା ଦେଖିଥାନ୍ତି । ସେହେତୁ ସେମାନଙ୍କ ନାଚରେ ମଧ୍ୟ ରତିକ୍ରିୟାର କଟିଗୃଞ୍ଜନ କଲାବେଳେ ତାହା ପଶୁମାନଙ୍କର ଆକାର ଧାରଣ କରେ । ନାରୀ ହାମୁଡ଼ିବା ଅବସ୍ଥାରେ ରହିବା ବେଳେ ପୁରୁଷ ପଛଆଡ଼ୁ ଯୌନସଙ୍ଗମ କରେ ଓ ସେହି ସମୟରେ ନାରୀର ଭଗାଙ୍କୁରକୁ ଆଙ୍ଗୁଳିରେ ସ୍ପର୍ଶ କରିଥାଏ । ପଶୁମାନଙ୍କ ପରି ହାମୁଡ଼ିବା ଅବସ୍ଥାରେ ଯୌନସଙ୍ଗମ କରିବା ଆଫ୍ରିକାର ଆଦିବାସୀ ସମାଜ, କେତେକ ଏସ୍କିମୋ ସମାଜ ଓ କୋନ୍ୟାଙ୍ଗ ଆଦିବାସୀ ସମାଜରେ ଦେଖାଯାଏ ।

କେତେକ ଆଦିବାସୀ ସମାଜରେ ନାରୀକୁ ଅଧିକ ଯୌନତୃପ୍ତି ଦେବା ନିମନ୍ତେ ପୁରୁଷମାନେ ଲିଙ୍ଗରେ ସ୍ପ୍ରେଟ ପର ଲଗାଇଥାନ୍ତି ଯାହା ଫଳରେ ନାରୀର ଯୋନିନାଳୀରେ ଅଧିକ ଘର୍ଷଣ କରାଯାଇ ପାରିବ । ମାଳୟ ଆର୍ଚିପିଲାଗୋର ଆଦିବାସୀ ସମାଜରେ ଲିଙ୍ଗର ମଣିକୁ ଫୋଡ଼ି ସେଥିରେ ବାଉଁଶ, ହାତୀଦାନ୍ତ ବା ରୂପାରେ ତିଆରି ମୁଣ୍ଡ ଗୋଲଥିବା କାଠି ଭରିବା କରିବା ଗୋଟିଏ ପ୍ରଚଳିତ ପ୍ରଥା । ଏହାଦ୍ୱାରା ରତିକ୍ରିୟା ସମୟରେ ଯେଉଁ ଘର୍ଷଣ ସୃଷ୍ଟି ହୁଏ ନାରୀ ତଦ୍ୱାରା ଅତ୍ୟଧିକ ଯୌନତୃପ୍ତି ପାଏ । ଆଉ କେତେକ ଆଦିବାସୀ ସମାଜରେ ନାରୀମାନେ

ମଣିରେ ଗୋଟିଏ କାଠି ରହିବା ଦ୍ୱାରା ତୃପ୍ତି ପାଉ ନ ଥିବାରୁ ସେମାନଙ୍କର ପୁରୁଷମାନେ ଏକାଧିକ କାଠିର ବ୍ୟବହାର କରିଥାନ୍ତି । ମାଳୟରେ ଏହି କାଠିଗୁଡ଼ିକୁ ଆମପଲଙ୍ଗ (ampallang) ବା ପଲଙ୍ଗ (palang) ବା ଉନଟଂଗ (untang) ବା କାମ୍ପିୟନ (campion) କହିଥାନ୍ତି । ସେଲବସ (Celebes) ଦ୍ୱୀପରେ ଆଲଫରମାନେ ବାଳ ଥିବା ଛେଳିର ଆଖିପତାକୁ ମଣିରେ ବାନ୍ଧି ଯୌନସଙ୍ଗମ କରିଥାନ୍ତି । ଏହି ରକମ ଛେଳିର ଆଖିପତାକୁ କାମ୍ବି (Kambi) କୁହାଯାଏ । ସୁଦାନ ସମାଜରେ ଛେଳି-ଚର୍ମରୁ ଏହିପରି ଗୋଟିଏ ଲେଖାଏ ବ୍ୟବହାର କରାଯାଏ । ସୁମାତ୍ରାର ବାଟାକମାନେ (Bataks) ଲିଙ୍ଗର ଗୁହ୍ୟପଟେ ଉପରେ ଚର୍ମରେ ସ୍ଥାନେ ସ୍ଥାନେ କାଟି ସେଥିରେ ଛୋଟ ଛୋଟ ଗୁଡ଼ି ଭରତି କରନ୍ତି । ଏହି କ୍ଷତ-ଗୁଡ଼ିକ ଶୁଖିଗଲେ ଗୁଡ଼ି ରହିଥିବା ସ୍ଥାନଗୁଡ଼ିକ ଉପରକୁ ଉଠି ରହେ । ଯୌନସଙ୍ଗମରେ ନାରୀ ଏହା ଫଳରେ ଭଲଭାବେ ତୃପ୍ତି ପାଏ ।

ଉପରେ ଆଦିବାସୀମାନଙ୍କର ଯୌନଜୀବନର ଯାହାସବୁ ବର୍ଣ୍ଣନା କରାଗଲା, ସେଥିରୁ ସେମାନଙ୍କ ଉପାୟ ଅବଲମ୍ବନ କରି ସଭ୍ୟଜଗତର ନାରୀମାନଙ୍କୁ ଯୌନତୃପ୍ତି ଦେବା ନିମନ୍ତେ କୁହାଯାଉ ନାହିଁ । ସେମାନଙ୍କ ଜୀବନରୁ ସଭ୍ୟ ଜଗତର ପୁରୁଷମାନେ ଏତିକି ବୁଝିବା ଦରକାର ଯେ ଅଶିକ୍ଷିତ ଓ ଅସଭ୍ୟ ଆଦିବାସୀ ପୁରୁଷ ସେହି ସମାଜର ନାରୀକୁ ଯୌନ-ତୃପ୍ତି ଦେବା ନିମନ୍ତେ କିପରି ଚେଷ୍ଟା କରେ ଓ କଷ୍ଟ ସହିପାରେ । ଯୌନସଙ୍ଗମରେ ନାରୀ ଅତୃପ୍ତ ରହିଲେ ଆଦିବାସୀ ପୁରୁଷ ମଧ୍ୟ ଯୌନ-ତୃପ୍ତି ପାଏ ନାହିଁ ବୋଲି କହିଲେ ଚଳେ ।

ଆଦିବାସୀ ସମାଜରେ ନାରୀର ସ୍ଥାନ ନିମ୍ନରେ ହେଲେ ମଧ୍ୟ ପୁରୁଷ ନାରୀକୁ ଯୌନତୃପ୍ତି ଦେବା ନିମନ୍ତେ ଅନେକ ଯତ୍ନ ନିଏ । ନାରୀମାନଙ୍କ କାମପ୍ରବୃତ୍ତିକୁ ଉତ୍ତେଜିତ କରାଇବା ନିମନ୍ତେ ଆଦିବାସୀ-ସମାଜରେ ନାଚ ଓ ଗାନର ସୃଷ୍ଟି । ସେମାନଙ୍କ ନାଚରେ ରତିକ୍ରିୟା ସମୟର କଟିଚାଳନା ବେଶି ଦେଖାଯାଏ । ସଭ୍ୟ ଜଗତରେ ମଧ୍ୟ ନାଚ ଯୌନ ଉତ୍ତେଜନା ସୃଷ୍ଟି କରେ ଓ ଏହାକୁ ଉତ୍ତେଜନାର ପ୍ରଥମ ସୋପାନ ଭାବେ ଧରାଯାଇ ପାରେ । ଏହି ନାଚମାନଙ୍କରେ ଦେଖିବା, ଶୁଣିବା, ଶୁଙ୍ଘିବା, ଛୁଇଁବା ପ୍ରଭୃତି ଇନ୍ଦ୍ରିୟମାନେ ଅଂଶ ଗ୍ରହଣ କରନ୍ତି । ଅଧିକାଂଶ

ସମୟରେ ନାନା କାରଣରୁ ଆଦିବାସୀମାନେ ରାତ୍ରରେ ସେଚ୍ଛାକୃତ କରି ନାଚଗାନ ଆରମ୍ଭ କରନ୍ତି । ନାଚଗାନରେ ଉତ୍ତେଜନା ପାଇ ତା'ପରେ ସେମାନେ ରତିକ୍ରିୟା ଆରମ୍ଭ କରନ୍ତି । ନାଚଗାନ ପରେ ଉଭୟେ ରତିକ୍ରିୟାରେ ରତ ହେବାଦ୍ୱାରା ଶୀଘ୍ର ଯୌନତୃପ୍ତି ଲାଭ କରନ୍ତି । ସେମାନଙ୍କ ଜୀବନଯାତ୍ରା ପ୍ରଣାଳୀ ବଡ଼ ସରଳ । ପ୍ରବୃତ୍ତିର ବଶବର୍ତ୍ତୀ ହୋଇ ସେମାନେ କାର୍ଯ୍ୟ କରିଥାନ୍ତି । କିନ୍ତୁ ସଭ୍ୟ ଜଗତର ଜୀବନଯାତ୍ରା ପ୍ରଣାଳୀ ସେତେ ସରଳ ନୁହେଁ । ଅନେକ ସମୟରେ ଯୁବକ ଓ ଯୁବତୀ ଯୌନକ୍ଷେତ୍ରରେ ଶକ୍ତିହୀନ ହୋଇଥିବାର ଦେଖାଯାଏ । ଯୌନକ୍ରିୟାରେ ଅତୃପ୍ତ ରହିବା ଦ୍ୱାରା ଅନେକ ସମୟରେ ମାନସିକ ବିକୃତି ହୁଏ । କିନ୍ତୁ ଆଦିବାସୀମାନେ ପ୍ରକୃତିର କୋଳରେ ରହି ପ୍ରବୃତ୍ତି ଦ୍ୱାରା ଚାଳିତ ହେଉ-ଥିବାରୁ ଏହିସବୁ ବିକାରମାନ ସେମାନଙ୍କ ଠାରେ ପ୍ରାୟ ଦେଖିବାକୁ ମିଳେ ନାହିଁ ।

**ଚୀନ ଓ ଜାପାନ**—ଯୌନକ୍ଷେତ୍ରରେ ଚୀନ ଓ ଜାପାନର ଲୋକଙ୍କ ଅବସ୍ଥା ଅନ୍ୟାନ୍ୟ ଜାତିମାନଙ୍କ ଠାରୁ ଭିନ୍ନ । ଜାପାନର ନାରୀ ଓ ପୁରୁଷମାନେ ଏକାଠି ହୋଇ ନଗ୍ନ ଦେହରେ ଗାଧୋଇବା ଅତି ସାଧାରଣ କଥା ବୋଲି ମନେ କରନ୍ତି । ମନୁଷ୍ୟର ଉଲଗ୍ନ ଅବସ୍ଥା ଓ ଯୌନ ପ୍ରବୃତ୍ତିକୁ ସେମାନେ ଭିନ୍ନ ଭିନ୍ନ ଦୃଷ୍ଟିକୋଣରୁ ଦେଖିଥାନ୍ତି । ଜାପାନରେ ଘରର ସ୍ୱାମୀ ଉଲଗ୍ନ ଅବସ୍ଥାରେ ଗାଧୋଇବା ବେଳେ ଗୃହକର୍ତ୍ତ୍ରୀ ସାହାଯ୍ୟ କରିଥାଏ । ଏହାଦ୍ୱାରା ସମୟେ ସମୟେ ଉଭୟଙ୍କ ମଧ୍ୟରେ ଯୌନ ସମ୍ପର୍କ ଆସିଯାଏ । କିନ୍ତୁ ଏପରି ଘଟିବା କ୍ୱଚିତ୍ ଦେଖାଯାଏ, ଯାହା କି ସେତେ ଦୂର ଧରାଯାଏ ନାହିଁ । ଜାପାନର ମହିଳାମାନେ ସଙ୍ଗୀତ ପରିବର୍ତ୍ତେ ଅନୁଭୂତ ନିମନ୍ତେ ବିଶେଷ ସ୍ଥାନ ପାଇଥାନ୍ତି ।

ଜାପାନ ଓ ଚୀନ ଦେଶରେ ଯେଉଁ ଅବିବାହିତା ଯୁବତୀମାନେ ବେଶ୍ୟାବୃତ୍ତିର ଆଶ୍ରୟ ନେଇଥାନ୍ତି, ସେମାନେ ଭାରତୀୟ ବା ପାଶ୍ଚାତ୍ୟ ଦେଶର ବେଶ୍ୟାମାନଙ୍କ ଠାରୁ ଭିନ୍ନ । ସେଠାରେ ଅନେକ ଯୁବକ ଓ ଯୁବତୀ ବେଶ୍ୟାଘରେ ରହି ଯୌନଶିକ୍ଷା ପାଇଥାନ୍ତି । ଚୀନ ଦେଶର ବେଶ୍ୟାମାନେ ସେମାନଙ୍କ ଘରର ଝରକାମାନଙ୍କରେ ସାଧାରଣତଃ ଶାଳ-

ପର୍ଦ୍ଦା ଲଗାଇଥାନ୍ତି । ନଗରଗୁଡ଼ିକରେ ସହରମାନଙ୍କରେ ନୌକାଘର ଦେଖିବାକୁ ମିଳେ । ଏହି ନୌକାଘରଗୁଡ଼ିକରେ ଯୁବକମାନେ ଅନେକ ସମୟରେ ଭୋଜିର ବ୍ୟବସ୍ଥା କରନ୍ତି । ସେହି ଭୋଜିରେ ଶିକ୍ଷିତା, ଗାୟିକା ଓ ଅବିବାହିତା ଯୁବତୀମାନେ ଯୋଗ ଦେବାର ବ୍ୟବସ୍ଥା ହୁଏ । ବେଶ୍ୟାମାନେ ମଧ୍ୟ ଏଥିରେ ଯୋଗ ଦେଇଥାନ୍ତି । ଏହିପରି ସଂସର୍ଗରେ ଆସି ଯୁବତୀ ଓ ଯୁବକମାନେ ଯୌନ ସମ୍ପର୍କୀୟ ବିଷୟରେ ଶିକ୍ଷା ପାଇବା ସଙ୍ଗେ ସଙ୍ଗେ ନାନାଦି ବିଷୟରେ ନିଜ ଜ୍ଞାନର ପରିସର ବୃଦ୍ଧି କରିଥାନ୍ତି । ଆଜିକାଲି ଚୀନ ଦେଶରେ ଏହି ପ୍ରଥା କାଳଚକ୍ରରେ ପଡ଼ି ନୀଚ ଦିଗକୁ ଗତି କଲାଣି । କିନ୍ତୁ ଜାପାନରେ ଏହା ପ୍ରାୟ ପୂର୍ବପରି ରହିଛି ।

ଅନେକ ସମୟରେ ଶ୍ରେଷ୍ଠ ଶ୍ରେଷ୍ଠ ବାଳିକାମାନେ ବେଶ୍ୟାଘରେ ରହି ଶିକ୍ଷାଲାଭ କରିଥାନ୍ତି । ଛ ବା ସାତ ବର୍ଷ ବୟସର ଝିଅମାନେ ବୟସ୍କାମାନଙ୍କର ପରିଚାରିକା ସ୍ୱରୂପ କାର୍ଯ୍ୟ କରନ୍ତି । ଦଶ ବା ଏଗାର ବର୍ଷ ବୟସର ହେଲେ ସେମାନଙ୍କୁ ପଢ଼ିବା, ଲେଖିବା, ନାଚିବା, ଗାଇବା ପ୍ରଭୃତି ଶିକ୍ଷା ଦିଆଯାଏ । ତେରଠାରୁ ପନ୍ଦର ବର୍ଷ ବୟସ ପର୍ଯ୍ୟନ୍ତ ସେମାନଙ୍କୁ ଯୌନଶିକ୍ଷା ଦିଆଯାଏ ।

ଜାପାନୀ ମହିଳାମାନେ ଯୌନକ୍ରିୟାରେ ସାଧାରଣତଃ ସକ୍ରିୟ ଅଂଶ ଗ୍ରହଣ କରନ୍ତି ନାହିଁ । ଗରିବ ଲୋକମାନେ ସେମାନଙ୍କ ଶ୍ରେଷ୍ଠ ଝିଅକୁ ବିକ୍ରି କରି ଦିଅନ୍ତି । ଏହି ଝିଅମାନଙ୍କୁ ବେଶଭୂଷା, ସାଜସଜ୍ଜା, ନୃତ୍ୟଭଙ୍ଗୀ, ଗୃହଚାଳନା, ସଙ୍ଗୀତ ପ୍ରଭୃତିରେ ଶିକ୍ଷା ଦିଆଯାଏ । ବଡ଼ ବଡ଼ ଭୋଜି ବା ଧନୀ ଲୋକଙ୍କ ଭୋଜିମାନଙ୍କରେ ଏହିପରି ଶିକ୍ଷା ପାଇଥିବା ଝିଅମାନଙ୍କୁ ଯୋଗଦେବା ପାଇଁ ବ୍ୟବସ୍ଥା କରାଯାଏ । ଏହି ଝିଅମାନେ ଅତିଥିମାନଙ୍କ ସହିତ ଆଳାପ କରି ସେମାନଙ୍କ ଚର୍ଚ୍ଚା କରିଥାନ୍ତି । ଏହି ଶ୍ରେଣୀର ବାଳିକା ବା ଯୁବତୀମାନଙ୍କ ନିକଟରେ ଯେ କୌଣସି ପୁରୁଷ ପ୍ରବେଶ କରିବା ସହଜ ନୁହେଁ । ଅନେକ ସମୟରେ ଏହି ରକମର ଯୁବତୀମାନଙ୍କୁ ଧନୀ ପରିବାରର ଯୁବକମାନେ ବିବାହ କରି ସୁଖରେ ଜୀବନ ଯାପନ କରିଥାନ୍ତି ।

ଜାପାନର ଝିଅମାନେ ବିବାହ ପୂର୍ବରୁ ଯୌନକ୍ଷେତ୍ରରେ ବିଶେଷ ସୁବିଧା ବା ସ୍ୱାଧୀନତା ପାଇ ନ ଥାନ୍ତି । ତଥାପି ଯୌନଶିକ୍ଷା ଓ ଯୌନ-

କ୍ରିୟା ସମ୍ପର୍କରେ ସେଠାରେ ନାନା ଚିତ୍ର ଦେଖିବାକୁ ମିଳେ । ବାଳିକା-ମାନେ ବିବାହ କଲାବେଳେ ସେମାନଙ୍କୁ ବାପାମା'ମାନେ ବିବାହବେଦିରେ ଯୌନଶିକ୍ଷା ସମ୍ବନ୍ଧରେ ଖଣ୍ଡିଏ ବହି ଉପହାର ଦେଇଥାନ୍ତି । ଏହି ବହିରେ ଯୌନତତ୍ତ୍ୱ ଏବଂ ନାନା ରକମର ସଂଯୋଗ ଚିତ୍ର (Poses) ଦ୍ୱାରା ଯୌନକ୍ରିୟା ଦର୍ଶାଇ ଦିଆଯାଇଥାଏ ।

ସାଧାରଣତଃ ମାଙ୍ଗୋଲିୟ ଓ ନିଗ୍ରୋ ଜାତିର ନାରୀମାନଙ୍କ ଜନନେନ୍ଦ୍ରିୟ ଅନ୍ୟାନ୍ୟ ଜାତିମାନଙ୍କ ଜନନେନ୍ଦ୍ରିୟ ଅପେକ୍ଷା ଅଳ୍ପ ତଳକୁ ରହେ । ସେଥିଯୋଗୁଁ ରତି ସମୟରେ ସ୍ତ୍ରୀ ଓ ପୁରୁଷ ମୁହାଁମୁହିଁ ରହିବା ଦ୍ୱାରା ଯୌନ-ସଂଯୋଗ ସ୍ଥାପନରେ ତେତେ ସୁବିଧା ରହେ ନାହିଁ । ସେହେତୁ ଏହି ବହିମାନଙ୍କରେ ସ୍ତ୍ରୀ ଚିତ୍ ହୋଇ ଶୋଇବା ଅବସ୍ଥାରେ ପୁରୁଷ ସମ୍ଭୋଗ କରିବା ଚିତ୍ର ବହୁଳଭାବେ ଦର୍ଶାଯାଏ ନାହିଁ । ଏହା ପରିବର୍ତ୍ତେ ପୁରୁଷ ଚିତ୍ ହୋଇ ଶୋଇବା ଅବସ୍ଥାରେ ସ୍ତ୍ରୀ ଉପରକୁ ଆସି ସଂଯୋଗ ସ୍ଥାପନ କରି ବସିବା ଚିତ୍ର ବହୁଳଭାବେ ଦର୍ଶାଯାଇଥାଏ ।

ନବବିବାହିତା ଯୁବତୀ ମଧୁଶଯ୍ୟା ରାତିରେ ଉପହାର ବହି ପଢ଼ି ନିଜର ଅବସ୍ଥା ବେଶ୍ ବୁଝିପାରେ ଓ ଉତ୍ତେଜିତ ଅବସ୍ଥାରେ ଥାଏ । ସେହେତୁ ନବଦମ୍ପତି ଏହି ବହିକୁ ଖୁବ ଯତ୍ନରେ ରଖି ନିଜର ପୁଅଝିଅ ବିବାହ କଲାବେଳେ ହସ୍ତାନ୍ତର କରିଥାନ୍ତି । ଏହିପରି ବହିଗୁଡ଼ିକର ଚିତ୍ର ବିଶିଷ୍ଟ ଚିତ୍ରକାରମାନଙ୍କ ଦ୍ୱାରା ଅଙ୍କା ଯାଇଥାଏ । ସେହେତୁ ବହିଗୁଡ଼ିକ ଖୁବ ମୂଲ୍ୟବାନ୍ । ବିବାହ ପରେ ନବଦମ୍ପତି ନିଜକୁ ଗୃହକାର୍ଯ୍ୟରେ ନିୟୋଜିତ କରିଥାନ୍ତି ।

ଜାପାନର ମହିଳାମାନେ ଶିକ୍ଷିତା, ପରିଷ୍କାର ପରିଚ୍ଛନ୍ନ ଓ ସୁନିପୁଣ ଘରଣୀ ଭାବେ ପୃଥିବୀରେ ପରିଚିତ । ଅନେକ ସମୟରେ ଜାପାନୀ ଘରର ଝିଅମାନେ ବିବାହ କରିବା ଉଦ୍ଦେଶ୍ୟରେ କଳକାରଖାନାମାନଙ୍କରେ କାମ କରି ରୋଜଗାର କରିବା ପାଇଁ ଘର ଛାଡ଼ି ଚାଲିଯାନ୍ତି ଓ ରୋଜଗାର କରିସାରିବା ପରେ ଘରକୁ ଫେରି ବିବାହ କରିଥାନ୍ତି । ଜାପାନରେ ଛାଡ଼ପତ୍ର ପ୍ରଥା ଅତି ସହଜ ସେହେତୁ ପରିବାରରେ ଅଶାନ୍ତି ରହିବା କମ୍ ଦେଖାଯାଏ । ଭାରତୀୟମାନଙ୍କ ପରି ସେମାନେ ମଧ୍ୟ ଯୁବକ ଓ ଯୁବତୀ ମଧ୍ୟରେ ମାନସିକ ପ୍ରେମକୁ ସ୍ଥାନ ଦିଅନ୍ତି ନାହିଁ ।

ଚୀନର ନାରୀମାନେ ନିଜର କାମ ଉତ୍ତେଜନାକୁ ବୃଦ୍ଧି କରିବା ନିମନ୍ତେ ଅଫିମଧୂଆଁ ଖାଆନ୍ତି । ଅଫିମଧୂଆଁ ଖାଇବା ଫଳରେ ପ୍ରଥମେ ଶରୀରରେ ଏପରି ଭାବେ ଉତ୍ତେଜନା ଆସେ ଯେ ଯୌନକ୍ଷୁଧା ମେଣ୍ଟାଇବା ସହଜ ହୁଏ ନାହିଁ । କିନ୍ତୁ ବାରମ୍ବାର ବା ନିତ୍ୟ ବ୍ୟବହାର ଯୋଗୁ ଉତ୍ତେଜନା ପରିବର୍ତ୍ତେ ଯୌନ ପ୍ରବୃତ୍ତିର ଶଳୟ ଘଟିଥାଏ ।

**ମଧ୍ୟପ୍ରାଚ୍ୟ**—ପୂର୍ବେ ମଧ୍ୟପ୍ରାଚ୍ୟ ଦେଶମାନଙ୍କର ବାସିନ୍ଦାମାନେ (ଇସ୍‌ଲାମ୍ ଧର୍ମର ପ୍ରଚାରକ ମହମ୍ମଦଙ୍କ ଜନ୍ମପୂର୍ବରୁ) ବିଭିନ୍ନ ଦଳରେ ବିଭକ୍ତ ହୋଇ ରହୁଥିଲେ । ଏହି ଦଳମାନଙ୍କ ମଧ୍ୟରେ ଅନେକ ସମୟରେ ସଂଘର୍ଷ ହେଉଥିଲା । ଦଳଗତ ସଂଘର୍ଷ ଯୋଗୁଁ ଦଳମାନଙ୍କରେ ପୁରୁଷସଂଖ୍ୟା ବିଶେଷଭାବେ ହ୍ରାସ ପାଉଥିଲା । ଏହି କାରଣରୁ ଦଳରେ ପୁରୁଷମାନଙ୍କ ଅପେକ୍ଷା ନାରୀମାନଙ୍କ ସଂଖ୍ୟା ଅଧିକ ହୋଇ ଯାଉଥିଲା । ଦଳରେ ପୁରୁଷଙ୍କ ସଂଖ୍ୟା ବୃଦ୍ଧି କରିବା ଉଦ୍ଦେଶ୍ୟରେ ପ୍ରତ୍ୟେକ ପୁରୁଷ ଏକାଧିକ ନାରୀ ବିବାହ କରିବା ପ୍ରଥା ପ୍ରଚଳିତ ହେଲା । ଏହା ଫଳରେ ପ୍ରତ୍ୟେକ ନାରୀ ଯୌନତୃପ୍ତି ପାଇବାର ସୁବିଧା ହେଲା । ଅନେକ ସମୟରେ ଗୋଟିଏ ପୁରୁଷ ଗୋଟିଏ ସ୍ତ୍ରୀ ସହିତ ପ୍ରେମାସକ୍ତ ହୋଇ ଅନ୍ୟ ବିବାହିତା ସ୍ତ୍ରୀମାନଙ୍କ ପ୍ରତି ଅବହେଳା କରିବା ଲକ୍ଷ୍ୟ କରାଗଲା । ତେଣୁ ପୁରୁଷର ଏହି ମାନସିକ ଧାରଣାକୁ ରୋକିଦେବା ନିମନ୍ତେ ଗର୍ଭବତୀ ନାରୀମାନଙ୍କ ସହିତ ଯୌନକ୍ରିୟା ନିଷେଧ ବୋଲି ଧର୍ମଗତ ନିୟମ ପ୍ରୟୋଗ କରାଗଲା । ଏହା ପ୍ରଥାଦ୍ୱାରା ଜଣେ ପୁରୁଷର ଅନ୍ୟାନ୍ୟ ବିବାହିତା ସ୍ତ୍ରୀମାନେ ଯୌନ-ତୃପ୍ତିର ମଧ୍ୟ ସୁବିଧା ପାଇଲେ ।

ଏସିଆ ମହାଦେଶର ମଧ୍ୟ-ପ୍ରାଚ୍ୟରେ ମୁସଲମାନ୍ ଧର୍ମ ପ୍ରଚଳିତ । ଏଠାର ବାଳିକାମାନେ ପିଲାଦିନୁ ଘର ଭିତରେ ଆବଦ୍ଧ । ସେହେତୁ ନିଜ ଘରର ପୁରୁଷମାନଙ୍କୁ ବାଦ୍ ଦେଲେ ସେମାନେ ଅନ୍ୟ ପୁରୁଷର ସଂସ୍ପର୍ଶରେ ଆସନ୍ତି ନାହିଁ । କେତେକ କ୍ଷେତ୍ରରେ ଝିଅମାନେ ନିଜ ମା’ଠାରୁ କମ୍ବା ସାଇପଡ଼ିଶାର ସ୍ତ୍ରୀମାନଙ୍କ ଠାରୁ ନାଚଗୀତ ପ୍ରଭୃତି ଶିକ୍ଷା ପାଇଥାନ୍ତି । ଝିଅମାନେ ଘରେ ପରଦା ଆଢ଼ୁଆଳରେ ରହନ୍ତି ଓ ପଦାକୁ ବାହାରିଲେ ବୁର୍ଖା ପିନ୍ଧି ବାହାରନ୍ତି । ସେହେତୁ ଅନ୍ୟ ପୁରୁଷମାନେ ସେମାନଙ୍କ ସୌନ୍ଦର୍ଯ୍ୟ ଦେଖିବାର ସୁବିଧା ପାଆନ୍ତି ନାହିଁ । ଏପରି କି ସ୍ୱାମୀ ନିଜର

ବିବାହିତା ପତ୍ନୀର ମୁହଁ ବିବାହକର୍ମ ଶେଷ ପରେ ମଧୁଶଯ୍ୟା ରାତିରେ ପ୍ରଥମ ଥର ପାଇଁ ଦେଖିଥାଏ । ତେଣୁ ଯୁବକମାନେ ପତ୍ନୀ ଠିକ୍ କରିବା ପାଇଁ ବାପାମା'ମାନଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭର କରନ୍ତି ।

ଯୁବତୀମାନେ ପର୍ଦ୍ଦା ଆଢ଼ୁଆଳରେ ବା ବୁର୍ଖା ଭିତରେ ରହିବା ଯୋଗୁ ସେମାନେ ବାହ୍ୟ ଜଗତ ଦ୍ୱାରା ବିଶେଷ ପ୍ରଭାବିତ ହୋଇ ନ ଥାନ୍ତି । ସେମାନଙ୍କର ଜୀବନର ଆଶା ସୀମିତ ହୋଇ ରହେ । ସେମାନେ ଜାଣନ୍ତି ଯେ ଜୀବନସାରା ସେମାନଙ୍କୁ ଅନ୍ୟ ଉପରେ ସମ୍ପୂର୍ଣ୍ଣ ନିର୍ଭର କରିବାକୁ ହେବ । ଜୀବନରେ ସ୍ୱାଧୀନ ଭାବେ କୌଣସି ପନ୍ଥା ସ୍ଥିର କରିବା ଅଧିକାର ସେମାନଙ୍କର ନାହିଁ । ସେହେତୁ ବିବାହ ପରେ ମଧୁଶଯ୍ୟାରେ ଜଣେ ସମ୍ପୂର୍ଣ୍ଣ ନୂତନ ବ୍ୟକ୍ତିକୁ ସ୍ୱାମୀରୂପେ ଦେଖିବା ଦ୍ୱାରା ସେମାନଙ୍କର ସେପରି କିଛି ମାନସିକ ଦ୍ୱନ୍ଦ୍ୱ ଆସେ ନାହିଁ ।

କିନ୍ତୁ ଯୁଗର ପରିବର୍ତ୍ତନ ସଙ୍ଗେ ସଙ୍ଗେ ମୁସଲମାନ୍ ସମାଜରେ ମଧ୍ୟ ପରିବର୍ତ୍ତନ ଆସିଲାଣି । ମୁସଲମାନ୍ ଯୁବତୀମାନେ ଅନେକ ଦେଶରେ ପର୍ଦ୍ଦା ଓ ବୁର୍ଖା ଛାଡ଼ି ପଦାକୁ ବାହାରିଲେଣି । ତେଣୁ ସେମାନଙ୍କ ଜୀବନଧାରା ମଧ୍ୟ ବଦଳିବାକୁ ଆରମ୍ଭ କଲାଣି ।

**ୟୁହୁଦୀ**—ୟୁହୁଦୀମାନେ କୌଣସି ସ୍ଥାନରେ ଏକାଠି ନ ରହି ପୃଥିବୀର ବିଭିନ୍ନ ଦେଶମାନଙ୍କରେ ବିଚ୍ଛିନ୍ନ ହୋଇ ରହିଥିଲେ । ତେଣୁ ବଂଶ ଓ ଜାତୀୟତା ରକ୍ଷା କରିବା ସକାଶେ ସେମାନଙ୍କର ସାମାଜିକ ନିୟମଗୁଡ଼ିକ ଅତି କଠୋର । ଦୈନନ୍ଦିନ କର୍ମଠାରୁ ଆରମ୍ଭ କରି ଯୌନ ଧର୍ମ ଓ ମଧୁଶଯ୍ୟା ପର୍ଯ୍ୟନ୍ତ ନିୟମଗୁଡ଼ିକ ଠିକ୍‌ଠାକ୍ ଭାବେ ସେମାନଙ୍କ ଧର୍ମଗ୍ରନ୍ଥରେ ଲିପିବଦ୍ଧ ହୋଇଛି ।

ସେମାନଙ୍କ ଧର୍ମଗ୍ରନ୍ଥ ଅନୁଯାୟୀ ବିନା କାରଣରେ ଶୁକ୍ର ନଷ୍ଟ କରିବା ମହାପାପ । କେବଳ ବଂଶବୃଦ୍ଧି କରିବା ନିମନ୍ତେ ଶୁକ୍ରକ୍ଷୟ କରାଯାଇ ପାରେ । ସେମାନଙ୍କ ଧର୍ମଗ୍ରନ୍ଥ କହେ ଯେ ସ୍ୱପ୍ନଦୋଷରୁ ମଧ୍ୟ ଶୁକ୍ରକ୍ଷୟ ହେଲେ ସ୍ନାନ କରି ଜପ କରିବା ଉଚିତ । ରାତିବେଳା ବହୁତ ଖାଇବା ଓ ପିଇବା ଧର୍ମର ବିରୋଧୀ । ୟୁହୁଦୀ ଲୋକମାନେ ସେମାନଙ୍କର ପୁଅଝିଅମାନଙ୍କୁ ଯୌବନାବସ୍ଥାରେ ପଦାର୍ପଣ କରିବା ପୂର୍ବରୁ ବିବାହ କରାଇ ଦିଅନ୍ତି । ସାଧାରଣତଃ ବାଳକବାଳିକାମାନେ ତେର ବା ଚଉଦ

ବର୍ଷ ବୟସରେ ବିବାହ କରିଥାନ୍ତି । ଅଠର ବର୍ଷ ବୟସରେ ବିବାହ କରିବା କମ୍ ଦେଖାଯାଏ । ୟୁହୁଦୀ ବାଳକମାନେ କମ୍ ବୟସରେ ବିବାହ କଲେ ମଧ୍ୟ ସେମାନଙ୍କୁ ଉପଯୁକ୍ତ ଶିକ୍ଷକ ନିକଟରେ ଧର୍ମଗ୍ରନ୍ଥରୁ ଶିକ୍ଷା ଦିଆଯାଏ । ଏଥିରେ ରତିକ୍ରିୟା ଠାରୁ ଧର୍ମ ଶିକ୍ଷା ପର୍ଯ୍ୟନ୍ତ ରହେ ।

ଧର୍ମପ୍ରଚାର ଓ ପ୍ରଭାବ ଫଳରେ ସେମାନଙ୍କ ଠାରେ ଯୌନ ଉତ୍ତେଜନା ବିଶେଷ ଭାବେ ରହେ ନାହିଁ । ଏପରି କି ରତି ସମୟରେ ଚୁମ୍ବନ ଦେବା ମଧ୍ୟ ସେମାନଙ୍କ ଧର୍ମଗ୍ରନ୍ଥ ମନାକରେ । ସ୍ୱାମୀ ଓ ସ୍ତ୍ରୀ ଉଭୟେ ଅନ୍ୟ ସମୟରେ ଗୋଟିଏ କମ୍ବଳ ବା ଚଦର ଭିତରେ ଶୁଅନ୍ତି ନାହିଁ । ସେମାନଙ୍କ ଧର୍ମଗ୍ରନ୍ଥରେ ଥିବା କେତୋଟି ନିୟମ ନିମ୍ନରେ ଦିଆଗଲା :—

(କ) ସ୍ତ୍ରୀର ମାସିକ ଋତୁ ଆରମ୍ଭ ହେବାର ପୂର୍ବ ଚାରିଦିନ, ଋତୁ ସମୟ ଚାରିଦିନ ଓ ତାର ପର ଆଠଦିନ ଏହିପରି ମାସରେ ଷୋହଳ ଦିନ ସ୍ତ୍ରୀସଙ୍ଗମ କରିବା ନିଷେଧ । ଏହି ସମୟକୁ ବାଦ୍ ଦେଲେ ସ୍ତ୍ରୀର ମାସିକ ଋତୁଚକ୍ରରେ କେବଳ ବାର ଦିନ ମାତ୍ର ସମ୍ଭୋଗ କରିବାର ସୁବିଧା ରହେ । ଆଜିକାଲିର ବୈଜ୍ଞାନିକ ଗବେଷଣାରୁ ଜଣାଯାଇଛି ଯେ ଏହି ବାର ଦିନ ଭିତରେ ହିଁ ନାରୀ ସାଧାରଣତଃ ଗର୍ଭଧାରଣ ନିମନ୍ତେ ଉପଯୁକ୍ତ ରହେ ।

(ଖ) ପ୍ରତ୍ୟେକ ୟୁହୁଦୀ ଶୁକ୍ରବାର ଦିନ ସନ୍ଧ୍ୟାରେ ଥଣ୍ଡାପାଣିରେ ସ୍ନାନ କରି ରାତିରେ ସ୍ତ୍ରୀ ସହିତ ସଙ୍ଗମ କରିବା ଉଚିତ । ଆଧୁନିକ ଗବେଷଣାରୁ ଜଣାଯାଇଛି ଯେ ଶରୀରର ଉତ୍ତାପ ବୃଦ୍ଧି ପାଇଲେ ଶୁକ୍ରକୀଟ ନଷ୍ଟ ହୋଇଯାନ୍ତି । ଅଣ୍ଡକୋଷ ଶରୀର ବାହାରେ ରହେ । ଗରମପାଣିରେ ଗାଧୋଇବା ଦ୍ୱାରା ଶରୀରର ଉତ୍ତାପ ବୃଦ୍ଧି ହୁଏ । ତଦ୍ଦ୍ୱାରା ଶୁକ୍ରକୋଷ ଆଘାତ ପାଏ ।

ବିବାହବେଦିରେ ସ୍ୱାମୀ ସ୍ତ୍ରୀକୁ ଗୋଟିଏ ଚୁକ୍ତିପତ୍ର ଦିଏ । ଏଥିରେ ସ୍ୱାମୀ ତାର ବିବାହିତା ସ୍ତ୍ରୀକୁ ବରାବର କମ୍ପା ସପ୍ତାହକେ ଥରେ ସମ୍ଭୋଗସୁଖ ଦେବାପାଇଁ ସ୍ୱୀକାର କରେ । ଏହି ଦିନଟି ସାଧାରଣତଃ ସପ୍ତାହର ଶୁକ୍ରବାର ବୋଲି ଧରାଯାଏ । ସ୍ୱାସ୍ଥ୍ୟହାନି ଯୋଗୁ କମ୍ପା ସ୍ତ୍ରୀର ମାସିକଋତୁ ଯୋଗୁ ସମ୍ଭୋଗରେ ବ୍ୟତିକ୍ରମ ଘଟିଲେ ସେଥିରେ ଆପତ୍ତି ରହେ ନାହିଁ ।

ମୁସଲମାନମାନଙ୍କ ପୁରୋହିତମାନଙ୍କୁ 'ଶବ' କହନ୍ତି । ମୁସଲମାନ ପୁରୁଷ ଓ ମହିଳା ଉଭୟେ ଧର୍ମବିଷୟ ଠାରୁ ଆରମ୍ଭ କରି ନିଜ ନିଜର ଯୌନ-ସମ୍ପର୍କୀୟ ବିଷୟମାନଙ୍କରେ ଏହି ପୁରୋହିତମାନଙ୍କ ଠାରୁ ପରାମର୍ଶ ନିଅନ୍ତି । ତେଣୁ ଏହି ପୁରୋହିତମାନେ ନିଜ ସ୍ତ୍ରୀ ବ୍ୟତୀତ ଅନ୍ୟ ସ୍ତ୍ରୀ ସହିତ ନିରୋଳାରେ ରହନ୍ତି ନାହିଁ । କୌଣସି ନାରୀ ପରାମର୍ଶ ନିମନ୍ତେ ଆସିଲେ ନିଜର ସ୍ତ୍ରୀକୁ ପାଖରେ ବସାଇ ନତୁବା ଅନ୍ୟ କୌଣସି ପୁରୁଷବ୍ୟକ୍ତିର ଦୃଷ୍ଟିସୀମାରେ ରହି କଥାବାର୍ତ୍ତା କରିଥାନ୍ତି ।

**ଭାରତୀୟ**—ଭାରତରେ ହିନ୍ଦୁମାନଙ୍କ ଯୌନଶିକ୍ଷା ଧର୍ମ ସହିତ ଜଡ଼ିତ । ଏହି କାରଣରୁ ଓଡ଼ିଶାର ମନ୍ଦିରମାନଙ୍କରେ ଅନେକ ପ୍ରକାରର ରତିଚିତ୍ର ଦେଖିବାକୁ ମିଳେ । ଏହି ମନ୍ଦିରମାନଙ୍କରେ ଦେବତା ଦର୍ଶନ ନିମନ୍ତେ ଅନେକ ଯାତ୍ରୀ ଦୂର ବିଦେଶରୁ ମଧ୍ୟ ଆସିଥାନ୍ତି । ବୋଧହୁଏ ଏହା ଉଚିତ ଶିକ୍ଷାକ୍ଷେତ୍ର ଭାବି ମନ୍ଦିରମାନଙ୍କରେ ଏହି ଚିତ୍ର ଦିଆଯାଇଛି ।

ପାଶ୍ଚାତ୍ୟ ଯୌନବିତ୍‌ମାନେ ହିନ୍ଦୁମାନଙ୍କ କାମସୂତ୍ରର ଲେଖକ ବାତ୍ସାୟନଙ୍କୁ ଆଧୁନିକ ଯୁଗର ଯେକୌଣସି ଯୌନବିତ୍ ଠାରୁ ଉଚ୍ଚ ସ୍ଥାନ ଦେଇଥାନ୍ତି । ଏଥିରେ ପୁରୁଷ ଅପେକ୍ଷା ନାରୀମାନଙ୍କ ଯୌନତୃପ୍ତି ପାଇବା ଦିଗରେ ବହୁ ବିଷୟ ଉଲ୍ଲେଖ କରାଯାଇଛି । ନାରୀର ତୃପ୍ତି ଓ ସେଥିନିମନ୍ତେ ରତିସମୟର ଆସନ ପ୍ରଭୃତିରେ ଅନ୍ୟାନ୍ୟ ଦେଶମାନଙ୍କ ଯୌନଶିକ୍ଷା ପଦ୍ଧତି ଠାରୁ ପାର୍ଥକ୍ୟ ଦେଖାଯାଏ । ଯୁବକ ଓ ଯୁବତୀମାନଙ୍କ ମଧ୍ୟରେ ମାନସିକ ପ୍ରେମକୁ ଭାରତୀୟ ସଂସ୍କୃତି ଗ୍ରହଣ କରେ ନାହିଁ । ଏହା କେବଳ ପ୍ରେମର ପ୍ରଥମ ସୋପାନ ବୋଲି ଭାରତୀୟମାନେ ଭାବନ୍ତି ।

ନାରୀମାନଙ୍କ ଯୌନତୃପ୍ତି ନିମନ୍ତେ ହିନ୍ଦୁମାନଙ୍କ କାମଶାସ୍ତ୍ରରେ ରତିକ୍ରିୟା ପୂର୍ବରୁ ପ୍ରେମକ୍ରୀଡ଼ା ଉପରେ ବିଶେଷ ଧ୍ୟାନ ଦିଆଯାଇଛି । ନାରୀମାନଙ୍କ କେଉଁ ଅଙ୍ଗ ସ୍ପର୍ଶ କଲେ ବା ମର୍ଦ୍ଦନ କଲେ ସେମାନଙ୍କର ଉତ୍ତେଜନା ବୃଦ୍ଧି ପାଏ ତାହା ମଧ୍ୟ ବର୍ଣ୍ଣନା କରାଯାଇଛି ଯାହା କି ଆଜିର ଯୌନବିତ୍ ଓ ଡାକ୍ତରମାନେ ଗ୍ରହଣ କରନ୍ତି ।

ଦୈନନ୍ଦିନ ପଞ୍ଜିକାରେ କେଉଁ ଦିନ ସ୍ତ୍ରୀ-ସହବାସ ନିଷେଧ ତାହା ମଧ୍ୟ ଲେଖାଯାଏ । ହିନ୍ଦୁମାନଙ୍କ ମତରେ, ରଜସ୍ୱଳା ନାରୀର ଅଠର ଦିନ

ମଧ୍ୟରେ ପୁଣି ମାସିକ ଧର୍ମ ଆରମ୍ଭ ହେଲେ, ସେ ଅଶୌଚ ନୁହେ । ଊଣେଇଶ ଦିନ ମଧ୍ୟରେ ପୁଣି ମାସିକ ସ୍ରାବ ଆରମ୍ଭ ହେଲେ ତାହାର ଏକ ଦିନ ଅଶୌଚ । କୋଡ଼ିଏ ଦିନ ମଧ୍ୟରେ ହେଲେ ତାହାର ଦୁଇ ଦିନ ପାଳିବା ଦରକାର । କୋଡ଼ିଏ ଦିନ ପରେ ମାସିକ ସ୍ରାବ ଆରମ୍ଭ ହେଲେ ତିନିରାତ୍ର ଅଶୌଚ ହୁଏ । ସ୍ତ୍ରୀମାନଙ୍କ ଋତୁ ଷୋହଳ ଦିନ ପର୍ଯ୍ୟନ୍ତ ରହେ । ସେଥିରୁ ପ୍ରଥମ ଚାରି ରାତ୍ର ସ୍ତ୍ରୀକୁ ତ୍ୟାଗ କରିବ । ଅବଶିଷ୍ଟ ବାର ଦିନ ମଧ୍ୟରୁ ଅଷ୍ଟମୀ, ଚତୁର୍ଦ୍ଦଶୀ, ପୂର୍ଣ୍ଣିମା, ଅମାବାସ୍ୟା, ସଂକ୍ରାନ୍ତି, ମାସାନ୍ତ ଓ ଏକାଦଶୀ ଦିନମାନଙ୍କରେ ସ୍ତ୍ରୀ-ସମ୍ଭୋଗ କରିବା ନିଷେଧ । ବାକି ଦିନମାନଙ୍କରେ ସ୍ତ୍ରୀ-ସମ୍ଭୋଗ କରାଯାଇ ପାରେ ।

ଶରୀରର ସୌନ୍ଦର୍ଯ୍ୟବୃଦ୍ଧି କରିବା ସଙ୍ଗେ ସଙ୍ଗେ କାମୋତ୍ତେଜନା ବୃଦ୍ଧି କରିବା ନିମନ୍ତେ କାମଶାସ୍ତ୍ରରେ ନାନା ଉପଦେଶ ଦିଆଯାଇଛି । ନାରୀକୁ ସମ୍ପତ୍ତି କିମ୍ବା ବିଳାସର ସାମଗ୍ରୀ ପରି ମନେ କରାଯାଏ ନାହିଁ । ପୁରୁଷ ଓ ସ୍ତ୍ରୀର ବିବାହ ଚୁକ୍ତିପତ୍ର ଦ୍ୱାରା ଆବଦ୍ଧ ନୁହେ । ହିନ୍ଦୁ ପକ୍ଷେ ସ୍ତ୍ରୀ ଅର୍ଦ୍ଧାଙ୍ଗିନୀ । ଧର୍ମକାର୍ଯ୍ୟରେ ନାରୀର ସ୍ଥାନ ଉଚ୍ଚରେ ।

ଯୌନକ୍ରିୟାରେ ସୁବିଧା ଓ ସୁଖ ନିମନ୍ତେ ଉଭୟଙ୍କର ଯୌନଜ୍ଞାନ ରହିବା ଦରକାର । ଏହା ଗୋଟିଏ ଏପରି ବିଜ୍ଞାନ ଯାହା କି ଜ୍ଞାନ ନ ଥିଲେ ବ୍ୟବହାର କରିହୁଏ ନାହିଁ କିମ୍ବା ଅନୁଭୂତ ନ ଥିଲେ କହିହୁଏ ନାହିଁ । ସେହେତୁ ଶିକ୍ଷା କରିବା ପାଇଁ ଅନୁଭୂତିସମ୍ପନ୍ନ ମନୁଷ୍ୟଠାରୁ ଶିକ୍ଷା ପାଇବା ଆବଶ୍ୟକ । ଯୌନଜ୍ଞାନ ନ ଥିଲେ ବିବାହ ପରେ ନିଜର ଓ ସ୍ୱାମୀର ସୁଖ ନିମନ୍ତେ ନାରୀ ଉଚିତ ବ୍ୟବହାର କରିପାରିବ ନାହିଁ । ଯେପରି ବଣୁଆ ହାତୀ ବା ଘୋଡ଼ାକୁ ଶିକ୍ଷା ଦେବା କୌଶଳ ନ ଜାଣି ପୋଷା ମନେଇବା କଷ୍ଟସାଧ୍ୟ ସେହିପରି ଯୌନଜ୍ଞାନ ନ ଥାଇ ଯୌନତୃପ୍ତି ନିମନ୍ତେ ଯୌନକ୍ରିୟାରେ ଲିପ୍ତ ହେବା ଅସୁବିଧାଜନକ ।

ବାତ୍ସାୟନ କହିଛନ୍ତି ଯେ ନିମ୍ନଲିଖିତ ନାରୀମାନଙ୍କ ଠାରୁ କାମକଳା ଶିକ୍ଷା କରିବା ଦ୍ୱାରା ଯୁବତୀର ସାମାଜିକ ଶୀଳତାରେ ବାଧା ଆସେ ନାହିଁ—(କ) ନିଜ ଧାଈର ଝିଅ ଯେ କି ସମବୟସ୍କା ଓ ନିଜର ସାଥୀରୂପେ ବଢ଼ିଥାଏ । (ଖ) ବିବାହିତା ନାରୀସଙ୍ଗୀ ଯାହାକୁ ପ୍ରତ୍ୟେକ ବିଷୟରେ ବିଶ୍ୱାସ କରାଯାଇ ପାରେ । (ଗ) ସମବୟସର ବିବାହିତା ନିଜ ମା'ର

ଭଉଣୀ । (ଢ) ନିଜର ବିବାହିତା ବଡ଼ ଭଉଣୀ ଯାହା ତା ସହିତ ଏହିପରି ବିଷୟରେ କଥାବାର୍ତ୍ତା କରାଯାଇ ପାରେ । (ଙ) ବୃଦ୍ଧା ଗୃହକର୍ତ୍ତ୍ରୀ ଯାହାକୁ ମା'ର ଭଉଣୀ ସ୍ୱରୂପ ବ୍ୟବହାର କରାଯାଇ ପାରେ । (ଚ) ପରିଚିତା ଭିକାରୁଣୀ । କିନ୍ତୁ ଏମାନେ ବିବାହ କରି ପୁରୁଷ ସଙ୍ଗ ପାଇଥିବା ଆବଶ୍ୟକ; ନଚେତ୍ ସେମାନେ ବାସ୍ତବ ଜ୍ଞାନ ଦେଇ ପାରିବେ ନାହିଁ ।

ସ୍ୱାସ୍ଥ୍ୟ ଓ ସୁସ୍ଥ ସମାଜ ଦୃଷ୍ଟିରୁ ନିମ୍ନଲିଖିତ ନାରୀମାନଙ୍କ ସହିତ ଯୌନସମ୍ବନ୍ଧ ରଖିବା ଆଦୌ ଉଚିତ ନୁହେଁ ବୋଲି ଦର୍ଶାଯାଇଛି ।

(୧) କୁଷ୍ଠରୋଗୀ, (୨) ପାଗଳୀ, (୩) ଯେଉଁ ନାରୀମାନେ ଗୁପ୍ତ ରଖି ପାରନ୍ତି ନାହିଁ, (୪) ଯେଉଁ ନାରୀମାନେ ରାସ୍ତାଘାଟରେ ଯୌନ-ସୁଖ ଯାଚିଥାନ୍ତି, (୫) ପ୍ରୌଢ଼ା, (୬) କଳା ମଚମଚ ଶରୀରବର୍ଣ୍ଣ ଥିବା ନାରୀ, (୭) ଭାଇ, ଭଉଣୀ, ପୁଅ, ଝିଅମାନଙ୍କ ବିବାହ ସମ୍ପର୍କୀୟ ବା ନିକଟସମ୍ପର୍କୀୟ, (୮) ସାଙ୍ଗସାଥୀର ସ୍ତ୍ରୀ, (୯) ସନ୍ନ୍ୟାସିନୀ, (୧୦) ବନ୍ଧୁବାନ୍ଧବ, ଶିକ୍ଷକ ଓ ଗୁରୁମାନଙ୍କ ସ୍ତ୍ରୀ ବା ଗୁର୍ବୀ, (୧୧) ନିଜ ସ୍ତ୍ରୀର ସାଙ୍ଗସାଥୀ, (୧୨) ଯେଉଁ ନାରୀର ଶରୀରରୁ ଦୁର୍ଗନ୍ଧ ବାହାରେ, (୧୩) ରାଜା ବା ବଡ଼ଲୋକ ବା ଉଚ୍ଚଶିକ୍ଷିତ ବା ଧାର୍ମିକ ବା ଶିକ୍ଷିତ ବ୍ରାହ୍ମଣର ସ୍ତ୍ରୀ । ଉପର୍ଯ୍ୟୁକ୍ତ ଶ୍ରେଣୀୟ ନାରୀମାନଙ୍କ ସହିତ ଯୌନସମ୍ପର୍କ ରଖିବା ଦ୍ୱାରା ବାତାବରଣ ଦୂଷିତ ହୋଇ ସମାଜକୁ ନଷ୍ଟ କରେ ।

**ପାଶ୍ଚାତ୍ୟ ସମାଜ**— ପୂର୍ବେ ପାଶ୍ଚାତ୍ୟ ଦେଶମାନଙ୍କରେ ଯୌନ ସମ୍ପର୍କ ଓ ପ୍ରେମ ମଧ୍ୟରେ ସେପରି କିଛି ପାର୍ଥକ୍ୟ ନ ଥିଲା । ଭାରତରେ ସ୍ତ୍ରୀର ଶୀଳତା, ଲଜ୍ଜା ଓ ସତୀତ୍ୱ ଉପରେ ବିଶେଷଭାବେ ଜୋର ଦିଆଯାଉଥିବା ବେଳେ ପାଶ୍ଚାତ୍ୟ ସମାଜମାନଙ୍କରେ ଏ ସବୁର ସ୍ଥାନ ନ ଥିଲା । ଗ୍ରୀସ୍ ସଭ୍ୟତା ୟୁରୋପୀୟ ଦେଶମାନଙ୍କରେ ବିଶେଷଭାବେ ପ୍ରଭାବ ବିସ୍ତାର କରିଥିଲା । ଗ୍ରୀସ୍‌ରେ ଯେତେବେଳେ ମହିଳାମାନେ ଘରର ଗୃହକୋଣ ଛାଡ଼ି ବାହାରକୁ ଯାଉ ନ ଥିଲେ କିମ୍ବା ବାହ୍ୟ ଜଗତର ସଂସ୍ପର୍ଶରେ ଆସୁ ନ ଥିଲେ । ଖ୍ରୀଷ୍ଟଧର୍ମର ପ୍ରଚାର ଓ ପ୍ରସାର ପରେ ରୋମ୍‌ର ପୁରୁଷ ଓ ସ୍ତ୍ରୀମାନେ ଏକାଠି ଲଙ୍ଗଳା ହୋଇ ଗାଧୋଉଥିବା ଜଣାଯାଏ । ବେଶ୍ୟା ପ୍ରଥାକୁ ଘୃଣାଚକ୍ଷୁରେ ଦେଖାଯାଉ ନ ଥିଲା । ବେଶ୍ୟାମାନଙ୍କ ଠାରୁ ଗୀର୍ଜାର

ଧର୍ମଯାଜକମାନେ ଟିକସ ଆଦାୟ କରୁଥିଲେ ଓ ବେଶ୍ୟାଞ୍ଚଳଗୁଡ଼ିକ ଗୁପ୍ତ ଭାବରେ ଦିଆଯାଉଥିଲା ।

ଖ୍ରୀଷ୍ଟଧର୍ମର ପ୍ରଚାରଫଳରେ ପତିତ୍ୱକୁ ବିଶିଷ୍ଟ ସ୍ଥାନ ଦିଆଗଲା । ବିବାହିତା ନାରୀର ଅନ୍ୟ ପୁରୁଷ ସହିତ ଯୌନ ସମ୍ପର୍କକୁ ପାପ ଓ ଦୋଷ ବୋଲି ଧରାଗଲା । ଏହି ସମୟରେ ମଧ୍ୟ ଗୀର୍ଜାର ଧର୍ମଯାଜକମାନେ ବେଶ୍ୟାମାନଙ୍କଠାରୁ ଟିକସ ଆଦାୟ କରୁଥିଲେ । ଏତିକିବେଳେ ମାର୍ଟିନ ଲୁଥର୍ ଖ୍ରୀଷ୍ଟଧର୍ମର ସଂସ୍କାର ବିଷୟ ଚିନ୍ତା କଲେ । ଏଥିପୂର୍ବେ ଧର୍ମ ପ୍ରଚାରକଗଣଙ୍କୁ ବିବାହ କରିବା ମନା ଥିଲା । କିନ୍ତୁ ଏହି ସଂସ୍କାରବଳରେ ଏହି ଶାଖାର ଧର୍ମପ୍ରଚାରକମାନଙ୍କୁ ବିବାହ କରିବା ପାଇଁ ସୁବିଧା ଦିଆଗଲା ଏବଂ ଲୋକମାନଙ୍କ ମଧ୍ୟରେ ଚିନ୍ତାଧାରାର ପରିବର୍ତ୍ତନ ଆସିଲା ।

ଯୁଗର ପରିବର୍ତ୍ତନରେ ପାଶ୍ଚାତ୍ୟ ଦେଶର ମହିଳାମାନେ ଅଧିକ ସ୍ୱାଧୀନତା ପାଇଲେ । ସେମାନେ ପୁରୁଷମାନଙ୍କ ସହିତ ଦୈନନ୍ଦିନ ଜୀବନ କ୍ଷେତ୍ରରେ ପ୍ରତିଯୋଗିତା କରିବା ଆରମ୍ଭ କଲେ । ସେମାନେ ଶିକ୍ଷିତ ହେବା ଯୋଗୁଁ ନିଜର ଭବିଷ୍ୟତ ଚିନ୍ତା କରି କୌଣସି ବିଷୟରେ ସ୍ୱାଧୀନଭାବେ ନିଷ୍ପତ୍ତି ନେବାକୁ ସମର୍ଥ ହେଲେ । ଊନବିଂଶ ଶତାବ୍ଦୀରେ ଜନ୍ମନିୟନ୍ତ୍ରଣ ପ୍ରଣାଳୀର ଆବିଷ୍କାର ୟୁରୋପୀୟ ମହିଳା ସମାଜରେ ବିପ୍ଳବ ସୃଷ୍ଟି କଲା । କେତେକ ମନୀଷୀ କହିଲେ ଯେ ଏହା ଫଳରେ ନାରୀମାନଙ୍କ ପକ୍ଷେ ଯୌନାଧିକାର ଦାବିର ପଥ ସୁଗମ ହେଲା ।

ଫ୍ରାନ୍‌ସରେ ଯୁବକମାନଙ୍କ ଯୌନଶିକ୍ଷା ପ୍ରାୟ ପନ୍ଦର ବା ଷୋହଳ ବର୍ଷରୁ ଆରମ୍ଭ ହୋଇଥାଏ । ସାଧାରଣତଃ ବଡ଼ ବ୍ୟବସାୟୀ, ଧନୀ ଓ ଲେଖକମାନେ ଗୋଟିଏ ଗୋଟିଏ ରକ୍ଷିତା ସ୍ତ୍ରୀ ରଖିଥାନ୍ତି । ସେଠାର ସମାଜ ମଧ୍ୟ ରକ୍ଷିତା ନାରୀ ରଖିବା ନିମନ୍ତେ ପ୍ରଶ୍ରୟ ଦେଇଥାଏ । କିନ୍ତୁ ୟୁରୋପର ଅନ୍ୟାନ୍ୟ ଦେଶମାନଙ୍କରେ ଏହି ସୁବିଧା ରହେ ନାହିଁ ।

ଫ୍ରାନ୍‌ସରେ ପ୍ରାୟ ପ୍ରତ୍ୟେକ ପୁରୁଷ ଅନ୍ତତଃ କମ୍‌ରେ ଜୀବନରେ ଥରେ ବେଶ୍ୟାଳୟକୁ ଯାଏ । ବେଶ୍ୟାଳୟକୁ ଯିବା ରୁଚିସମ୍ପନ୍ନ କାର୍ଯ୍ୟ ବୋଲି ସେଠା ସମାଜର ଲୋକେ ଭାବନ୍ତି । ଆଶ୍ଚର୍ଯ୍ୟର ବିଷୟ ଶିକ୍ଷିତ ଓ ଧନୀ ଶ୍ରେଣୀର ବିବାହିତା ନାରୀମାନେ ମଧ୍ୟ ସେ ସ୍ଥାନକୁ ଯାଇଥାନ୍ତି । ଅନେକ ବାଳିକା କେତେଦିନ ପର୍ଯ୍ୟନ୍ତ ବେଶ୍ୟା ଅଞ୍ଚଳରେ ରହି ପାଠ

ପଢ଼ାପଢ଼ି କରିବା ପରେ କୌଣସି ଧନୀ ଯୁବକ ବା ପୁ ରୁଷକୁ ବିବାହ କରି ସୁଖରେ ଜୀବନ ଯାପନ କରନ୍ତି । ଫ୍ରାନ୍ସରେ ଶିକ୍ଷିତ ମଧ୍ୟବିତ୍ତ ପରିବାରର ବାଳିକାମାନଙ୍କୁ ଛାଡ଼ିଦେଲେ ଅନ୍ୟାନ୍ୟ ବାଳିକାମାନେ କମ୍ ବୟସରେ ଯୌନ ଅନୁଭୂତି ପାଇଥାନ୍ତି । ଏପରି କି ସମବୟସ୍କ ବାଳକମାନଙ୍କ ପୂର୍ବରୁ ବାଳିକାମାନେ ଅନୁଭୂତି ପାଇଥାଆନ୍ତି । ତେଣୁ ବିବାହ ପରେ ଫ୍ରାନ୍ସର ନାରୀମାନେ ୟୁରୋପର ଅନ୍ୟାନ୍ୟ ଦେଶର ବିବାହିତା ନାରୀମାନଙ୍କ ଅପେକ୍ଷା କମ୍ ବ୍ୟଭିଚାର କରିଥାନ୍ତି ।

ଭିନ୍ନ ଭିନ୍ନ ୟୁରୋପୀୟ ଦେଶମାନଙ୍କର ମହିଳାମାନଙ୍କ ଠାରେ ବିଭିନ୍ନ ଲକ୍ଷଣ ଦେଖାଯାଏ । ଉଦାହରଣ ସ୍ୱରୂପ, ଯୌନକ୍ଷେତ୍ରରେ ଫ୍ରାନ୍ସ ଦେଶର ମହିଳାମାନେ ଉଦାର ହେବାବେଳେ ଇଂରେଜ ମହିଳାମାନେ ଗମ୍ଭୀର ହୋଇଥାନ୍ତି ।



ଓ୩—

## ଯୌନଶକ୍ତିର କ୍ରମବିକାଶ

ପ୍ରତ୍ୟେକ ମନୁଷ୍ୟଠାରେ ଯେପରି ଶରୀରରକ୍ଷା ନିମନ୍ତେ ଖାଇବା ପ୍ରବୃତ୍ତି ରହେ, ସେହିପରି ଜନ୍ମରୁହିଁ ବଂଶବୃଦ୍ଧି ନିମନ୍ତେ କାମ ପ୍ରବୃତ୍ତି ଥାଏ। ଶିଶୁ ଅବସ୍ଥାରେ ଶିଶୁର ମୂଳ ଲକ୍ଷ୍ୟ ହେଲା ଭୋକଶୋଷର ନିବାରଣ। ସେହେତୁ ଶିଶୁ ମାତୃସ୍ତନକୁ ପ୍ରଥମେ ଚାହେଁ, ଯାହା ସାହାଯ୍ୟରେ ସେ ଏହି ଦୁଇଟି ପ୍ରବୃତ୍ତି ପୂରଣ କରିଥାଏ। କ୍ରମେ କ୍ରମେ ଶିଶୁର ବୟସ ବୃଦ୍ଧି ହେବା ସଙ୍ଗେ ସଙ୍ଗେ ସେ କ୍ଷୀର ଦେଉଥିବା ନାରୀ ପ୍ରତି ଆକୃଷ୍ଟ ହୁଏ ବା ତାର ମନରେ ସ୍ନେହ ଜନ୍ମେ। ସେହେତୁ ଯେଉଁ ନାରୀ ଶିଶୁକୁ କ୍ଷୀର ଦିଏ, ଆଦର କରେ ଓ କାଖାଏ, ଶିଶୁ ତାହା ପ୍ରତି ଆକୃଷ୍ଟ ହୁଏ; ଭୟ ପାଇଲେ ଆଶ୍ରୟ ନିମନ୍ତେ ସେହି ନାରୀ ଆଡ଼େ ଦୌଡ଼େ। ସେ ମା'ହେଉ ବା ଧାଈ ହେଉ, ଶିଶୁ ସେଥିରେ ପାର୍ଥକ୍ୟ ଦେଖେ ନାହିଁ।

ବୟସର ବୃଦ୍ଧି ସଙ୍ଗେ ସଙ୍ଗେ ଶିଶୁର ମନରେ ଅନ୍ୟାନ୍ୟ ଭାବ ଆସେ। ଜନ୍ମବେଳେ କେବଳ ଯେଉଁ ଦୁଇଟି ପ୍ରବୃତ୍ତି, ଭୋକ ଓ ଶୋଷ ଥିଲା, ସେହି ପ୍ରବୃତ୍ତି ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ପ୍ରବୃତ୍ତି ମଧ୍ୟ ବଢ଼େ। ସେ ବାପା ଓ ମା ପ୍ରତି ବିଶେଷ ଆକୃଷ୍ଟ ହୁଏ। ବାପା ଓ ମା ଦୁହିଙ୍କ ମଧ୍ୟରୁ ଯେ ତାହାକୁ ବେଶି ଆଦର କରନ୍ତି, ତାହାଙ୍କ ପ୍ରତି ସେ ଅତ୍ୟଧିକ ଆକୃଷ୍ଟ ହୁଏ। ସାଧାରଣତଃ ମା'ମାନେ ଶିଶୁମାନଙ୍କୁ ବହୁତ ଆଦର କରିଥାନ୍ତି, ସେମାନଙ୍କର ଭୁଲ କାର୍ଯ୍ୟ ନିମନ୍ତେ ସହଜରେ କ୍ଷମା ଦେଇଥାନ୍ତି। କିନ୍ତୁ ବାପମାନେ କଠୋର ନୀତି ଅବଲମ୍ବନ କରନ୍ତି। ସେହେତୁ ଶିଶୁମାନେ ବାପାଙ୍କ ଅପେକ୍ଷା ମା'ଙ୍କ ପ୍ରତି ବେଶି ଆକୃଷ୍ଟ ହୋଇଥାନ୍ତି।

ଜନ୍ମଠାରୁ ପ୍ରଥମ ବର୍ଷ ବୟସ ମଧ୍ୟରେ ପୁଅ ଓ ଝିଅମାନଙ୍କଠାରେ ବିଶେଷ ପ୍ରଭେଦ ରହିବାର ଲକ୍ଷଣ ଜଣାପଡ଼େ ନାହିଁ। କେବଳ ପୁଅମାନଙ୍କ ଅପେକ୍ଷା ଝିଅମାନେ ସାଧାରଣତଃ ଶୀଘ୍ର କଥା କହିବା ଆରମ୍ଭ କରିଥାନ୍ତି। ଦ୍ୱିତୀୟ ବର୍ଷଠାରୁ ଚତୁର୍ଥ ବର୍ଷ ବୟସ ମଧ୍ୟରେ ସେପରି କିଛି ପ୍ରଭେଦ ରହିବା ଦେଖାଯାଏ ନାହିଁ। ତଥାପି ଯୌନବିତ୍ମାନେ କହନ୍ତି ଯେ ଏହି ବୟସରେ ମଧ୍ୟ ସାମାନ୍ୟ ପ୍ରଭେଦ ଲକ୍ଷ୍ୟ କରାଯାଇ ପାରେ।

ଚତୁର୍ଥ ବର୍ଷ ବୟସରେ ପଦାର୍ପଣ କଲାବେଳେ ସେମାନଙ୍କ ମଧ୍ୟରେ ସାମାନ୍ୟ ପ୍ରଭେଦ ଲକ୍ଷ୍ୟ କରାଯାଇପାରେ; କିନ୍ତୁ ଚତୁର୍ଥ ବର୍ଷ ବୟସ ପରେ ଏହି ପ୍ରଭେଦ ଭଲଭାବେ ଦୃଷ୍ଟିଗୋଚର ହୁଏ । କେତେକ କହନ୍ତି ଯେ ବାଳିକାମାନଙ୍କର ଶାରୀରିକ ଗଠନ ବାଳକମାନଙ୍କ ଅପେକ୍ଷା ଗୋଲାକୃତି ହୋଇ ଅଧିକ ସୁନ୍ଦର ହୁଏ ଓ ମୁହଁର ଗଠନରେ ପାର୍ଥକ୍ୟ ଆସେ । ଯଦି ଗୋଟିଏ ବାଳକ ଓ ଗୋଟିଏ ବାଳିକା ଏକ ରକମ ପୋଷାକ ପିନ୍ଧି ଖେଳୁଥାନ୍ତି, ସେମାନଙ୍କ ଚାଲିଚଳନ, ହାବଭାବ ଓ କଥା-ବାର୍ତ୍ତାରୁ କେଉଁଟି ବାଳକ ଓ କେଉଁଟି ବାଳିକା ସହଜରେ ବୁଝିହେବ ବୋଲି ଯୌନବିତ୍ତମାନେ କହନ୍ତି ।

ଷଷ୍ଠ ବା ସପ୍ତମ ବୟସଠାରୁ ନିତମ୍ବ ଚୌଡ଼ା ହେବା ଆରମ୍ଭ ହୁଏ । ଆଠବର୍ଷ ବୟସ ପରେ ଏହି ବୃଦ୍ଧି ଦ୍ରୁତଗତି କରେ ଓ ଶରୀରର ଅନ୍ୟାନ୍ୟ ଅଂଶ ପୂର୍ଣ୍ଣାଙ୍ଗପ୍ରାପ୍ତି ନିମନ୍ତେ ବୃଦ୍ଧିପାଏ । ଏହା ପରେ ଆରମ୍ଭ ହୁଏ ପ୍ରଥମ ରଜଃସ୍ରାବ ।

ପ୍ରତ୍ୟେକ ମନୁଷ୍ୟ ପକ୍ଷେ ବଂଶରକ୍ଷା ହେଉଛି ମୂଳନୀତି । ପ୍ରତ୍ୟେକ ମନୁଷ୍ୟଠାରେ ଯେପରି ଶରୀରରକ୍ଷା ନିମନ୍ତେ ଖାଇବା ପ୍ରବୃତ୍ତି ରହେ ସେହିପରି ଜନ୍ମରୁ ହିଁ ବଂଶବୃଦ୍ଧି ନିମନ୍ତେ କାମ ପ୍ରବୃତ୍ତି ରହେ । ଶୈଶବା-ବସ୍ଥାରେ ଏ ପ୍ରବୃତ୍ତି ପୂର୍ଣ୍ଣାଙ୍ଗପ୍ରାପ୍ତ ହୋଇ ନ ଥାଏ । ବୟସର ବୃଦ୍ଧି ସଙ୍ଗେ ଏହି ପ୍ରବୃତ୍ତି ମଧ୍ୟ ବର୍ଦ୍ଧିତ ହୁଏ । ଯେତେବେଳେ ମନୁଷ୍ୟ ଯୌବନାବସ୍ଥାରେ ପହଞ୍ଚି ପୂର୍ଣ୍ଣାଙ୍ଗ ହୁଏ ସେତେବେଳେ ଏହା ଯୌନ ପ୍ରବୃତ୍ତିରେ ପରିଣତ ହୁଏ ।

କେତେକ ଡାକ୍ତର କହନ୍ତି ଯେ ଛୁଆ ମା'କ୍ଷୀର ଖାଇବାବେଳେ ବା ସେଠାରେ ଆଙ୍ଗୁଠି ଚୁପିବାବେଳେ ତାର ମନରେ ଯେଉଁ ସନ୍ତୋଷ ଜନ୍ମେ, ତାହା ଏହି ପ୍ରବୃତ୍ତିର ଲକ୍ଷଣ । ଶିଶୁମାନଙ୍କ ଗୁହ୍ୟଦ୍ୱାର, ଲିଙ୍ଗ, ମୁଣ୍ଡ, ଜଙ୍ଘ, କାଖ ପ୍ରଭୃତିକୁ ସ୍ପର୍ଶ କରିବା ମାତ୍ରେ ସେମାନେ ଆନନ୍ଦ ଅନୁଭବ କରିଥାନ୍ତି । ଅଙ୍ଗୁଳି ଚୁପିବା ଦ୍ୱାରା ଶିଶୁମାନଙ୍କର କୌଣସି କ୍ଷତି ହୁଏ ନାହିଁ । ବୟସ ବୃଦ୍ଧି ହେଲେ ଏହି ଅଭ୍ୟାସ ଆପେ ଆପେ ଛାଡ଼ିଯିବା ସମ୍ଭାବନା । ଏହାକୁ କେବଳ ଗୋଟିଏ କୁ-ଅଭ୍ୟାସ ବୋଲି ଧରାଯାଇ ପାରେ । ଯେଉଁ ଶିଶୁଠାରେ ଏହି ଅଭ୍ୟାସ ଦେଖାଯାଏ ତାହାର ବାପାମା ସେଥିର ପ୍ରତିକାର କରିବା ଦରକାର ।

ମା'ମାନେ ଛୁଆମାନଙ୍କୁ ସର୍ବଦା କୋଳରେ ଧରି ଶୋଇବା ଉଚିତ ନୁହେଁ । ଶିଶୁମାନେ ମା'କୋଳରେ ଶୋଇବା ଦ୍ୱାରା ବା ମା'ଠାରୁ ବିଶେଷ ଆଦର ଓ ଚୁମ୍ବନ ପାଇବା ଦ୍ୱାରା ସେମାନଙ୍କ ମନରେ ସମୟେ ସମୟେ ଏପରି ଗୋଟିଏ ଅଳିଭା ଦାଗ ରହିଯାଏ ଯେ ଭବିଷ୍ୟତ ଜୀବନରେ ମଧ୍ୟ ତାହାର ପ୍ରଭାବ ପଡ଼େ ।

ଦୁଇଟି ଶିଶୁଙ୍କୁ ଗୋଟିଏ ଶେଯରେ ଏକାଠି ଶୁଆଇବା ଉଚିତ ନୁହେଁ । ସେମାନେ ଖେଳ ଖେଳିବା ପାଇଁ କୁତୂହଳୀ ହୋଇ ନାନା କାର୍ଯ୍ୟରେ ପ୍ରବେଶ କରିଥାନ୍ତି । ବାପାମା'ଙ୍କ ସହିତ ମଧ୍ୟ ପିଲାମାନେ ଗୋଟିଏ ଶେଯରେ ଶୋଇବା ଉଚିତ ନୁହେଁ, କାରଣ କେତେକ ପିଲା ଅନେକ ସମୟରେ ଗାଢ଼ ନିଦରେ ଶୁଅନ୍ତି ନାହିଁ । ବାପାମା'ମାନଙ୍କ ରତିକ୍ରିୟା ସମୟରେ ସେମାନଙ୍କର ନିଦ ଭାଙ୍ଗିଯାଇ ପାରେ । ବାପାମା'ଙ୍କର ଏହି ଅବସ୍ଥା ଦେଖିବା ଦ୍ୱାରା ସେମାନଙ୍କର ମନରେ ପ୍ରଭାବ ପଡ଼ିପାରେ ।

ସବୁ ଜିନିଷ ଚିହ୍ନି ଚିହ୍ନି କରି ଦେଖିବା ନିମନ୍ତେ ଏବଂ ସବୁ ଜିନିଷ ଜାଣିବାକୁ ବାଳକବାଳିକାମାନଙ୍କର ପ୍ରବୃତ୍ତି ରହେ । ତେଣୁ ଏହି ସବୁ ଅଳିଭା ଦାଗଗୁଡ଼ିକର ପ୍ରଭାବ ଭବିଷ୍ୟତ ଜୀବନରେ ଅନେକ ସମୟରେ ଦେଖାଯାଏ ।

ଶ୍ରେଷ୍ଠ ଶ୍ରେଷ୍ଠ ଝିଅମାନେ ଶ୍ରେଷ୍ଠ ପୁଅମାନଙ୍କ ଠାରୁ ନିଜକୁ ଅଲଗା ମନେ କରନ୍ତି ନାହିଁ । ସମୟେ ସମୟେ ଶ୍ରେଷ୍ଠ ଝିଅମାନେ ପୁଅମାନଙ୍କର ଲିଙ୍ଗକୁ ଦେଖି ଆଶ୍ଚର୍ଯ୍ୟ ହୋଇଯିବାର ଦେଖାଯାଏ । ଶ୍ରେଷ୍ଠ ଶିଶୁମାନେ ଶରୀରର ଅନ୍ୟାନ୍ୟ ଅଙ୍ଗ ଅପେକ୍ଷା ନିଜର ଲିଙ୍ଗକୁ ବିଶେଷ ନଜର ଦେବା ଦେଖାଯାଇଛି । ବାଳିକାମାନେ ନିଜର ଅବସ୍ଥା ସମ୍ବନ୍ଧରେ ପୁଅ-ପିଲାମାନଙ୍କ ଠାରୁ ଶୀଘ୍ର ସତର୍କ ହୋଇଯାନ୍ତି ଓ ନିଜକୁ ହୀନାଙ୍ଗୀ ବୋଲି ମନେ କରନ୍ତି । ତେଣୁ ଛୋଟ ଝିଅମାନେ ଛୋଟ ପୁଅମାନଙ୍କ ଆଗରେ ଲଙ୍ଗଳା ରହିବା ପାଇଁ ଲଜ୍ଜା ଅନୁଭବ କରୁଥିବା ଅନେକ ସ୍ଥାନରେ ଲକ୍ଷ୍ୟ କରାଯାଇଛି ।

ପିଲାମାନେ ଶିଶୁ ଅବସ୍ଥାରେ 'ବୋହୂ'ଖେଳ ଖେଳନ୍ତି । ଏହି ଖେଳ ଖେଳିବା ସମୟରେ ସେମାନେ ଇନ୍ଦ୍ରିୟମାନଙ୍କରେ ହସ୍ତକୌଶଳ ପ୍ରୟୋଗ କରିବା ଲକ୍ଷ୍ୟ କରାଯାଇ ପାରେ । ଏହି ବୟସରେ ହିଁ ଯୌନ

ପ୍ରବୃତ୍ତିର ପ୍ରଥମ ପ୍ରଭାବ ସେମାନଙ୍କ ଠାରେ ଦେଖାଯାଏ । ପଶୁପକ୍ଷୀ, ସାଙ୍ଗସାଥୀ, ବାପାମା'ଙ୍କର ବା ଅନ୍ୟ ସ୍ତ୍ରୀପୁରୁଷଙ୍କ ରତିକ୍ରିୟା ସେମାନେ ଯାହା ଦେଖିଥାନ୍ତି ବା ଲକ୍ଷ୍ୟ କରିଥାନ୍ତି, ସେଗୁଡ଼ିକ ଏହି ଖେଳମାନଙ୍କରେ ଅନେକ ସମୟରେ ପ୍ରଭାବ ପକାଇଥାଏ । ଏହା ସହରର ପିଲାମାନଙ୍କ ଅପେକ୍ଷା ଗାଉଁଲି ପିଲାମାନଙ୍କ ଠାରେ ବିଶେଷ ଭାବେ ଦେଖିବାକୁ ମିଳେ । କାରଣ ଗ୍ରାମର ଲୋକମାନେ ସହରର ଲୋକମାନଙ୍କ ଅପେକ୍ଷା ପିଲାମାନଙ୍କ ଆଗରେ ସେତେ ଦୂର ସତର୍କ ରହନ୍ତି ନାହିଁ । ଏହି ବିଷୟରେ ଜର୍ମାନୀର ଜଣେ ପ୍ରସିଦ୍ଧ ଡାକ୍ତର କହିଛନ୍ତି ଯେ ମଫସଲର ପିଲାମାନଙ୍କ ଠାରେ ଯୌନ ପ୍ରବୃତ୍ତିର ପ୍ରଥମ ଲକ୍ଷଣ ଶୀଘ୍ର ଦେଖାଯାଏ । ସାଧାରଣତଃ ତିନିବର୍ଷ ବୟସର ପିଲାମାନଙ୍କ ଠାରେ ମଧ୍ୟ ଏହା ଦେଖିବାକୁ ମିଳେ । କାରଣ ପକ୍ଷୀ, କୁକୁର, ଗାଈଗୋରୁ ପ୍ରଭୃତିଙ୍କ ରତିକ୍ରିୟା ଏମାନଙ୍କ ଉପରେ ବିଶେଷ ପ୍ରଭାବ ପକାଇଥାଏ । ଗାଁରେ ପିଲାମାନେ ଅନେକ ବର୍ଷ ବୟସ ପର୍ଯ୍ୟନ୍ତ ଲଙ୍ଗଳା ହୋଇ ରହିବା ଯୋଗୁଁ ସେମାନଙ୍କ ମନରେ ପ୍ରତିକ୍ରିୟା ସୃଷ୍ଟି ହୋଇଥାଏ ।

ଶିଶୁ ଅବସ୍ଥାରେ ବାଳକ ଓ ବାଳକୀମାନଙ୍କ ଠାରେ ପୁଂ ଓ ସ୍ତ୍ରୀ ଉଭୟ ଶକ୍ତିର ପ୍ରଭାବ ରହେ । ବୟସର ବୃଦ୍ଧି ସଙ୍ଗେ ସଙ୍ଗେ କୈଶୋର ଅବସ୍ଥାରେ ପହଞ୍ଚିଲା ବେଳକୁ ବାଳକମାନଙ୍କ ଠାରେ ସ୍ତ୍ରୀ-ଶକ୍ତିର ପ୍ରଭାବ କମିଯାଇ ପୁଂ-ଶକ୍ତିର ପ୍ରଭାବ ବୃଦ୍ଧି ପାଏ । ସେହିପରି ବାଳକାମାନଙ୍କ-ଠାରେ ପୁଂ-ଶକ୍ତିର ପ୍ରଭାବ କମିଯାଇ ସ୍ତ୍ରୀ-ଶକ୍ତିର ପ୍ରଭାବ ବୃଦ୍ଧି ପାଏ । କେତେକ କ୍ଷେତ୍ରରେ ଗୋଟିଏ ଶକ୍ତିର ପ୍ରଭାବ ବୃଦ୍ଧି ପାଇବାବେଳେ ଅନ୍ୟ ଶକ୍ତିର ପ୍ରଭାବ ବରାବର ରହିଥିବା ଦେଖିବାକୁ ମିଳେ ।

ସାଧାରଣତଃ ପାଞ୍ଚ ବର୍ଷ ବୟସ ଠାରୁ ବାର ବର୍ଷ ବୟସ ପର୍ଯ୍ୟନ୍ତ ବାଳିକାମାନଙ୍କ ଠାରେ ବାଳକମାନଙ୍କ ସ୍ୱଭାବ ଓ ପ୍ରବୃତ୍ତି ଦେଖା-ଯାଇଥାଏ । କିନ୍ତୁ ଯୌବନର ଆରମ୍ଭ ହେଲେ ଏହି ସ୍ୱଭାବ ଓ ପ୍ରବୃତ୍ତି କମିଯାଏ । ବୟସର ବୃଦ୍ଧି ସଙ୍ଗେ ସଙ୍ଗେ ବାଳକ ଓ ବାଳିକାମାନଙ୍କ ଶରୀର ଗଠନରେ ଯେଉଁ ପାର୍ଥକ୍ୟ ରହେ, ତାହା କେତେକ ମାତ୍ରାରେ ସେମାନେ ବୁଝିବା ଆରମ୍ଭ କରନ୍ତି । କିନ୍ତୁ ଏହି ବୟସରେ ସେମାନଙ୍କ ସ୍ୱଭାବରେ ହଠାତ୍ ବିଶେଷ ପରିବର୍ତ୍ତନ ନ ଆସି ଧୀରେ ଧୀରେ ପରିବର୍ତ୍ତନ

ଆରମ୍ଭ ହୁଏ, ବାଲ୍ୟସୁଲଭ ଚପଳତା ହଠାତ୍ ବନ୍ଦ ନ ହୋଇ କ୍ରମେ କ୍ରମେ ପରିବର୍ତ୍ତିତ ହୁଏ, ସ୍ୱଭାବରେ ଧୀରେ ଧୀରେ ପରିବର୍ତ୍ତନ ଆସିବା ଯୋଗୁ ବେଶଭୂଷା, ନାଚତାମସା ପ୍ରତି ମନ ଆକୃଷ୍ଟ ହୁଏ । ଲଜ୍ଜା ଓ କଳ୍ପନା ଶକ୍ତିର ଆରମ୍ଭ ହୁଏ । କ୍ରମେ ଏହି ପ୍ରବୃତ୍ତି ପ୍ରେମ ଓ ସ୍ନେହ ଦିଗରେ ଉଠାଇ ନିଏ ।

ପୂର୍ବରୁ କୁହାଯାଇଛି ଯେ ଶିଶୁମାନେ ଜିଜ୍ଞାସୁ । କୌତୂହଳୀ ହୋଇ ଜାଣିବା ନିମନ୍ତେ ନାନା ରକମ ପ୍ରଶ୍ନ ସେମାନେ ପଚାରିଥାନ୍ତି । ଛୁଆ କିପରି ଜନ୍ମ ହୁଏ; ନାରୀ କିପରି ଛୁଆ ଜନ୍ମ କରେ; ପ୍ରତ୍ୟେକ ନାରୀ ଛୁଆ ଜନ୍ମ କରେ କି ?—ଏହିପରି ନାନା ପ୍ରଶ୍ନ ପଚାରିଥାନ୍ତି । ବାଳକମାନଙ୍କର ପୁଂ-ଲିଙ୍ଗର ଚିହ୍ନ ରହେ, ବାଳିକାମାନଙ୍କର ସେପରି କାହିଁକି ନ ଥାଏ ?—ଇତ୍ୟାଦି ଇତ୍ୟାଦି । ଏହିପରି ପ୍ରଶ୍ନ ଶୁଣି ଅନେକ ସମୟରେ ବାପମା'ମାନେ ବିଚଳିତ ହୋଇ ପଡ଼ନ୍ତି । କିନ୍ତୁ ଏପରି ପ୍ରଶ୍ନରେ ବିଚଳିତ ନ ହୋଇ ଶିଶୁମାନଙ୍କୁ କୌଶଳ ସହିତ ଉପଦେଶ ଛଳରେ ବୁଝାଇବା ଦରକାର । ନିଜେ ବିଚଳିତ ହୋଇ ପାଟିତୁଣ୍ଡ କରିବା କିମ୍ବା ଶାରୀରିକ ବିଜ୍ଞାନ ବୁଝାଇବା ଉଚିତ ନୁହେ । ବାପମା'ଙ୍କ ଠାରୁ ଗାଳି ଶୁଣିବା ଦ୍ୱାରା ପିଲମାନେ ଭୟରେ ଚୁପ ହୋଇ ରହିଥାନ୍ତି । କିନ୍ତୁ ସେହି ଭାବନା ତାଙ୍କ ମନରୁ ଯାଏ ନାହିଁ । ପ୍ରଫେସର୍ ଲିଟମ୍ୟାନ୍ ଏହି ବିଷୟରେ ଗୋଟିଏ ସୁନ୍ଦର ଉଦାହରଣ ଦେଇଛନ୍ତି—ଥରେ ଗୋଟିଏ ବାଳକ ତାହାର ବାପାଙ୍କୁ ପଚାରିଲା ଯେ ଛୁଆ କିପରି ଜନ୍ମ ହୁଅନ୍ତି । ବାପା ସେହି ପ୍ରଶ୍ନର ଉତ୍ତର ହଠାତ୍ ଦେଇ ପାରିଲେ ନାହିଁ । ତାର କିଛି ଦିନ ପରେ ବାପା ଓ ପୁଅ ଦୁହେଁ ମଫସଲକୁ ଯାଇଥିଲେ । ସେଠାରେ ଘୋଡ଼ାମାନଙ୍କୁ ଦେଖିବା ପାଇଁ ଦୁହେଁ ତାଙ୍କର ଘୋଡ଼ାଶାଳକୁ ଗଲେ । ଘୋଡ଼ାଶାଳରେ ଗୋଟିଏ ଘୋଡ଼ୀ ଛୁଆଟିଏ ଜନ୍ମ କରିଥାଏ । ସେଠାରେ ପୁଅ ଯେତେବେଳେ ବାପାଙ୍କୁ ପଚାରିଲା ଛୁଆ କିପରି ଜନ୍ମ ହୁଏ, ସେତେବେଳେ ବାପା କହିଲେ ଯେ ଘୋଡ଼ୀର ପେଟରୁ ଛୁଆ ଜନ୍ମ ହୋଇଛି । ତାପରେ ପୁଅ ପଚାରିଲା ଯେ ଛୁଆ ଜନ୍ମ କରିବା ସକାଶେ ଘୋଡ଼ୀର ପେଟ ଚିରିବାକୁ ପଡ଼େ କି ? ସେତେବେଳେ ଘୋଡ଼ୀର କେଉଁ ବାଟେ ଛୁଆ ଜନ୍ମ ହୁଏ, ବାପା ତାହାକୁ ଦେଖାଇ ଦେଲେ । ଏଥିରୁ ଜଣାଯିବ ଯେ ପ୍ରାଣୀମାନଙ୍କ ସାହାଯ୍ୟରେ

ଶିଶୁମାନଙ୍କୁ ଯୌନଶିକ୍ଷା ଦେବା ସହଜ ପନ୍ଥା । ଶିଶୁମାନେ ଏହିଭଳି ପ୍ରଶ୍ନ କଲାବେଳେ କେତେକ ଲୋକ ଏପରି ଦୃଷ୍ଟାନ୍ତଗୁଡ଼ିଏ ଦିଅନ୍ତି । ଶିଶୁ ତାହାକୁ ସତ ବୋଲି ବିଶ୍ୱାସ କରେ । ଏହି ବିଶ୍ୱାସ ଶିଶୁର ଭବିଷ୍ୟତ ଯୌନ ଜୀବନ ଉପରେ ପ୍ରଭାବ ପକାଇଥାଏ । ଯୌନ ସମ୍ବନ୍ଧୀୟ କୌଣସି ଅସୁବିଧା କିମ୍ବା ରୋଗ ଜାତ ହେଲେ ବାଳକମାନେ ଲଜ୍ଜା କିମ୍ବା ଭୟ-ବଶତଃ ବାପମା'ମାନଙ୍କୁ କହନ୍ତି ନାହିଁ । ଏହାଦ୍ୱାରା ସେମାନଙ୍କ ଅବସ୍ଥା ଖରାପ ଦିଗରେ ଗତି କରିଥାଏ ।

ଗବେଷକମାନଙ୍କଠାରୁ ଜଣାଯାଇଛି ଯେ ଶତକଡ଼ା ଷାଠିଏ ଦଶବର୍ଷ ଠାରୁ ବାର ବର୍ଷ ବୟସ ଭିତରେ, ଶତକଡ଼ା ପନ୍ଦର ସାତ ବର୍ଷ ଠାରୁ ନଅ ବର୍ଷ ମଧ୍ୟରେ, ଶତକଡ଼ା କୋଡ଼ିଏ ତେର ବର୍ଷ ଠାରୁ ଷୋହଳ ବର୍ଷ ମଧ୍ୟରେ ଓ ଶତକଡ଼ା ପାଞ୍ଚ ଛ ବର୍ଷ ବୟସ ପୂର୍ବରୁ ବା ଷୋହଳ ବର୍ଷ ବୟସ ପରେ ଯୌନ ସମ୍ବନ୍ଧୀୟ ଜ୍ଞାନ ପାଇଥାନ୍ତି । ବାଳିକାମାନଙ୍କ ସକାଶେ ବୟସରେ ଗୋଟିଏ ବର୍ଷ ଅଧିକ ଯୋଗ କରି ହିସାବ କରିବାକୁ ହୁଏ । ବାଳକମାନଙ୍କ ପକ୍ଷେ ଏହି ଶିକ୍ଷା ଯେତେଦୂର ଦରକାର, ବାଳିକା-ମାନଙ୍କ ପକ୍ଷେ ତାଠାରୁ ବେଶି ଦରକାର । ବାଳକମାନେ ପତ୍ରପତ୍ରିକା ପଢ଼ି ବା ବୟସ୍କ ବାଳକମାନଙ୍କ ସମ୍ପର୍କରେ ଆସିବା କିମ୍ବା ସାଙ୍ଗସାଥୀ-ମାନଙ୍କ ଠାରୁ ବା ପଶୁପକ୍ଷୀମାନଙ୍କର ରତିକ୍ରିୟା ଦେଖି ଯୌନ ସମ୍ବନ୍ଧୀୟ ଜ୍ଞାନ ପାଇଥାନ୍ତି । କିନ୍ତୁ ବାଳିକାମାନଙ୍କ ପକ୍ଷେ ଏ ପ୍ରକାର ସୁବିଧା ରହେ ନାହିଁ । ସେମାନେ ଅତର୍କିତ ଭାବେ ପ୍ରଥମ ଯୌବନରେ ପଦାର୍ପଣ କଲାବେଳେ ଅସ୍ଥିର ହୋଇପଡ଼ନ୍ତି । ଏଥିଯୋଗୁଁ ଅନେକ ସମୟରେ ସେମାନଙ୍କ ଠାରେ ମାନସିକ ପ୍ରତିକ୍ରିୟା ଦେଖାଦେଇଥାଏ । ଜନୈକ ୟୁରୋପୀୟ ଡାକ୍ତର ଲେଖିଛନ୍ତି—ଏହି ସମୟରେ ଭୟ, ମାନସିକ ସାହସ, ଅସ୍ଥିରତା ଓ ଥଣ୍ଡା ଧରିବା ଯୋଗୁଁ ଅନେକ ବାଳିକା ସ୍ୱାସ୍ଥ୍ୟ ହରାଇ ବସନ୍ତି । ପ୍ରଥମ ଯୌବନରେ ପଦାର୍ପଣ କଲାବେଳେ ଯେଉଁ ରକ୍ତସ୍ରାବ ହୁଏ ତାହାର କାରଣ ଅନେକ ବାଳିକା ବୁଝି ନ ଥାନ୍ତି । ସେମାନେ ଭାବନ୍ତି ଯେ କୌଣସି କ୍ଷତ ଯୋଗୁ ବା ଘା ହେବାଯୋଗୁ ଏହି ରକ୍ତସ୍ରାବ ହୋଇଥାଏ । ସେହେତୁ ସେମାନେ ଥଣ୍ଡାପାଣି ବ୍ୟବହାର କରି ଏହି ରକ୍ତସ୍ରାବକୁ ବନ୍ଦ କରିବା ନିମନ୍ତେ ଚେଷ୍ଟା କରିଥାନ୍ତି । କେତେକ

ବାଳିକା ରକ୍ତସ୍ରାବ ହେବା ସଙ୍ଗେ ସଙ୍ଗେ ଥଣ୍ଡାପାଣିରେ ଗାଧୋଇ ସଫାସୁତରା ହୋଇଯାନ୍ତି । ଆଜି କେତେକ ବାଳିକା ଏହି ରକ୍ତସ୍ରାବକୁ ଅସ୍ୱାଭାବିକ ମୈଥୁନ ବା ଦୁଶ୍ଚିନ୍ତାର କାରଣ ବୋଲି ମନେକରନ୍ତି ।

ଓଡ଼ିଶାର ବାଳିକାମାନେ ପ୍ରଥମ ଯୌବନରେ ପ୍ରବେଶ କଲାବେଳେ ବନ୍ଦାପନା ହେବାର ଗୋଟିଏ ପ୍ରଥା ଅଛି । ଏହି ପ୍ରଥା ଅନୁଯାୟୀ ବାଳିକାମାନେ ପ୍ରଥମ ଯୌବନରେ ପ୍ରବେଶ କରିବାର ସାତଦିନ ପର୍ଯ୍ୟନ୍ତ ପୁରୁଷମାନଙ୍କର ଏପରିକି ବାଳକମାନଙ୍କର ମଧ୍ୟ ସଂସ୍ପର୍ଶରେ ଆସନ୍ତି ନାହିଁ । ଏହି ସାତଦିନ ସେମାନେ ଘରର ବା ସାଇପଡ଼ିଶାର ଯୁବତୀ ଓ ପ୍ରୌଢ଼ାମାନଙ୍କ ଦ୍ୱାରା ପରିଚାଳିତ ହୋଇ କାର୍ଯ୍ୟ କରିଥାନ୍ତି । ସାଧାରଣତଃ ସେମାନେ ଏହି ସାତଦିନଯାକ ନୂଆ ଲୁଗା ପିନ୍ଧି ସଫାସୁତରା ହୋଇ କେବଳ ଘରଭିତରେ ରହନ୍ତି । ଏହା ଫଳରେ ବାହାରର ଥଣ୍ଡା ପବନ ସେମାନଙ୍କୁ ବାଜେ ନାହିଁ । ସପ୍ତମ ଦିନ କେତୋଟି ପିଲାଙ୍କୁ (ବାଳକ ଓ ବାଳିକା) ଆଣି ସେମାନଙ୍କର ଯତ୍ନ ନିଆଯାଏ; ଅର୍ଥାତ୍ ପିଲାମାନଙ୍କୁ ତେଲ ହଳଦୀ ଲଗାଇ ଦେବା, ଗାଧୋଇ ଦେବା, ଖୋଇଦେବା ପ୍ରଭୃତି କରାଯାଏ । ଶେଷରେ ଭୋଜି ହୁଏ । ଏହି ସାତଦିନ ପରେ ସେମାନେ ଘରୁ ବାହାରକୁ ଆସନ୍ତି ।

ଏହି ପ୍ରଥାରୁ ଦେଖାଯିବ ଯେ ଯେଉଁ ବାଳିକାମାନେ ଯତ୍ନ ପାଆନ୍ତି, ତଦ୍ୱାରା ସେମାନେ ଭବିଷ୍ୟତ୍ କର୍ତ୍ତବ୍ୟର ଆଭାସ ପାଇଥାନ୍ତି । ଯେଉଁ କୁମାରୀ ପ୍ରଥମ ଯୌବନରେ ପଦାର୍ପଣ କରେ, ସେ ରଜସ୍ୱଳା ନାରୀର କର୍ତ୍ତବ୍ୟ ଓ ଭବିଷ୍ୟତରେ ତାର ଛୁଆମାନଙ୍କର କିପରି ଯତ୍ନ ନେବାକୁ ହେବ ତାହା ଘର ଓ ସାଇପଡ଼ିଶାର ଯୁବତୀ ଓ ପ୍ରୌଢ଼ାମାନଙ୍କ ଠାରୁ ଶିକ୍ଷା କରିଥାଏ । ଏହି ପ୍ରଥା ଆଜିକାଲି ଗାଁଗହଳରେ ଦେଖିବାକୁ ମିଳେ ।

ପ୍ରଥମ ଯୌବନରେ ପଦାର୍ପଣ କଲାବେଳେ ମାନସିକ ଅସ୍ଥିରତା, ଭୟ ପ୍ରଭୃତି ବିଷୟରେ ଯାହା ପୂର୍ବେ କୁହାଯାଇଛି, ତାହା ଓଡ଼ିଶାର ଗାଁଗହଳରେ କମ୍ ଦେଖିବାକୁ ମିଳେ । କାରଣ ଭବିଷ୍ୟତରେ ନିଜର ସେହି ଅବସ୍ଥା ଆସିବା କଥା ବାଳିକା ପୂର୍ବରୁ ହିଁ ଜାଣିଥାଏ । ପୁଣି ଗାଁଗହଳରେ କିଶୋରୀମାନେ ଯେତେ ସାଇପଡ଼ିଶାର ଯୁବତୀ ଓ

ପ୍ରୌଢ଼ାମାନଙ୍କ ସହିତ ମିଳାମିଶାର ସୁବିଧା ପାଆନ୍ତି ସହରର ବାଳକାମାନେ ସେତେ ସୁବିଧା ପାଆନ୍ତି ନାହିଁ । ସେହେତୁ ସହରର ବାଳିକାମାନଙ୍କ ପକ୍ଷେ ଯୌନଜ୍ଞାନ ପାଇବାରେ ସୁବିଧା ରହେ ନାହିଁ । ଆର୍ଥିକ ପରିସ୍ଥିତି ଓ ସହରର ପ୍ରତିକୂଳ ବାତାବରଣ ଯୋଗୁ ଅନେକ ଶିକ୍ଷାପ୍ରଦ ପ୍ରଥା ପାଳନ କରିବା ସକାଶେ ସୁବିଧା ହୁଏ ନାହିଁ ।

ସହରର କିଶୋରୀମାନେ ମଫସଲର ବାଳିକାମାନଙ୍କ ଅପେକ୍ଷା ବିଶେଷ ଭାବେ ମାନସିକ ଉତ୍ତେଜନା ପାଆନ୍ତି; କିନ୍ତୁ ଯୌନକ୍ଷେତ୍ରରେ ଶିକ୍ଷା ପାଇବାର ସୁବିଧା ସେମାନଙ୍କର ସେତିକି ରହେ ନାହିଁ । ଲଜ୍ଜା ଓ ଆଧୁନିକ ଭଦ୍ରତା ଏହି ଦିଗରେ ପ୍ରତିବନ୍ଧକ ହୁଏ । ସେହେତୁ ପ୍ରଥମ ଯୌବନରେ ମାନସିକ ଅସ୍ଥିରତା ପ୍ରଭୃତି ଗାଁଗହଳ ଅପେକ୍ଷା ସହରର କିଶୋରୀମାନଙ୍କ ଠାରେ ବିଶେଷ ଭାବେ ଦେଖାଦିଏ ।

ବାଳିକା କିଶୋରୀ ଅବସ୍ଥାରେ ପହଞ୍ଚିବା ପରେ ତା ଜଙ୍ଘ ନିତମ୍ବ ପ୍ରଭୃତି ଗୋଲ ଆକାର ଧାରଣ କରିବା ଦେଖାଯାଏ । ନିତମ୍ବ ଚୌଡ଼ା ହୁଏ; ଆଖିରେ ଚଞ୍ଚଳତା, ଚପଳତା ରହେ । ସ୍ତନ ଦୁଇଟି ଗ୍ରନ୍ଥି ଉପରେ ମାଂସଳ ହୋଇ ଫୁଲିଉଠି ଆସ୍ତେ ଆସ୍ତେ ବୃଦ୍ଧି ହୁଏ ଯାହାକି କିଶୋରୀ ମନରେ ଗର୍ବ ଆଣେ । କିଶୋର ଯେପରି ତାହାର ଶୀଘ୍ର ନିଶ ଉଠିବାକୁ କାମନା କରେ, କିଶୋରୀ ନିଜର ସ୍ତନ ବାହାରକୁ ଦିଶିଲା ପରି ଶୀଘ୍ର ବୃଦ୍ଧି ହେବାକୁ କାମନା କରେ । ବାଳକ ସ୍ୱରଠାରୁ ବାଳିକାର ସ୍ୱର ଭିନ୍ନ ହୁଏ । କିଶୋରର ଶାରୀରିକ ଗଠନ ଚୌଡ଼ା ନ ହୋଇ ସଳଖ ହୋଇ ରହେ, ମାଂସପେଶୀ ଓ ଅନ୍ୟାନ୍ୟ ଅଙ୍ଗରେ ଶକ୍ତି ଆସେ । ଶରୀରରେ ହାଡ଼ ଓ ମାଂସପେଶୀର ଗଠନ ଦୃଢ଼ଭାବେ ହୋଇଥିବା ଯୋଗୁ ଯୁବକର ଉଚ୍ଚତା ଯୁବତୀ ଅପେକ୍ଷା ଅଧିକ ରହେ ।

ବାଳିକାର କ୍ରମେ ସ୍ତନ ଦୁଇଟି ଉଠିଲାପରେ ରହେ ଓ ସ୍ତନମୁଣ୍ଡି ଭଲଭାବେ ଫୁଟିଉଠେ ଯାହା ଫଳରେ ପ୍ରସବ ପରେ ତାହା ଶିଶୁକୁ ଦୁଧ ଖୁଆଇବାରେ ସାହାଯ୍ୟ କରେ । ଏହି ସମୟରେ କେତେକ ସୂକ୍ଷ୍ମ ସ୍ନାୟୁ ସେଠାରେ ବୃଦ୍ଧି ପାଆନ୍ତି । ଏହା ଫଳରେ ସେଠାରେ ସ୍ପର୍ଶ ପାଇବା ମାତ୍ରେ ନାରୀର କାମୋତ୍ତେଜନା ବୃଦ୍ଧି ହୁଏ । ତେଣୁ ପ୍ରେମକ୍ରୀଡ଼ାରେ ସ୍ତନ ଦୁଇଟି ସାହାଯ୍ୟ କରିଥାନ୍ତି ।

ଯୌନବିଜ୍ଞମାନେ କହନ୍ତି ଯେ ଶିଶୁର ଶରୀର ପ୍ରାୟ କୋଡ଼ିଏ ବର୍ଷ ବୟସ ପର୍ଯ୍ୟନ୍ତ ଧାରାବାହିକ ଭାବେ ଗୋଟିଏ ଅନୁପାତରେ ଆସ୍ତେ ଆସ୍ତେ ବୃଦ୍ଧି ପାଏ । ଶରୀରର ପ୍ରତ୍ୟେକ ଅଙ୍ଗ ବୃଦ୍ଧି ପାଉଥିବା ବେଳେ ଯୌନ ଅଙ୍ଗ ସେହିଭାବେ ଓ ସେହି ଅନୁପାତରେ ବୃଦ୍ଧି ପାଏ ନାହିଁ । ଗର୍ଭସଂଚାର ହେବାର ପଞ୍ଚମ ସପ୍ତାହ ପରେ ହିଁ ଶିଶୁର ଯୌନଭାଗର ବୃଦ୍ଧି ହେବାର ଆରମ୍ଭ ହୁଏ । ପ୍ରଥମ ଅବସ୍ଥାରେ ଡିମ୍ବକୋଷ ବା ଶୁକ୍ରକୋଷ ଗର୍ଭସ୍ଥ ଭ୍ରୂଣର ପେଟ ଭିତରେ ଆରମ୍ଭ ହୁଏ । ଯଦି ଡିମ୍ବକୋଷ ହୋଇଥାଏ ତାହା ପେଟଭିତରେ ରହିଯାଏ, ଯଦି ଶୁକ୍ରକୋଷ ହୋଇଥାଏ ତାହାହେଲେ ଏହା କ୍ରମେ କ୍ରମେ ତଳକୁ ଖସି ଠିକ ସ୍ଥାନକୁ ଆସିଯାଏ ।

ଯୁବକ ବା ପୁରୁଷର କାମ ପ୍ରବୃତ୍ତିକୁ ବିଶ୍ଳେଷଣ କଲେ ଦେଖାଯିବ ଯେ ଏହା ଦୁଇ ଭାଗରେ ବିଭକ୍ତ । ଯଥା—(କ) ଶାରୀରିକ—ଯାହା କି ଉତ୍ତେଜନାକୁ ଉପଶମ କରିବା ସକାଶେ ପରିତ୍ୟାଗ ଇଚ୍ଛା; (ଖ) ମାନସିକ —ଯାହା ଦ୍ୱାରା ସେ ପ୍ରଥମ ଭାଗଟି ସମ୍ପାଦନ କରିବା ସକାଶେ ସୁବିଧା ଦରକାର କରେ ଅର୍ଥାତ୍ ଯାହା ସେ ନାରୀଠାରୁ ପାଏ । ଏହି ପ୍ରବୃତ୍ତି ଯୋଗୁ ପୁରୁଷ ନାରୀ ପ୍ରତି ଆକୃଷ୍ଟ ହୁଏ । ସେମାନଙ୍କ ମଧ୍ୟ ତୃପ୍ତି ଦେବା ନିମନ୍ତେ ନିଜକୁ ପ୍ରସ୍ତୁତ କରେ । ସାଧାରଣତଃ ଯୁବକମାନଙ୍କର କାମ ପ୍ରବୃତ୍ତିରେ ଉଭୟ ଲକ୍ଷଣ ରହେ । କେତେକ ଡାକ୍ତରଙ୍କ ମତରେ ଶିଶୁ ଓ ପିଲାମାନଙ୍କଠାରେ କେବଳ ପ୍ରଥମ ଲକ୍ଷଣଟି ଦେଖାଯାଏ । ସେମାନଙ୍କ ପାଟି, ଗୁହ୍ୟଦ୍ୱାର ଓ ଲିଙ୍ଗ ବା ହସ୍ତ ବା କୌଣସି କୋମଳ ପଦାର୍ଥର ସଂସ୍ପର୍ଶରେ ଆସିବା ଦ୍ୱାରା ପିଲାର ମାନସିକ ଅବସ୍ଥାରେ ଯେଉଁ ପରିବର୍ତ୍ତନ ଆସେ ତାହା ଏହାର ନିଦର୍ଶନ । କୈଶୋର ଅବସ୍ଥାରେ ମଧ୍ୟ ଏହି ପ୍ରବୃତ୍ତି ବର୍ଦ୍ଧିତ ହୋଇଥିଲେ ସୁଦ୍ଧା ଏହା ପୂର୍ଣ୍ଣାଙ୍ଗପ୍ରାପ୍ତ ହୋଇ ନ ଥାଏ । ଯେ ହେତୁ କିଶୋରମାନଙ୍କର ଏହି ପ୍ରବୃତ୍ତି ଯୁବତୀ ବା କିଶୋରୀମାନଙ୍କ ଉଦ୍ଦେଶ୍ୟରେ ପରିଚାଳିତ ନ ହୋଇ ସେମାନଙ୍କ ସମବୟସ୍କ ସାଙ୍ଗସାଥୀ-ମାନଙ୍କ ଦିଗରେ ଗତି କରେ । ଫଳରେ ସେହି ଅବସ୍ଥାରେ ହସ୍ତମୈଥୁନ ପ୍ରବୃତ୍ତି ଦେଖାଦିଏ । ଏହା ଜାଣି ତହିଁରେ ବିଚଳିତ ହେବାର କୌଣସି କାରଣ ନାହିଁ । ଏହା କେବଳ ଯୌନ ପ୍ରବୃତ୍ତିର ସାଧାରଣ ଅବସ୍ଥାକୁ ପହଞ୍ଚିବା ଦିଗରେ ଗୋଟିଏ ଲକ୍ଷଣ ବୋଲି ଧରିନେବା ଦରକାର । ପରେ

ଯୌବନାବସ୍ଥାରେ ପଦାର୍ପଣ କଲାବେଳେ କିଶୋରର ଯୌନ ପ୍ରବୃତ୍ତିରେ ପୂର୍ଣ୍ଣତା ଆସିଥାଏ ବା ଆସିଯାଏ । ସେତେବେଳେ ଶାରୀରିକ ଉତ୍ତେଜନା ବୃଦ୍ଧି ପାଇଲେ ଉପଶମ କରିବା ପାଇଁ ପରିତ୍ୟାଗର ଇଚ୍ଛା ଜୋର୍ ହୁଏ । ଏହି ଇଚ୍ଛା ଯେତିକି ମାତ୍ରାରେ ବଳବତ୍ତର ହୋଇଉଠେ, ସେତିକି ମାତ୍ରାରେ ଯୁବକ ନାରୀର ସହଯୋଗ କାମନା କରେ । ନାରୀର ସହଯୋଗ ପାଇବାରେ କୌଣସି ପ୍ରତିବନ୍ଧକ ଆସିଲେ ପରିତ୍ୟାଗର ଇଚ୍ଛା ଏତେ ବଢ଼ିଯାଉଥାଏ ଯେ ସେ ଯେ କୌଣସି ରକମର ଅସ୍ୱାଭାବିକ ମୈଥୁନ ଦ୍ୱାରା ଲକ୍ଷ୍ୟ ହାସଲ କରେ ।

ଗବେଷଣା ଦ୍ୱାରା ଜଣାଯାଇଛି ଯେ ଏହି ବୟସରେ ଶତକଡ଼ା ନବେ ଯୁବକ ହସ୍ତମୈଥୁନ ଅଭ୍ୟାସ କରିଥାନ୍ତି । ଏହି ସମୟରେ ଯୁବକମାନଙ୍କର କଳ୍ପନା ଶକ୍ତି ବୃଦ୍ଧି ହୁଏ । ନାରୀର ପ୍ରକୃତ ସହଯୋଗ ବା ସହବାସ ନ ପାଇଲେ ସୁଦ୍ଧା ସେମାନେ ତାର ପ୍ରକୃତିକୁ କଳ୍ପନା କରି ସେଥିର ସାହାଯ୍ୟ ନେଇଥାନ୍ତି । ସୁନ୍ଦର ଛବି, ଦୃଶ୍ୟ, ଶୃଙ୍ଗାର ବା ରସାଳ ସାହିତ୍ୟ ପ୍ରଭୃତି ଏହି ବୟସରେ ବିଶେଷ ଭାବେ ଯୁବକମାନଙ୍କୁ ଆକୃଷ୍ଟ କରେ ଏବଂ ଏହା ଦ୍ୱାରା ସେମାନଙ୍କ କଳ୍ପନା ଶକ୍ତି ବୃଦ୍ଧି ହେବା ସଙ୍ଗେ ସଙ୍ଗେ କଳ୍ପନା କରିବା ସକାଶେ ଉପାଦାନ ମଧ୍ୟ ମିଳିଯାଏ । ବୟସବୃଦ୍ଧି ସଙ୍ଗେ ସଙ୍ଗେ ଅନେକ କ୍ଷେତ୍ରରେ କୌଣସି କାରଣରୁ ନାରୀର ସହଯୋଗ ନ ପାଇଲେ ଯୁବକମାନେ ଅସ୍ୱାଭାବିକ ମୈଥୁନ ପରିବର୍ତ୍ତେ ବେଶ୍ୟାର ଆଶ୍ରୟ ନେଇଥାନ୍ତି ।



# ଯୌବନର ଉପକ୍ରମ

କିଶୋରୀ ଅବସ୍ଥା ପରେ ପ୍ରଥମ ଯୌବନ ଆରମ୍ଭ ହୁଏ । ଏହି ବୟସରେ ସନ୍ତାନ ଉତ୍ପାଦନ ଶକ୍ତି ଆରମ୍ଭ ହୁଏ । କୈଶୋର ଅବସ୍ଥାରେ ଅନେକ ରକମର ଶାରୀରିକ ଓ ମାନସିକ ପରିବର୍ତ୍ତନ ଆସେ ଏବଂ ଏହି ପରିବର୍ତ୍ତନ ଅନେକ ସମୟରେ ଜୀବନର ଗତିଧାରା ବଦଳାଇ ଦିଏ । ତେଣୁ ବାପା ଓ ମା'ମାନେ ଏହି ବୟସର ସନ୍ତାନମାନଙ୍କ ପ୍ରତି ବିଶେଷ ଭାବେ ନଜର ଦେବା ଦରକାର । କାରଣ ସେମାନଙ୍କ ଜୀବନର ଗତିଧାରା ଥରେ ବିପଥଗାମୀ ହେଲେ ତାହାକୁ ପୁଣି ବଦଳାଇବା କଷ୍ଟସାଧ୍ୟ ।

ପ୍ରଥମ ଯୌବନର ଆରମ୍ଭ ନିମନ୍ତେ ସେପରି କିଛି ନିର୍ଦ୍ଦିଷ୍ଟ ବୟସ ନାହିଁ । ତାହା ଦେଶର ଜଳବାୟୁ, ଖାଦ୍ୟ, ପରିବେଶ ପ୍ରଭୃତି ଉପରେ ବିଶେଷ ନିର୍ଭର କରେ । ସାଧାରଣତଃ ଦାକ୍ଷିଣାତ୍ୟ ଦେଶମାନଙ୍କରେ ଗରମ ଜଳବାୟୁ ଯୋଗୁଁ ପ୍ରଥମ ଯୌବନର ଆରମ୍ଭ ଶୀଘ୍ର ହୁଏ । କିନ୍ତୁ ୟୁରୋପ ପ୍ରଭୃତି ଶୀତପ୍ରଧାନ ଦେଶମାନଙ୍କରେ ପ୍ରାୟ ଚଉଦ ଠାରୁ ପନ୍ଦର ବର୍ଷ ବୟସରେ ପ୍ରଥମ ଯୌବନ ଆରମ୍ଭ ହୋଇଥାଏ ।

ଏହି ସମୟରେ ଶରୀର ଗଠନ ସୁନ୍ଦର ରହେ ନାହିଁ । ଅର୍ଥାତ୍ କୈଶୋର ସମୟରେ ଶରୀରର ସୌନ୍ଦର୍ଯ୍ୟ ନଷ୍ଟ ହୋଇଯାଏ ଏବଂ ଯୁବକ ସମୟର ଶାରୀରିକ ଗଠନ ଆସି ନ ଥାଏ । କିଶୋରୀମାନଙ୍କ ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗ ଲମ୍ବାଳିଆ ଆକାର ଓ ଅଙ୍ଗଭଙ୍ଗୀ କଦାକାର ଦିଶେ । କିଶୋର-ମାନଙ୍କର ଶରୀର ମଧ୍ୟ ସେହିପରି ଦେଖାଯାଏ । ଏହି ଅବସ୍ଥାରେ କିଶୋରମାନଙ୍କର ଗୁଣ୍ଡି ସାମାନ୍ୟ ଉଚ୍ଚ ହେବାକୁ ଲାଗେ । ସେମାନଙ୍କ କଣ୍ଠସ୍ୱର ଭାଙ୍ଗିଯାଇ ଗମ୍ଭୀର ହେବାକୁ ଆରମ୍ଭ ହୁଏ; ତେଣୁ ମଧୁର ଶୁଭେ ନାହିଁ । ଉଭୟଙ୍କ ଦେହରେ ଲୋମ ଉଠିବା ଆରମ୍ଭ ହୁଏ । ପ୍ରଥମେ କାଖ ଓ ଲିଙ୍ଗମଣ୍ଡଳରେ ଲୋମ ଉଠେ । ତାପରେ ମୁହଁ, ଗୁଣ୍ଡି, ଗୋଡ଼ ପ୍ରଭୃତିରେ ଲୋମ ଉଠେ । ଅର୍ଥାତ୍ ବାଳକମାନଙ୍କର ମୁହଁ, କାଖ ଓ ଲିଙ୍ଗମଣ୍ଡଳରେ ଏବଂ ବାଳିକାମାନଙ୍କର କାଖ ଓ ଯୋନିମଣ୍ଡଳରେ ଲୋମ ଉଠିବା ଆରମ୍ଭ କରେ । ବାଳକମାନଙ୍କ ଅପେକ୍ଷା ବାଳିକାମାନଙ୍କ ମୁଣ୍ଡରେ

ବଳ୍ପତ ବାଳ ହୁଏ । ଏହାପରେ ବାଳକାମାନଙ୍କର ଯୋନିଦ୍ୱାର ଦେଇ ରଜଃସ୍ରାବ ଆରମ୍ଭ ହୁଏ ଯାହା ଶରୀର ଭିତରେ ସନ୍ତାନ ଉତ୍ପାଦନ କେନ୍ଦ୍ରଗୁଡ଼ିକ ବର୍ଦ୍ଧିତ ହେବାର ସୂଚନା ଦିଏ । କିଶୋରୀମାନଙ୍କ ଦୁଇ ସ୍ତନର ମାଂସପିଣ୍ଡୁଳା ସମାନଭାବରେ ବୃଦ୍ଧି ପାଏ ନାହିଁ; କିନ୍ତୁ ସ୍ତନ ଓ ଯୋନି ଉନ୍ନତ ହୋଇ ନୂଆ ଭାବ ଜାତ କରାଏ ।

ବାହ୍ୟ ଶରୀରରେ ଏହିପରି ଲକ୍ଷଣମାନ ଦେଖାଗଲାବେଳେ ଶରୀର ଭିତରେ ମଧ୍ୟ ପରିବର୍ତ୍ତନ ଘଟେ । ଶରୀର ଭିତରେ କିଶୋର ଗ୍ରନ୍ଥି (Thymus Glands) ଓ ଯୌବନ ଗ୍ରନ୍ଥି (Puberty Glands) ରହେ । କୈଶୋର ଅବସ୍ଥାର ଶେଷ ପର୍ଯ୍ୟନ୍ତ କିଶୋର ଗ୍ରନ୍ଥି କାର୍ଯ୍ୟ କରେ । ଏହି ଗ୍ରନ୍ଥିର ଉପସ୍ଥିତି ଯୋଗୁଁ ବିନା ଶୁକ୍ରକ୍ଷୟରେ କିଶୋର ଯୌନତୃପ୍ତି ଲାଭ କରେ । ଯୌବନର ଆରମ୍ଭରେ ଅର୍ଥାତ୍ ପନ୍ଦର ବର୍ଷ ବୟସବେଳକୁ ଏହି ଗ୍ରନ୍ଥିରୁ ରସ ଉତ୍ପାଦନ କମିଆସି କ୍ରମେ କ୍ରମେ ବନ୍ଦ ହୋଇଯାଏ । କୌଣସି କାରଣରୁ ଠିକ୍ ସମୟ ପୂର୍ବରୁ ଏହି ଗ୍ରନ୍ଥିର ଶକ୍ତି କମିଗଲେ ବା ବନ୍ଦ ହୋଇଗଲେ କିଶୋରମାନଙ୍କ ଶରୀରର ଅଙ୍ଗ ପ୍ରତ୍ୟଙ୍ଗ ବର୍ଦ୍ଧିତ ହୁଏ ନାହିଁ । ଡାକ୍ତରମାନଙ୍କ ମତରେ କେତେକ ବାମନ ହୋଇ ରହିବାର ଏହା ଗୋଟିଏ ପ୍ରଧାନ କାରଣ ।

ପ୍ରଥମ ଯୌବନର ଆରମ୍ଭରେ ଯୌନ ଯନ୍ତ୍ରଗୁଡ଼ିକ ପୂର୍ଣ୍ଣାଙ୍ଗ-ପ୍ରାପ୍ତ ହୁଏ, ଅର୍ଥାତ୍ ପୁରୁଷରେ ଶୁକ୍ରକୋଷ ଓ ନାରୀମାନଙ୍କର ଡିମ୍ବକୋଷ ବର୍ଦ୍ଧିତ ହୁଏ । ଯୌନଯନ୍ତ୍ରଗୁଡ଼ିକର ପୂର୍ଣ୍ଣାଙ୍ଗପ୍ରାପ୍ତି ପରେ ନାରୀମାନଙ୍କ ଋତୁସ୍ରାବ ଓ ପୁରୁଷମାନଙ୍କର ଶୁକ୍ର ନିର୍ଗମନ ହୋଇଥାଏ । ଏହି ସମୟରେ ଶରୀର ଭିତରେ ଥିବା ଅନେକ ଗ୍ରନ୍ଥି ବର୍ଦ୍ଧିତ ହୋଇ କ୍ରିୟାଶୀଳ ହୁଅନ୍ତି ଏବଂ ସେହି ଗ୍ରନ୍ଥିମାନଙ୍କରୁ ରସ ଜାତ ହୁଏ । ସେହେତୁ ଏହି ଗ୍ରନ୍ଥିମାନଙ୍କ ଉପରେ ଯୌନକ୍ଷମତା ବା ଦକ୍ଷତା ନିର୍ଭର କରେ ।

ପ୍ରଥମ ଯୌବନ ପରେ ହିଁ ପ୍ରକୃତ ଯୌବନ ଆସେ । ଯୌବନ ଆରମ୍ଭ ହେଲେ ବାଳକାପକ୍ଷେ ସ୍ୱାଭାବିକ ଲଜ୍ଜା ଜାତ ହୁଏ ଏବଂ ନେତ୍ର ଚଞ୍ଚଳ ହୁଏ । ଗଣ୍ଡସ୍ଥଳ ଓ ଶରୀରର ଅନ୍ୟ କେତେକ ଅଂଶ ପୂର୍ଣ୍ଣପ୍ରାପ୍ତିରେ ସ୍ଫୀତ ହୁଅନ୍ତି । ଏହି ବୟସରେ ବାଳକାମାନେ ଶରୀରର ସମସ୍ତ ଅଂଶକୁ ସଯତ୍ନରେ ଲୁଚାଇ ରଖିବାକୁ ବା ଆବୃତ କରି ରଖିବାକୁ ଚେଷ୍ଟା କରନ୍ତି ।

ବାଳକମାନଙ୍କ ପକ୍ଷେ ପ୍ରଥମ ଯୌବନରେ ଯୌନଯନ୍ତ୍ର ବା ଶୁକ୍ର-କୋଷ ଦୁଇଟି ବର୍ଦ୍ଧିତ ହେଲେ ହେଁ କେବଳ ଯୌବନାବସ୍ଥାରେ ସେ ଦୁଇଟି ପୂର୍ଣ୍ଣାଙ୍ଗପ୍ରାପ୍ତ ହୁଅନ୍ତି ଓ ସନ୍ତାନ ଉତ୍ପାଦନ କାର୍ଯ୍ୟରେ କ୍ଷମ ହୁଅନ୍ତି । କିନ୍ତୁ ପ୍ରଥମ ଯୌବନରେ ସେଗୁଡ଼ିକ ବର୍ଦ୍ଧିତ ହୋଇ ପୂର୍ଣ୍ଣାଙ୍ଗପ୍ରାପ୍ତ ହେଉଥିବା ଲକ୍ଷଣମାନ ଦେଖାଦିଏ । ଏହି ବୟସରେ ସ୍ୱରଯନ୍ତ୍ରର ବୃଦ୍ଧି ହେତୁ କଣ୍ଠସ୍ୱର ମଧ୍ୟ ଗାଢ଼ ହୋଇଆସେ । ଶରୀରର ହାଡ଼ ଓ ପେଶୀ ପ୍ରଭୃତି ସୁଦୃଢ଼ ହୁଏ । ଲିଙ୍ଗ ଓ ଶୁକ୍ରକୋଷ ବା ଅଣ୍ଡକୋଷ ବୃଦ୍ଧିଲାଭ କରେ ।

ଏହି ସମୟରେ ଉଭୟଙ୍କ ମନରେ ପ୍ରେମ ସମ୍ବନ୍ଧରେ କେତେକ ଭାବଗତ ଅସ୍ପଷ୍ଟ ଧାରଣା ଜାତ ହୁଏ । ତେଣୁ ସେମାନେ ପ୍ରେମ ଆସ୍ୱାଦନ ପାଇବାକୁ ବ୍ୟଗ୍ର ହୋଇଉଠନ୍ତି, ଯାହାର ପ୍ରଧାନ ଲକ୍ଷ୍ୟ ହେଉଛି ଯୌନ ମିଳନ । ଏହି ବୟସର କିଶୋରୀ ମଧ୍ୟ ନିଜର ମନମୁତାବକ ପୁରୁଷ ଓ ପୁରୁଷର ସ୍ପର୍ଶ ପାଇବା ପାଇଁ ଲାଳାୟିତ ହୁଏ । ଋତୁ ପରିବର୍ତ୍ତନ, ସୁନ୍ଦର ଦୃଶ୍ୟ ପ୍ରଭୃତି ପାଇଁ ମନରେ ଗୋଟିଏ ଅଜଣା ଆକର୍ଷଣ ଜନ୍ମେ ।

ସୁହୁଦୀମାନଙ୍କର ଧର୍ମ ଅନୁଯାୟୀ ରବି 'ଜୋସେ' କହିଛନ୍ତି— ସ୍ତନମୁଣ୍ଡିର ତଳକୁ ଭାଙ୍ଗି ରହିବା ଓ ସାମାନ୍ୟ ହସ୍ତସ୍ପର୍ଶରେ ସ୍ତନମୁଣ୍ଡି ଭିତରକୁ ପଶିଯାଇ ସ୍ପର୍ଶମୁକ୍ତ ହେବାମାତ୍ରେ ପଦାକୁ ବାହାରି ଆସିବା କିଶୋରୀର ଯୌବନରେ ପଦାର୍ପଣ କରିବାର ଗୋଟିଏ ଲକ୍ଷଣ । ପୁଣି ଯୋନିମଣ୍ଡଳ (ଚର୍ବି ଜମିଯିବା ଯୋଗୁଁ ବା ସେଠାରେ ଚର୍ବିପଟିର ଆରମ୍ଭ ହେବା ଯୋଗୁଁ) ସାମାନ୍ୟ ଫୁଲି ଉଠିବା ଲକ୍ଷଣ ଦେଖାଯାଏ । ସ୍ତନମୁଣ୍ଡି ଠିଆ ହୋଇ ରହିବା ଓ ମୁଣ୍ଡିର ଚାରିପଟେ ଅର୍ଥାତ୍ ସ୍ତନାଗ୍ରରେ କଳାଚକ୍କି ହେଶିବା ଯୌବନ ଆରମ୍ଭର ଲକ୍ଷଣ ବୋଲି ଧରିଯାଇ ପାରେ । ତାଲମୁଡ ଧର୍ମଗ୍ରନ୍ଥରେ ଆହୁରି ଲେଖାଅଛି ଯେ ପ୍ରଥମ ରଜଃସ୍ରାବ ବେଳେ ଗର୍ଭାଶୟ ଓ ଗର୍ଭାଶୟ ଅଞ୍ଚଳରେ ବ୍ୟଥା, ଦେହ ଥରିବା, ମୁଣ୍ଡ ଓ ଦେହହାତ ଭାରି ଲାଗିବା, ବାନ୍ତି ପ୍ରଭୃତି ଅନୁଭୂତ ହୁଏ ।

ଏହି ବୟସରେ ଶରୀରର ବିଭିନ୍ନ ଯୌନ ଗ୍ରନ୍ଥିମାନଙ୍କରୁ ଯେଉଁସବୁ ରସ ନିଃସୃତ ହୋଇ ରକ୍ତରେ ମିଶି ଶରୀରର ବିଭିନ୍ନ ଅଙ୍ଗରେ ସଞ୍ଚରିଯାଏ, ତାର ଫଳରେ ଯୌନ ପ୍ରବୃତ୍ତି ଜାଗି ଉଠେ । ପ୍ରବୃତ୍ତିର ତୃପ୍ତି ନିମନ୍ତେ ସେମାନେ ସଙ୍ଗ ଖୋଜିବା ଆରମ୍ଭ କରନ୍ତି । ଦିନକୁ ଦିନ

ଏହି ପ୍ରବୃତ୍ତି ବୃଦ୍ଧି ପାଏ । ଯୁବକମାନଙ୍କ ବ୍ରହ୍ମଚର୍ଯ୍ୟ, ଯୁବତୀମାନଙ୍କ ସତୀତ୍ୱ-ରକ୍ଷା ଇଚ୍ଛା, ଘରର ପ୍ରତିଷ୍ଠା ବା ବଂଶମର୍ଯ୍ୟାଦା ରକ୍ଷା କରିବା ଇଚ୍ଛା, ନୀତିଶିକ୍ଷା ପ୍ରଭୃତି ସତ୍ତ୍ୱେ ଦିନକୁ ଦିନ ଏହି ପ୍ରବୃତ୍ତି ବୃଦ୍ଧି ପାଇ ଯୁବକ ଓ ଯୁବତୀମାନେ ପରସ୍ପର ପ୍ରତି ଆକୃଷ୍ଟ ହୋଇଥାନ୍ତି ।

ଏହି ବୟସରେ ଯୁବତୀ କୌଣସି ଯୁବକ ପ୍ରତି ଆକୃଷ୍ଟ ହୋଇଥିଲେ ବା ଯୁବକ କୌଣସି ଯୁବତୀ ପ୍ରତି ଆକୃଷ୍ଟ ହୋଇଥିଲେ ମଧ୍ୟ ତାହା ପ୍ରକାଶ କରିବାକୁ ଲଜ୍ଜାବୋଧ କରନ୍ତି ଓ ପଚାରିଲେ ମଧ୍ୟ ତାହା ସ୍ୱୀକାର କରନ୍ତି ନାହିଁ । କିନ୍ତୁ ଏହାପରି କେତେଦିନ ପରେ ଏପରି ସମୟ ପହଞ୍ଚେ ଯେତେବେଳେ ଏହି ପ୍ରବୃତ୍ତି ବିବେକକୁ ଚପିଯାଇ ତୃପ୍ତିନପ୍ରାପ୍ତିରେ ଶରୀର ଶିହରି ଉଠି ଯୌନତୃପ୍ତିର ଆରମ୍ଭ ହୁଏ । ଏହି ବୟସରେ ହିଁ କିଶୋର କିଶୋରୀ ଉଭୟେ ଏକାକୀ ରହି ରସାଳ ସ୍ୱପ୍ନର କଳ୍ପନା କରିଥାନ୍ତି । ସେଥିପ୍ରତି କାହାର ଦୃଷ୍ଟି ଆକର୍ଷଣ ହେଲେ ସେମାନେ ଲଜ୍ଜା ଅନୁଭବ କରିଥାନ୍ତି ।

ଶୀତପ୍ରଧାନ ଦେଶମାନଙ୍କରେ ସାଧାରଣତଃ ବାଳିକାମାନେ ତେର କିମ୍ବା ଚଉଦ ବର୍ଷ ବୟସରେ ପ୍ରଥମ ଯୌବନରେ ପଦାର୍ପଣ କଲେ ମଧ୍ୟ ସେମାନେ ଯୌନକ୍ରିୟା ଓ ମାତୃତ୍ୱ ଗ୍ରହଣ କରିବା ନିମନ୍ତେ ଅଠର ବା ବାଇଶି ବର୍ଷ ବୟସ ପର୍ଯ୍ୟନ୍ତ ଉପଯୁକ୍ତ ହୋଇ ନ ଥାନ୍ତି । କାରଣ ଯୌନଗ୍ରନ୍ଥି ଓ ତତ୍‌ସମ୍ବନ୍ଧୀୟ ଅଙ୍ଗଗୁଡ଼ିକ ଆସ୍ତେ ଆସ୍ତେ ବର୍ଦ୍ଧିତ ହେଉଥିବା ଯୋଗୁଁ ପୂର୍ଣ୍ଣାଙ୍ଗପ୍ରାପ୍ତି ନିମନ୍ତେ ସମୟ ନିଏ । କେତେକ ବିଶେଷଜ୍ଞଙ୍କ ମତରେ କୈଶୋର ଅବସ୍ଥାରେ ଶରୀର ଉପରେ ଉଭୟ ଲିଙ୍ଗର ସମପ୍ରଭାବ ରହେ । ସେହି ଅବସ୍ଥାରେ ବାଳକ ଓ ବାଳିକାମାନେ ସାଙ୍ଗସାଥୀ ଖୋଜିଲେ ମଧ୍ୟ କିଶୋରୀମାନଙ୍କ ପ୍ରତି ଆକୃଷ୍ଟ ନ ହୋଇ ସମଭାବାପନ୍ନ କିଶୋରମାନଙ୍କ ପ୍ରତି ଆକୃଷ୍ଟ ହେଉଥିବା ଦେଖାଯାଏ । ଏହି ଅବସ୍ଥା କେବଳ ଅଳ୍ପ ଦିନ ପାଇଁ ରହେ । ତା ପରେ ଶିକ୍ଷା ଓ ବେଷ୍ଟନୀର ପ୍ରଭାବ ଦ୍ୱାରା କିଶୋରମାନଙ୍କର ଏହି ଅନୁରକ୍ତି କିଶୋରୀ-ମାନଙ୍କ ପ୍ରତି ଚାଳିତ ହୁଏ ଓ ଭବିଷ୍ୟତ ଯୌନ ଜୀବନ ସ୍ୱାଭାବିକ ଭାବରେ ଗତି କରେ । ଯୌବନର ଆରମ୍ଭରେ ଶରୀରରେ ଯେଉଁ ପରିବର୍ତ୍ତନ ଆସେ, ସେଥିପରେ କିଶୋରର ଜନନେନ୍ଦ୍ରିୟ ବର୍ଦ୍ଧିତ ହେବା ଯୋଗୁଁ ଶୁକ୍ରକୋଷରୁ

ଶୁକ୍ରାଣୁ ଜାତ ହେବା ଆରମ୍ଭ ହୁଏ ଯାହାଦ୍ୱାରା ସେ ଯୁବତୀର ଗର୍ଭସଞ୍ଚାର କରିବା ନିମନ୍ତେ ସକ୍ଷମ ହୁଏ ।

ଯଦି କୌଣସି କାରଣରୁ କୈଶୋର ଅବସ୍ଥାର ଅନ୍‌ରକ୍ତ ବା ଗତି ସ୍ୱାଭାବିକ ଭାବରେ ନ ବଦଳି ଦୀର୍ଘଦିନ ପର୍ଯ୍ୟନ୍ତ ସେହିପରି ରହେ ତାହା ହେଲେ ବାପାମା'ମାନେ ସେଥିପ୍ରତି ସତର୍କ ହେବା ଉଚିତ । କାରଣ ଏହା ଭବିଷ୍ୟତରେ କିଶୋରର ସ୍ୱାଭାବିକ ଯୌନ ଜୀବନରେ ବାଧା ସୃଷ୍ଟି କରିପାରେ ।

କେତେକ ବାଳକଙ୍କର ଶୁକ୍ରକୋଷ ଅତ୍ୟଧିକ ମାତ୍ରାରେ ବୃଦ୍ଧି ପାଇବା ଯୋଗୁଁ ଶରୀରରେ କମ୍ ବୟସରେ ଯୌବନର ଲକ୍ଷଣ ପ୍ରକାଶ ପାଏ, ଯଥା—ବାଳ ଉଠିବା, ସ୍ୱର ଭାଙ୍ଗିବା, ଲିଙ୍ଗର ଲମ୍ବା ପ୍ରଭୃତି । ଏହିପରି ଗୋଟିଏ ଚାରିବର୍ଷ ବୟସର ବାଳକଠାରେ ଅଠର ବର୍ଷ ବୟସ ଯୁବକର ଲକ୍ଷଣ ପ୍ରକାଶ ପାଇଥିବା ଦେଖାଯାଇଛି । କିନ୍ତୁ ମାନସିକ ପ୍ରବୃତ୍ତି ବର୍ଦ୍ଧିତ ହୋଇ ନ ଥିବା ଯୋଗୁଁ ଯୌନ ପ୍ରବୃତ୍ତି ଓ ଉତ୍ତେଜନା ନ ରହିଥିବା ଦେଖାଯାଇଛି ।

୧୮୭୨ ମସିହାରେ ଯୌନବିତ୍ ଭିରଚ୍ଚେ (Virchow) କହିଥିଲେ ଯେ ସନ୍ତାନ ପ୍ରସବ କରିବା ଶକ୍ତି ଯୋଗୁଁ ପୁରୁଷଠାରୁ ନାରୀ ଭିନ୍ନ । ଯେଉଁ ମନୁଷ୍ୟଠାରେ ଏହି ଶକ୍ତି ଥାଏ ତାହାକୁ ନାରୀ କୁହାଯାଏ । ଶରୀର, ଭାବନା, ଖାଦ୍ୟ, ଶରୀରର ସ୍ନାୟୁବିକ କେନ୍ଦ୍ର, ସୁଗୋଲ ନିତମ୍ବ, ସ୍ତନର ଆକାର, କଣ୍ଠସ୍ୱର, ମୁଣ୍ଡର ଲମ୍ବା ବାଳ, ମୁହଁରେ ଓ ଶରୀରରେ ବାଳ ନ ଉଠିବା (ଲୋମ ଓ ଦାଢ଼ି ନ ଉଠିବା), ସାମାନ୍ୟ କଥାରେ ବିଚଳିତ ହେବା ସ୍ୱଭାବ, କୋମଳ ସ୍ୱଭାବ, ସହିଷ୍ଣୁତା, ବରାବର ନିୟମିତ କାର୍ଯ୍ୟରେ ଲାଗିଥିବା ପ୍ରବୃତ୍ତି ବା ଯେଉଁ ସବୁ ଗୁଣ ଯୋଗୁଁ ନାରୀ ପ୍ରଶଂସିତ, ସେହି ସବୁ ଗୁଣ କେବଳ ଡିମ୍ବକୋଷ ଶରୀର ଭିତରେ ରହିଥିବା ଯୋଗୁଁ ସେ ପାଇଥାଏ । ଅର୍ଥାତ୍ ଏହି ସବୁ ଗୁଣ ଡିମ୍ବକୋଷର ଉପସ୍ଥିତି ଉପରେ ନିର୍ଭର କରେ । ଶରୀର ଭିତରୁ ଡିମ୍ବକୋଷକୁ ବାହାର କରିଦେଲେ ତାହାର ଶରୀରର ଲାଳିତ୍ୟ ଚାଲିଯାଇ ଶରୀର ଭିତରେ ମୋଟା ହାଡ଼ର ଗଠନ ଆରମ୍ଭ ହୁଏ । ନିଶ ଦାଢ଼ି ମୁହଁରେ ଦେଖାଦିଏ । ସ୍ୱର କର୍କଶ ହୁଏ । ସ୍ତନ ଦୁଇଟି ଶୁଖିଯାଇ ପ୍ରାୟ ସମତଳ ଆକାର ଧାରଣ କରେ । ପୁରୁଷଙ୍କ ପରି ସ୍ୱାର୍ଥପରତା ଓ ପରଶ୍ରୀକାତରତା ସ୍ୱଭାବ ଆରମ୍ଭ ହୁଏ ।

ଆକସ୍ମିକ ଦୁର୍ଘଟଣାରୁ ବା ଅସ୍ତ୍ରୋପଚାର କରି ବା ଅନ୍ୟ କୌଣସି କାରଣରୁ ପୁରୁଷର ଶୁକ୍ରକୋଷ ଓ ନାରୀର ଶରୀରରୁ ଡିମ୍ବକୋଷ ବାହାର ହୋଇଗଲେ ସେମାନଙ୍କ ଶରୀରରେ ବହୁତ ପରିବର୍ତ୍ତନ ଆସେ । ନାରୀର ଶରୀର ଭିତରୁ ଡିମ୍ବକୋଷ ବାହାର ହୋଇଗଲେ ତାହାର ସ୍ୱଭାବ ବଦଳିଯାଏ । ପୁରୁଷମାନଙ୍କର ଅଣ୍ଡକୋଷ ବାହାରିଗଲେ ସ୍ୱର ବଦଳି-ଯାଇ ମୁହଁରେ ଦାଢ଼ି ଉଠେ ନାହିଁ । ବୈଜ୍ଞାନିକ ଷ୍ଟାନସି (Steinch) ବେଙ୍ଗମାନଙ୍କ ଉପରେ ପରୀକ୍ଷା କରି ଦେଖିଲେ ଯେ ସେଗୁଡ଼ିକର ଯୌନଗ୍ରନ୍ଥିରୁ ଏକରକମ ରସ ନିଃସୃତ ହୁଏ ଯାହା କି ଶରୀରରେ ଯୌନ-ଉତ୍ତେଜନା ସୃଷ୍ଟି କରିଥାଏ । ଏହି ରସକୁ ଅନ୍ୟ ଏକ ବେଙ୍ଗର ଦେହରେ ପ୍ରବେଶ କରାଇଲେ ସେହି ବେଙ୍ଗର ମଧ୍ୟ ଯୌନ ଉତ୍ତେଜନା ଆସେ । ଏହାପରେ ଷ୍ଟିନ୍‌ସି ମୂଷାମାନଙ୍କ ଉପରେ ପରୀକ୍ଷା କରିଥିଲେ । ମୂଷା-ମାନଙ୍କର ଶୁକ୍ରକୋଷ ଓ ଡିମ୍ବକୋଷ ଅସ୍ତ୍ରୋପଚାର ଦ୍ୱାରା ବାହାର କରିଦେବାରେ ଦେଖାଗଲା ଯେ ସେଗୁଡ଼ିକର ବୟସ ବୃଦ୍ଧି ହେଲେ ମଧ୍ୟ ଆକାର କିମ୍ବା ଓଜନ ବୃଦ୍ଧି ହେଲା ନାହିଁ । କିନ୍ତୁ ଶୁକ୍ରକୋଷକୁ ନେଇ ଶରୀରର ଅନ୍ୟ ଏକ ସ୍ଥାନରେ ଲଗାଇ ଦେବା ଫଳରେ ତାହାର ଉତ୍ପାଦନ ଶକ୍ତି ନ ରହିଲେ ସୁଦ୍ଧା ସେ ଆକାର ଓ ଓଜନରେ ବୃଦ୍ଧି ପାଇଥିଲା । କିନ୍ତୁ ଏହା ଫଳରେ ଶୁକ୍ରକୋଷରୁ ଆଉ ଶୁକ୍ରାଣୁ ଜାତ ହୋଇ ନ ଥିଲେ ମଧ୍ୟ ମୂଷାଗୁଡ଼ିକର ପୁଂ-ସ୍ୱଭାବ ବରାବର ରହିଲା ।

ଏଥିରୁ ଜଣାଯିବ ଯେ ଶୁକ୍ରକୋଷ ଦୁଇଟିର କାର୍ଯ୍ୟ ହେଉଛି— (କ) ଶୁକ୍ରାଣୁ ତିଆରି କରିବା, ଓ (ଖ) ଅନ୍ୟ ଏକ ରକମ ରସ ନିଃସୃତ କରିବା ଯାହା କି ରକ୍ତରେ ମିଶି ସଞ୍ଚାର ହେବା ମାତ୍ରେ ଶରୀରକୁ ଉପଯୁକ୍ତ ସ୍ୱଭାବ ଦେବ ।

ପୁରୁଷର ଶୁକ୍ରକୋଷ ପରି ନାରୀଶରୀର ଭିତରେ ଡିମ୍ବକୋଷ ମଧ୍ୟ କାର୍ଯ୍ୟ କରିଥାଏ । ଶୁକ୍ରକୋଷ ଓ ଡିମ୍ବକୋଷର ଯେଉଁ କୋଷ-ମାନଙ୍କରୁ ଏହି ରସ ନିଃସୃତ ହୁଏ, ତାହାକୁ ଯୌବନ ଗ୍ରନ୍ଥି (Puberal Glands) କହନ୍ତି ।

ଏହା ପରେ ଷ୍ଟିନ୍‌ସି ପୁଂ-ମୂଷା ଓ ମାଈ ମୂଷାମାନଙ୍କ ଶରୀରରୁ ଶୁକ୍ରକୋଷ ଓ ଡିମ୍ବକୋଷ ବାହାର କରିଦେଇ ଯୌନ-ଅଙ୍ଗହୀନ କରି

ଦେଲେ । ତାପରେ ପୂର୍ବ ପୁଂ-ମୂଷାର ଶରୀରରେ ଡମ୍ବକୋଷ ଓ ମାଈ-ମୂଷାର ଶରୀରରେ ଶୁକ୍ରକୋଷ ଲଗାଇ ଦେଇଥିଲେ । ଦେଖାଗଲା ଯେ ପୂର୍ବର ପୁଂ-ମୂଷାର ଶରୀରରେ ଡମ୍ବକୋଷ ଲଗାଇବା ଫଳରେ ତାହାର ଉତ୍ପାଦନ ଯନ୍ତ୍ର ଆଉ ବର୍ଦ୍ଧିତ ହେଲା ନାହିଁ । ଏଥିରୁ ବୁଝାଯିବ ଯେ ଡମ୍ବକୋଷରୁ ଯେଉଁ ରସ ନିଃସୃତ ହୁଏ ତାହା ପୁରୁଷ ଶରୀର ନିମନ୍ତେ ଉପଯୁକ୍ତ ନୁହେ । ଶକ୍ତି ଓ ଶାରୀରିକ ଗଠନ ଅନୁଯାୟୀ ପୁଂ-ମୂଷା ମାଈ ମୂଷାଠାରୁ ଓଜନରେ ପ୍ରାୟ ତେପନ ଗ୍ରାମ ଅଧିକ ।

ପୂର୍ବର ଅଣ୍ଡିରା ମୂଷାର ଶରୀରରୁ ଶୁକ୍ରକୋଷ ବାହାର କରିଦେଇ ତା ବଦଳରେ ଡିମ୍ବକୋଷ ଲଗାଇ ଦେବା ଫଳରେ ସେଗୁଡ଼ିକର ଆକାର ଶ୍ରେଷ୍ଠ, ଶରୀର ଚକ୍‌କଣ ଓ କୋମଳ ହେଲା ଏବଂ ସେମାନେ ଛୁଆ-ମାନଙ୍କୁ ଦୁଧ ଖୁଆଇଲେ । ସେହିପରି ପୂର୍ବର ମାଈ ମୂଷାମାନଙ୍କ ଶରୀରରୁ ଡମ୍ବକୋଷ ବାହାର କରି ଦେଇ ଶୁକ୍ରକୋଷ ଲଗାଇବା ଫଳରେ ସେଗୁଡ଼ିକର ପୁଂ-ସ୍ୱଭାବ ଆରମ୍ଭ ହୋଇଥିଲା । ସେଗୁଡ଼ିକ ସ୍ରାବ ହେଉଥିବା ମାଈ ମୂଷାଙ୍କୁ ଅନ୍ୟ ମୂଷାମାନଙ୍କ ଠାରୁ ବାରି ପାରୁଥିଲେ ଓ ସ୍ରାବ ହେଉଥିବା ମାଈ ମୂଷାଙ୍କ ପଛରେ ଗୋଡ଼ାଇ ପୁଂ-ମୂଷାଙ୍କ ପରି ଯୌନ-ସଙ୍ଗମ ନିମନ୍ତେ ଚେଷ୍ଟା କରିଥିଲେ । ଅଣ୍ଡିରା ମୂଷାଙ୍କ ସହିତ ସେଗୁଡ଼ିକ ଏକାଠି ରହୁଥିଲେ । ଏହାପରେ ପ୍ରାଣୀତତ୍ତ୍ୱବିତ୍ ବ୍ରେନ୍‌ଡ଼ିସ୍ (Brandes) ପଶୁ ଓ ପକ୍ଷୀମାନଙ୍କ ଉପରେ ପରୀକ୍ଷା ଆରମ୍ଭ କରି ସେହି ରକମ ଫଳ ଲକ୍ଷ୍ୟ କରିଥିଲେ ।

ଶରୀରରେ ଲୋମ ଉଠିବା, ମୁହଁରେ ନିଶ ଓ ଦାଢ଼ି ଉଠିବା ପୁରୁଷର ଲକ୍ଷଣ । କିଶୋର ଅବସ୍ଥାକୁ ଆସିଲେ ଯେପରି ଶରୀରରେ ଲୋମ ଉଠେ ସେହିପରି କିଶୋରୀ ଅବସ୍ଥାରେ ପହଞ୍ଚିଲେ ବାଳିକାମାନଙ୍କର ଯୋନିମଣ୍ଡଳ ଓ କାଖରେ ଲୋମ ଉଠିବା ଆରମ୍ଭ କରେ । ଯୋନି-ମଣ୍ଡଳରେ ପ୍ରଥମେ ଭଗୌଷ୍ଠର ଉପରକୁ ଲୋମ ଉଠେ । ଏହା ପ୍ରଥମେ ପାତଳରେ ଉଠି ପରେ ଯୋନିମଣ୍ଡଳରେ ଯୋନିର ଚାରିପଟେ ତ୍ରିକୋଣାକାର ଆୟତନରେ ବୃଦ୍ଧି ପାଏ । ପ୍ରଥମେ ଏଠାର ଲୋମଗୁଡ଼ିକ ପାତଳ ହୋଇଉଠେ ଏବଂ ପରେ ବଢ଼ି କୁଞ୍ଚ କୁଞ୍ଚ ହୋଇ ଘଞ୍ଚ

ହୋଇଯାଏ । ଲିଙ୍ଗମଣ୍ଡଳ ଠାରୁ ଯୋନିମଣ୍ଡଳରେ ଲୋମ ଉଠିବାରେ କେତେକ ପ୍ରଭେଦ ଦେଖାଯାଏ । ଯୋନିମଣ୍ଡଳରେ ଲୋମ ଉଠିବାର ଉପର ଅଂଶ ଗୋଟିଏ ସରଳରେଖା ସଦୃଶ ଦେଖାଯାଏ । ଏହି ସରଳରେଖା ସୀମାର ତଳଆଡ଼କୁ ଲୋମ ବୃଦ୍ଧି ହୁଏ । ଯୌବନର ଆରମ୍ଭବେଳକୁ ଯୋନିମଣ୍ଡଳର ଲୋମ ଥିବା ଅଂଶ ତ୍ରିକୋଣାକାର ଧାରଣ କରେ । ଏହି ତ୍ରିକୋଣାକାରର ବାହୁ ଦୁଇଟି ପାର୍ଶ୍ୱ ଜଙ୍ଘସନ୍ଧିରେ ଶେଷ ହୁଏ ।

କିନ୍ତୁ ପୁରୁଷମାନଙ୍କ ଲିଙ୍ଗମଣ୍ଡଳ ଲୋମର ଉପର ସୀମା ଯୋନି-ମଣ୍ଡଳର ଲୋମପରି ସରଳରେଖାରେ ଶେଷ ନ ହୋଇ କ୍ରମେ ପାତଳ ହୋଇ ନାଭି ପର୍ଯ୍ୟନ୍ତ ଉଠିଥାଏ ଓ ଶେଷରେ ଶରୀରର ଲୋମ ସହିତ ମିଶିଯାଏ । କ୍ୱଚିତ୍ କୃଷ୍ଣବର୍ଣ୍ଣ ବା ସାବର୍ଣ୍ଣ ନାରୀମାନଙ୍କର ଯୋନିମଣ୍ଡଳର ଲୋମ ନାଭି ପର୍ଯ୍ୟନ୍ତ ଉଠିବା ଦେଖାଯାଏ । କିନ୍ତୁ ଏହି ଲୋମ ବହୁତ ପାତଳ ହୁଏ । କେତେକ କୃଷ୍ଣବର୍ଣ୍ଣ ବା ସାବର୍ଣ୍ଣିଆ ନାରୀମାନଙ୍କ ସ୍ତନ-ମୁଣ୍ଡିରେ ସମୟେ ସମୟେ ଚାରି ବା ପାଞ୍ଚଟି ପର୍ଯ୍ୟନ୍ତ ଲୋମ ଉଠିବା ଦେଖାଯାଏ ।

ସାଧାରଣତଃ କୃଷ୍ଣକାୟ ନାରୀମାନଙ୍କ କାଖ ଓ ଗୋଡ଼ର ନଳଗଣ୍ଠି ହାଡ଼ ଉପରେ ଲୋମ ଉଠିବା ଛାଡ଼ିଦେଲେ ଶରୀରର ଅନ୍ୟ ଅଂଶରେ ଲୋମ ଉଠେ ନାହିଁ । ଗୋରୀମାନଙ୍କ ଅପେକ୍ଷା କୃଷ୍ଣକାୟ ନାରୀମାନଙ୍କ ଶରୀରରେ ଅଧିକ ଲୋମ ଉଠେ । ଯଦି ନାରୀର ଶରୀରରେ କାଖ ଓ ଗୋଡ଼ ଛାଡ଼ି ଦେଲେ ଅନ୍ୟାନ୍ୟ ଅଂଶମାନଙ୍କରେ ମଧ୍ୟ ଲୋମ ଉଠିବା ଦେଖାଯାଏ ତାହାହେଲେ ସେହି ନାରୀର ନିଶ ସାମାନ୍ୟ ଉଠିବା ସମ୍ଭାବନା ରହେ । ଏହା ଦ୍ୱାରା ଜଣାଯିବ ଯେ ସେହି ନାରୀଠାରେ ପୁଂ-ସ୍ୱଭାବ କେତେକ ମାତ୍ରାରେ ରହିଛି । ଯୋନିମଣ୍ଡଳରେ ଲୋମ ଉଠିବା ପରେ କାଖରେ ଲୋମ ଉଠିବା ଆରମ୍ଭ କରେ । କାଖର ଲୋମ ଲିଙ୍ଗ-ମଣ୍ଡଳର ଲୋମ ଅପେକ୍ଷା ପାତଳ ରହେ । ଏହା କିଶୋର ଓ କିଶୋରୀ ଉଭୟଙ୍କଠାରେ ଏକା ରକମ ଦେଖାଯାଏ ।

ପ୍ରଥମ ଯୌବନରେ ପୌରୁଷର ଗର୍ବ ଯୁବକମାନଙ୍କୁ ଯୁବତୀମାନଙ୍କ ନିକଟକୁ ଟାଣିନିଏ । କିନ୍ତୁ ଲଜ୍ଜା, ଭୀରୁତା ଓ ଭଦ୍ରତା ସେଥିରେ ବାଧା ଦେଇଥାଏ । ସେହିପରି ଯୁବତୀମାନଙ୍କର ପ୍ରଥମ

ଯୌବନରେ ଅହଂକାର ଓ କୃତ୍ରିମ ପ୍ରେମ ରହେ । ପ୍ରଲୋଭନ ପ୍ରତି ସେମାନେ ଆକୃଷ୍ଟ ହୋଇଥାନ୍ତି । ଯୁବକମାନଙ୍କ ସହଯୋଗର ଇଚ୍ଛା ସେମାନଙ୍କ ଠାରେ ରହିଲେ ସୁଦ୍ଧା ଲଜ୍ଜା ଓ ନମ୍ରତା ସେଥିରେ ବାଧା ଦେଇଥାଏ । ଯୁବକଙ୍କଠାରେ କୌତୁକରେ ଉତ୍ତେଜନା ସୃଷ୍ଟି କରାଇବାକୁ ସେମାନେ ଆନନ୍ଦ ମଣନ୍ତି । କୌଣସି ଯୁବକ ସହିତ ଯୁବତୀର ଅନୁରକ୍ତି ବଢ଼ିଲେ ମଧ୍ୟ ସେ ନିଜର ସର୍ବସ୍ୱ ତ୍ୟାଗ କରିବାକୁ ଏହି ବୟସରେ ପ୍ରସ୍ତୁତ ହୁଏ ନାହିଁ । କିନ୍ତୁ ଯେଉଁ ଯୁବତୀମାନଙ୍କର ଯୌନାଙ୍ଗ ଅସାଧାରଣ ଭାବେ ବୃଦ୍ଧି ପାଇଥାଏ ସେହିଠାରେ ହିଁ ବ୍ୟତିକ୍ରମ ଦେଖାଯାଏ । ଏହି କାରଣରୁ କେତେକ ଯୁବତୀ ପ୍ରଥମ ଯୌବନରୁ ହିଁ ବେଶ୍ୟାବୃତ୍ତି ଅବଲମ୍ବନ କରିଥାନ୍ତି । ଯୌବନ ଆରମ୍ଭ ହେଲେ ଶରୀରର ଅଙ୍ଗରେଖା ସ୍ପଷ୍ଟ, ସ୍ତନ ଦୁଇଟି ପୃଥୁଳ ଓ ଉନ୍ନତ, ନିତମ୍ବ, ଚୌଡ଼ା ଓ ଯୋନି ବଡ଼ ହୋଇଯାଏ । ଏହି ସବୁ ଅଙ୍ଗର ସ୍ପର୍ଶରେ ସେ ସୁଖ ପାଏ ।

ଯୁବକମାନଙ୍କ ନିକଟରେ ପୁରୁଷତ୍ୱର ଗର୍ବ ଓ ଯୁବତୀମାନଙ୍କ ନିକଟରେ ପ୍ରଲୋଭନ ଓ କୃତ୍ରିମ ପ୍ରେମ ସେମାନଙ୍କ ପ୍ରଥମ ଯୌବନରେ ଦେଖାଯାଏ । ଏହା ସଙ୍ଗେ ସଙ୍ଗେ ସେମାନଙ୍କ ପ୍ରେମକ୍ଷେତ୍ରରେ ଦେଖାଦିଏ ଚେଷ୍ଟା, ଆକ୍ରମଣ ବା ଆରମ୍ଭ କରିବା, ସାମର୍ଥ୍ୟ ଦେଖାଇବା ପ୍ରବୃତ୍ତି । ସେହିପରି ଯୁବତୀମାନଙ୍କ ନିକଟରେ ଦେଖାଦିଏ ବଶତା ସ୍ୱୀକାର ବା ଆତ୍ମସମର୍ପଣ କରିବା ପ୍ରବୃତ୍ତି ଓ ନିମ୍ନପଦରେ ରହିବା ଇଚ୍ଛା ।

ପିଲାମାନଙ୍କର ବାପମା'ମାନଙ୍କ ଠାରୁ ଅଲଗା ରହିବା ପ୍ରବୃତ୍ତି ନ ଥାଏ । ସାଧାରଣତଃ ସେମାନେ ବାପମା'ଙ୍କ ଉପରେ ନିର୍ଭରଶୀଳ । ଭଲ ବା ମନ୍ଦ ବାଛିବା କିମ୍ବା କୌଣସି ବିଷୟରେ ନିଷ୍ପତ୍ତି ନେବା ସକାଶେ ସେମାନେ ବାପମା'ଙ୍କ ଉପରେ ନିର୍ଭର କରିଥାନ୍ତି । ବାପମା'ଙ୍କ ଆଦେଶ ଅମାନ୍ୟ କରିବାକୁ ସେମାନେ ଭୟ କରିଥାନ୍ତି । ବୟସବୃଦ୍ଧି ସଙ୍ଗେ ସଙ୍ଗେ ସେମାନଙ୍କର ମାନସିକ ପରିବର୍ତ୍ତନ ଆସେ । ପ୍ରଥମ ଯୌବନରେ ବାପମା-ମାନଙ୍କର ଆଦେଶକୁ ଅମାନ୍ୟ କରିବା ପ୍ରବୃତ୍ତି ମଧ୍ୟ ଦେଖାଦିଏ । ସେହି ସାମାନ୍ୟ ଜ୍ଞାନରେ ନିଜର ନିଷ୍ପତ୍ତି ବା ବିଚାର ଠିକ୍ ବୋଲି ସେମାନଙ୍କର ଧାରଣା ହୁଏ । ସାମାନ୍ୟ ସମାଲୋଚନା ସେମାନଙ୍କ ମନରେ ଆଘାତ ଦିଏ । ବାପମା'ଙ୍କ ଉପଦେଶଗୁଡ଼ିକ ପୁରୁଣା ବା ସନାତନ ମତ ବୋଲି ମନେ କରନ୍ତି । କ୍ରମେ କ୍ରମେ ନିଜର ସମସ୍ତ କାର୍ଯ୍ୟକୁ ସ୍ୱତନ୍ତ୍ର ଭାବେ ପରିଚାଳନା

କରିବା ସକାଶେ ପ୍ରବୃତ୍ତି ହୁଏ । ବାପମା ଓ କୁଟୁମ୍ବବନ୍ଧନ କ୍ରମେ ଶିଥିଳ ହୋଇଯାଏ । ବାଳିକାମାନଙ୍କ ପକ୍ଷେ ଏପରି ମାନସିକ ପରିବର୍ତ୍ତନ ଆସିଲେ ସୁଦ୍ଧା ତାହା ଶକ୍ତିଶାଳୀ ନୁହେଁ କିମ୍ବା ସେମାନଙ୍କର ମେତେ ଦୂର ସାହସ ନ ଥାଏ । ତେଣୁ ବାପମା'ଙ୍କ ଉପଦେଶ ବା ଆଦେଶକୁ ବିରୋଧ କରିବା ପ୍ରବୃତ୍ତି ସେମାନଙ୍କର ଥିଲେ ମଧ୍ୟ ତାହା କରିବାକୁ ସାହସ ରହେନ । ଏହିପରି ଅବସ୍ଥାରେ କିଶୋରୀ ବା ଯୁବତୀମାନେ ମାନସିକ ଯନ୍ତ୍ରଣା ଅନୁଭବ କରୁଥିବା ଦେଖାଯାଇଛି । ସାହସର ଅଭାବ ଓ ବଶତା ସ୍ୱୀକାର କରିବା ପ୍ରବୃତ୍ତି ଯୋଗୁ ସେମାନେ କଳହ ନ କରି ଅନିଚ୍ଛା ସତ୍ତ୍ୱେ ବାପମା'ଙ୍କ ଆଦେଶ ପାଳନ କରିଥାନ୍ତି ।

ଏହି ବୟସରେ ଯୁବକ ଓ ଯୁବତୀମାନଙ୍କର ଆଶାର ସୀମା ରହେ ନାହିଁ । ଜୀବନରେ ପ୍ରତ୍ୟେକେ ସୁଖ ଓ ଆନନ୍ଦ ଅନୁଭବ କରିବା, ସ୍ୱାଧୀନ ଭାବେ ଜୀବନଯାପନ କରିବା କଳ୍ପନାକୁ ବାସ୍ତବରେ ପରିଣତ କରିବା ପାଇଁ ଚେଷ୍ଟାରେ ରହନ୍ତି । ପୂର୍ଣ୍ଣତା ପାଇବା ଯାଏ ଏହି ସ୍ଥିତି କେତେ ବର୍ଷ ଧରି ଚାଲିଥାଏ । ଅନେକ ଡାକ୍ତରଙ୍କ ମତରେ ଯେଉଁ ବ୍ୟକ୍ତିଠାରେ ଯୌନପ୍ରବୃତ୍ତି ଶୀଘ୍ର ବିକାଶପ୍ରାପ୍ତ ହୁଏ, ତାହାର ମାନସିକ ବିକାଶ ମଧ୍ୟ ଶୀଘ୍ର ହୋଇଥାଏ ।

କିଶୋର କିଶୋରୀ ଅବସ୍ଥାରେ ପ୍ରତ୍ୟେକେ ନିଜର ସମବୟସ୍କ ସଙ୍ଗୀ ଖୋଜନ୍ତି । ଯଦି ଏହି ସଙ୍ଗୀ ଚରିତ୍ରହୀନ ହୋଇଥାଏ, ତେବେ ସେମାନେ ମଧ୍ୟ ନାନା ରକମ ମନ୍ଦ ଅଭ୍ୟାସ ଶିକ୍ଷା କରନ୍ତି । ସେହେତୁ ଏହି ସମୟରେ କିଶୋର ଓ କିଶୋରୀମାନେ ବିପଥଗାମୀ ହେବାର ବିଶେଷ ସମ୍ଭାବନା । ଯୁବକ ଅପେକ୍ଷା ଯୁବତୀ ଠାରେ ଏହି ବୟସରେ ଏହି ବିଶେଷତ୍ୱ ମଧ୍ୟ ଲକ୍ଷ୍ୟ କରାଯାଏ ଯେ ସେ ମାନସିକ ଓ ଶାରୀରିକ କ୍ଷେତ୍ରରେ ପୁରୁଷ ଠାରୁ ଭିନ୍ନ । ଯୁବକ ଅପେକ୍ଷା ଯୁବତୀ ସ୍ୱଭାବରେ କୋମଳ ଓ ତାର ଶରୀରରେ ଲାଳିତ୍ୟ, କମନୀୟତା, ମନରେ ଅଭିମାନ ଓ ଚଞ୍ଚଳତା ଦେଖାଯାଏ । ପୁଣି ଯୁବକମାନଙ୍କ ଅପେକ୍ଷା ଯୁବତୀମାନଙ୍କର ସ୍ନାୟୁ ଅଧିକ ସୂକ୍ଷ୍ମ, ବୋଧଶକ୍ତି ଅଧିକ ତୀକ୍ଷ୍ଣ ଏବଂ ସ୍ୱାଭାବିକ ବୁଦ୍ଧି ଓ ଧାରଣା ଅଧିକ ପ୍ରଖର । ଯୁବକ ଅପେକ୍ଷା ଯୁବତୀର ଜାନୁସନ୍ଧି ବେଶି ବିସ୍ତୃତ ଏବଂ ହାତ ଗୋଡ଼ ଅପେକ୍ଷାକୃତ ସାନ । ପ୍ରେମ ଯୁବକ ପକ୍ଷେ ଜୀବନର ଗୋଟିଏ ଘଟଣାବଳୀ, କିନ୍ତୁ ଯୁବତୀ ପକ୍ଷେ ତାହା ସମ୍ପୂର୍ଣ୍ଣ ଜୀବନ ହୋଇଉଠେ ।



## ସ୍ୱମୈଥୁନ ବା ହସ୍ତମୈଥୁନ

ଯୌନବିତ୍ ଫ୍ରୟେଡ୍ କହିଛନ୍ତି ଯେ ମନୁଷ୍ୟ ଜନ୍ମ ହେବା ସମୟଠାରୁ ତାହାର ଯୌନ ପ୍ରବୃତ୍ତି ରହିଥାଏ । ସେ କହନ୍ତି ଯେ ପିଲାମାନେ ଅଙ୍ଗୁଠି ଚୁପିବା ବା ଜନନେନ୍ଦ୍ରିୟ ସହିତ ଖେଳିବା ସେମାନଙ୍କର ଯୌନ-ତୃପ୍ତିର ଲକ୍ଷଣ । କିନ୍ତୁ ଆଜି କେତେକ ଯୌନବିତ୍ ଫ୍ରୟେଡ୍‌ଙ୍କ ସହିତ ଏକମତ ହୋଇପାରନ୍ତି ନାହିଁ । ସେମାନଙ୍କ ମତରେ ଏପରି ଖେଳିବା ପ୍ରଭୃତି କାର୍ଯ୍ୟ ସୁଖପ୍ରଦ ହେଲେ ମଧ୍ୟ ସେଥିରେ ଯୌନପ୍ରବୃତ୍ତିର କୌଣସି ସମ୍ବନ୍ଧ ନ ଥାଏ । ପୁଣି ପିଲମାନଙ୍କର ଶରୀରର କୌଣସି ନିର୍ଦ୍ଦିଷ୍ଟ ଅଂଶରେ ଯୌନଉତ୍ତେଜନା କେନ୍ଦ୍ର ନ ଥାଏ । ପିଲମାନେ ଅନେକ ବର୍ଷ ବୟସ ପର୍ଯ୍ୟନ୍ତ ବିପରୀତ ଲିଙ୍ଗର ସାଥୀ ବା ସଙ୍ଗୀ ଖୋଜି ନ ଥାନ୍ତି । ଲିଙ୍ଗର ପ୍ରଭେଦ ପିଲମାନେ ସେହି ବୟସରେ ପ୍ରାୟ ବୁଝି ପାରି ନ ଥାନ୍ତି କହିଲେ ଚଳେ । ଜୀବନର ଗୋଟିଏ ନିର୍ଦ୍ଦିଷ୍ଟ କାଳ ବା ବୟସରେ ମନୁଷ୍ୟ ସାଧାରଣତଃ ହସ୍ତମୈଥୁନ ବା ସ୍ୱମୈଥୁନ ଅଭ୍ୟାସ କରିବା ଦେଖାଯାଏ । ଏହି ଅଭ୍ୟାସ ପୁରୁଷ ଓ ନାରୀ ଉଭୟଙ୍କ ଠାରେ ଦେଖାଯାଏ ।

ବିଭିନ୍ନ ଦେଶର ଯୌନବିତ୍‌ମାନଙ୍କ ଲେଖାରୁ ଜଣାଯାଏ ଯେ ଏହି ଅଭ୍ୟାସ ପ୍ରାୟ ପ୍ରତ୍ୟେକ ଦେଶରେ ରହିଆସିଛି । ସେମାନଙ୍କ ମତରେ ପ୍ରାୟ ପ୍ରତ୍ୟେକ ମନୁଷ୍ୟର ଜୀବନରେ କୌଣସି ନା କୌଣସି ବୟସରେ ଏହି ଅଭ୍ୟାସ ଦେଖାଦିଏ । ଶତକଡ଼ା ଅନେଶତ ବ୍ୟକ୍ତି ଜୀବନରେ ଏହି ଅଭ୍ୟାସ କରିଥିବା ମାନନ୍ତି । ବାକି ଶତକଡ଼ା ଏକ ଭାଗ ଲୋକ ଏହି ଅଭ୍ୟାସ କରି ନ ଥାନ୍ତି କିମ୍ବା ଅଭ୍ୟାସ କରିଥିଲେ ସୁଦ୍ଧା ମାନନ୍ତି ନାହିଁ ।

ସାଧାରଣତଃ ବାଲ୍ୟଜୀବନରେ ବାଳକ ଓ ବାଳିକାମାନଙ୍କ ଠାରେ ଯୌନପ୍ରବୃତ୍ତି ନ ଥାଏ । ଶରୀରର ଅସୁସ୍ଥ ଯୋଗୁଁ, ଜନନେନ୍ଦ୍ରିୟର କୌଣସି ଅସୁବିଧା ଯୋଗୁଁ ବା କୌଣସି ଖରାପ ଘଟଣା ଘଟିବା ଯୋଗୁ ଯୌନ-ପ୍ରବୃତ୍ତି ବୃଦ୍ଧି ପାଏ । ନଚେତ୍ ଯୌବନରେ ପଦାର୍ପଣ କରିବା ପୂର୍ବରୁ ବାଳକ ଓ ବାଳିକାମାନଙ୍କ ଠାରେ ସାଧାରଣତଃ ଯୌନପ୍ରବୃତ୍ତି ବା ଉତ୍ତେଜନା ରହେ ନାହିଁ ।

ଆଜକାଲି ହସ୍ତମୈଥୁନ ବା ସ୍ୱମୈଥୁନ ବନ୍ଧନ ରୂପରେ ବିଶ୍ଳେଷଣ କରାଗଲାଣି । ମାନସିକ ଦିଗ୍‌ରେ କେତେକ ଯୌନଉତ୍ତେଜନା ଓ ତୃପ୍ତି ପାଉଛନ୍ତି ବୋଲି ଗବେଷକମାନେ ଦର୍ଶାଇଲେଣି । ସେହେତୁ ଏହି ନିୟମ ପ୍ରୟୋଗ କଲେ କୌଣସି ପୁରୁଷ ବା ନାରୀ ଏଥିରୁ ବାଦ୍ ଗଲା ପରି ମନେ ହୁଏ ନାହିଁ ।

ମନୁଷ୍ୟ କେଉଁ ବୟସରେ ସାଧାରଣତଃ ହସ୍ତମୈଥୁନ ବା ସ୍ୱମୈଥୁନ ଅଭ୍ୟାସ ଆରମ୍ଭ କରିଥାଏ, ତାହା ଡକ୍ଟର ହେରସ୍‌ଫିଲ୍‌ଡ (Dr. Hirschfield) ପ୍ରକାଶ କରିଥିଲେ—

| | | | | | |
|---|---|---|---|---|---|
| ୯ | ବର୍ଷ | ବୟସ | ପୂର୍ବରୁ | ଶତକଡ଼ା | ୩.୨ |
| ୧୦ | ବର୍ଷ | ,, | ,, | ,, | ୫.୩ |
| ୧୧ | ବର୍ଷ | ,, | ,, | ,, | ୫.୪ |
| ୧୨ | ବର୍ଷ | ,, | ,, | ,, | ୧୫.୦ |
| ୧୩ | ବର୍ଷ | ,, | ,, | ,, | ୧୩.୭ |
| ୧୪ | ବର୍ଷ | ,, | ,, | ,, | ୧୫.୫ |
| ୧୫ | ବର୍ଷ | ,, | ,, | ,, | ୧୧.୪ |
| ୧୬ | ବର୍ଷ | ,, | ,, | ,, | ୯.୮ |
| ୧୭ | ବର୍ଷ | ,, | ,, | ,, | ୪.୬ |
| ୧୮ | ବର୍ଷ | ,, | ,, | ,, | ୨.୫ |
| ୧୯ | ବର୍ଷ | ,, | ,, | ,, | ୧.୬ |
| ୨୦ | ବର୍ଷ | ,, | ,, | ,, | ୧.୫ |

ଏଥିରୁ ଜଣାଯିବ ଯେ ୧୨ ବର୍ଷ ବୟସ ପୂର୍ବରୁ ଶତକଡ଼ା ୨୨.୯ ପିଲା ହସ୍ତମୈଥୁନ ବା ସ୍ୱମୈଥୁନ ନିମନ୍ତେ ଚେଷ୍ଟା କରିଥାନ୍ତି । ୪୪.୪ ଭାଗ ୧୨ ବର୍ଷ ଠାରୁ ୧୪ ବର୍ଷ ବୟସ ମଧ୍ୟରେ ଓ ୩୨ ୭ ପିଲା ୧୪ ବର୍ଷ ବୟସ ପରେ ଆରମ୍ଭ କରିଥାନ୍ତି ।

ଡାକ୍ତରମାନେ ଆହୁରି ଜାଣି ପାରିଛନ୍ତି ଯେ ଅନେକ ପିଲା ଦିନକୁ ଚାରି ବା ପାଞ୍ଚ ଥର ହସ୍ତମୈଥୁନ କରିଥାନ୍ତି ଓ ଏମାନେ ରୋଗୀଙ୍କ ପରି ଦେଖାଯାନ୍ତି । ଡାକ୍ତର ହେସନାର୍ଡ଼ (Dr. Hesnard) ଜଣେ ତେଇଶ ବର୍ଷ ବୟସର ଯୁବକକୁ ଦେଖିଥିଲେ ଯେ କି ଦିନକୁ ଷାଠିଏ ଥର ହସ୍ତମୈଥୁନ କରୁଥିଲା ।

ଯେଉଁମାନଙ୍କର ହସ୍ତମୈଥୁନ ଅସ୍ୱାଭାବିକ ଯୌନପ୍ରବୃତ୍ତିରେ ପରିଣତ ହୋଇନାହିଁ, ସେମାନଙ୍କ ଠାରେ ଏହି ମନ୍ଦ ଅଭ୍ୟାସର ଆବୃତ୍ତି ଦିନକୁ ଦୁଇ ବା ତିନି ଥର ଠାରୁ ଆରମ୍ଭ କରି ପନ୍ଦର ଦିନରେ ଥରେ କିମ୍ବା ଦୁଇ ବା ତିନି ମାସରେ ଥରେ ହେଉଥିବା ଜଣାଯାଇଛି । ଡାକ୍ତର ହେସନର୍ଡ଼ି କହିଥିଲେ ଯେ ତାଙ୍କର ଅନେକ ବର୍ଷ ବ୍ୟବସାୟରେ ସେ କେବଳ ସାତ ଜଣ ପୁରୁଷ ଓ ପାଞ୍ଚ ଜଣ ମହିଳାଙ୍କୁ ଦେଖିଥିଲେ ଯେଉଁମାନେ କ ଜୀବନରେ ଥରେ ମାତ୍ର ହସ୍ତମୈଥୁନ କରି ପୁଣି ତାହା ଦ୍ୱିତୀୟ ଥର ଅଭ୍ୟାସ କରି ନାହାନ୍ତି । କେତେକ ଲୋକଙ୍କ ଠାରେ ଏହି ଅଭ୍ୟାସ ଏକ ବର୍ଷ ପର୍ଯ୍ୟନ୍ତ ରହେ । ଆଉ କେତେ ଲୋକଙ୍କ ଠାରେ ଦୁଇ ବର୍ଷ ପର୍ଯ୍ୟନ୍ତ ରହେ । କିନ୍ତୁ ଅଧିକାଂଶ ଲୋକଙ୍କ ଠାରେ ଚାରି ବର୍ଷ ପର୍ଯ୍ୟନ୍ତ ରହେ । ପୁଣି କେତେକ ଲୋକଙ୍କ ଠାରେ ଜୀବନ ସାରା ଏହି ଦୁରଭ୍ୟାସ ରହିବା ଲକ୍ଷ୍ୟ କରାଯାଇଛି ।

ଏହି ସବୁ ଦେଖିଲା ପରେ ହସ୍ତମୈଥୁନ ବା ସ୍ୱମୈଥୁନ ଜୀବନର ଗୋଟିଏ ସାଧାରଣ ଅବସ୍ଥା ବୋଲି ଜଣାଯାଏ । ଯଦି ଅଧିକାଂଶ ଲୋକଙ୍କର ଗତିକୁ ସ୍ୱାଭାବିକ ବୋଲି ଧରାଯାଏ, ତାହାହେଲେ ସ୍ୱମୈଥୁନ ବା ହସ୍ତମୈଥୁନରେ ଅସ୍ୱାଭାବିକତା କିଛି ନାହିଁ । ତେଣୁ ଯୌବନର ଆରମ୍ଭରେ ସାଧାରଣତଃ ସଙ୍ଗୀର ଅଭାବରେ ହସ୍ତମୈଥୁନ ବା ସ୍ୱମୈଥୁନ ବିଶେଷ କ୍ଷତିକାରକ ବୋଲି ଧରାଯାଇ ନ ପାରେ ।

ଗୃହପାଳିତ ଓ ବନ୍ୟଜନ୍ତୁଙ୍କ ପକ୍ଷରେ ସ୍ୱାଭାବିକ ଯୌନସଙ୍ଗମର ସୁବିଧା ନ ଥିଲେ ସେମାନେ ସ୍ୱମୈଥୁନ ଦ୍ୱାରା ଯୌନତୃପ୍ତି ପାଉଥିବା ଲକ୍ଷ୍ୟ କରାଯାଇପାରେ । ଅଣ୍ଡିରା କୁକୁର ଯୌନ ଉତ୍ତେଜନା ସମୟରେ କୁକୁରୀର ସଙ୍ଗ ନ ପାଇଲେ ଅଥୟ ହୋଇପଡ଼େ । ସେହିପରି କୁକୁରୀ ମଧ୍ୟ ତାର ମଦକାଳ ସମୟରେ କୁକୁରର ସଙ୍ଗ ନ ପାଇଲେ ତାହାର ଯୋନିଦ୍ୱାରକୁ ତଳେ ବା ବାଡ଼ରେ ଘଷେ କିମ୍ବା ଯୋନିକୁ ନିଜ ଜିହ୍ୱାରେ ଚାଟି ଯୌନତୃପ୍ତି ଲାଭ କରେ । ଏହିପରି ଅନେକ ପଶୁ ଉତ୍ତେଜନା ବେଳେ ଯୌନ ସଙ୍ଗମର ସୁବିଧା ନ ପାଇଲେ ସ୍ୱମୈଥୁନ ଦ୍ୱାରା ଯୌନତୃପ୍ତି ଲାଭ କରିଥାନ୍ତି । ମାଙ୍କଡ଼ମାନେ ଜୀବଜଗତରେ ମନୁଷ୍ୟମାନଙ୍କ ନିକଟତମ ପ୍ରାଣୀ । ଅଣ୍ଡିରା ମାଙ୍କଡ଼ମାନେ ଅନେକ ସମୟରେ ହସ୍ତମୈଥୁନ କରିବା

ଶତ୍ ଆଖୀନାମାଙ୍କରେ ଦେଖାଯାଏ । ସେମାନେ ହସ୍ତମୈଥୁନ ବେଳେ ଲିଙ୍ଗକୁ ଘଷିବା କିମ୍ବା ହଲାଇବା ନିମନ୍ତେ ହାତର ବ୍ୟବହାର କରିଥାନ୍ତି ।

ଡାକ୍ତରମାନଙ୍କ ମତରେ, ଯେତେବେଳେ ଯୌନ ଉତ୍ତେଜନା ବଳବତ୍ତର ହୁଏ ଯେତେବେଳେ ଯୌନସଙ୍ଗମର ଇଚ୍ଛା ଜୋର୍ ହୁଏ । ସେତେବେଳେ ଯଦି ଯୌନସଙ୍ଗମର ସୁବିଧା ନ ରହେ ଅର୍ଥାତ୍ ବିପରୀତ-ଲିଙ୍ଗ ସଙ୍ଗୀର ସୁବିଧା ନ ରହେ, ତାହାହେଲେ ଯେ କୌଣସି ପ୍ରଣାଳୀରେ ଯୌନତୃପ୍ତି ପାଇବା ନିମନ୍ତେ ଇଚ୍ଛା ଆସେ । ଯଦି ବିପରୀତ ଲିଙ୍ଗର ସହଯୋଗ ନ ମିଳେ ତେବେ ସମଲିଙ୍ଗ ବ୍ୟକ୍ତିର ସାହାଯ୍ୟ ପାଇବାକୁ ଚେଷ୍ଟା ହୁଏ । ଏହି ସୁବିଧା ନ ପାଇଲେ ସ୍ବମୈଥୁନ ବା ହସ୍ତମୈଥୁନର ଆଶ୍ରୟ ନିଆଯାଏ । ବେଙ୍ଗମାନଙ୍କ ଉପରେ ପରୀକ୍ଷା କରି ଦେଖାଯାଇଛି ଯେ ମାଈବେଙ୍ଗଗୁଡ଼ିକୁ ଅଣ୍ଡିରା ବେଙ୍ଗ ଠାରୁ ଅଲଗା ରଖିଲେ, ମଦକାଳରେ ଅଣ୍ଡିରା ବେଙ୍ଗଗୁଡ଼ିକ ଯୌନତୃପ୍ତି ନିମନ୍ତେ କାଠଉପରେ ଚଢ଼ିଥାନ୍ତି । ବୈଜ୍ଞାନିକ ଜେନକିନସ୍ ଦର୍ଶାଇଛନ୍ତି ଯେ—ମାଈ ମୂଷାଗୁଡ଼ିକୁ ଅଣ୍ଡିରା ମୂଷାମାନଙ୍କଠାରୁ ଅଲଗା ରଖିଲେ ଯୌନ ଉତ୍ତେଜନା ସମୟରେ ମାଈ ବା ଅଣ୍ଡିରା ମୂଷାମାନେ ନିଜ ଦଳର ଅନ୍ୟ ମୂଷାମାନଙ୍କ ଉପରେ ଚଢ଼ିବାର ଦେଖାଯାଇଛି । ଏହି ସମଲିଙ୍ଗ କାମନାର ଜୋର ବିଚ୍ଛେଦ ସମୟର ଅନୁପାତରେ ରହେ ।

କେତେକ ରକମ ଖେଳରେ ମନୁଷ୍ୟ ଠାରେ ଯୌନ ପ୍ରବୃତ୍ତି ବିଶେଷ ସ୍ଥାନ ପାଇଥାଏ । ନାମା ଜାତିର ଲୋକଙ୍କ ମଧ୍ୟରେ ହସ୍ତମୈଥୁନ ଗୋଟିଏ ସାଧାରଣ ସାମାଜିକ ରୀତି ଭାବେ ଧରାଯାଏ । ଟ୍ରୋବ୍ରିଆଣ୍ଡ (Trobriand) ଦ୍ୱୀପରେ ଚାରି ବା ପାଞ୍ଚ ବର୍ଷ ବୟସର ପିଲାମାନେ ଏକାଟିଆ କିମ୍ବା ଏକାଠି ବସି ହସ୍ତମୈଥୁନ କରନ୍ତି । ସେଠାରେ ଚାରି ବା ପାଞ୍ଚ ବର୍ଷ ବୟସର ବାଳକ, ଛଅ ବା ସାତ ବର୍ଷ ବୟସର ବାଳିକାମାନେ ଏହି ଅଭ୍ୟାସ କରୁଥିବା ଦେଖାଯାଏ । ପିଲାମାନେ ଏହି ଖେଳ ଖେଳିଲା-ବେଳେ ବୟସ୍କ ଲୋକମାନେ ଠିଆ ହୋଇ ଦର୍ଶକ ଭାବେ ଦେଖିଥାନ୍ତି ।

ପୂର୍ବେ ପାଶ୍ଚାତ୍ୟ ଜଗତରେ ହସ୍ତମୈଥୁନର ବହୁତ ପ୍ରଚାର ଥିଲା । ଏବଂ ଏହାର ଅନେକ ଦୃଷ୍ଟାନ୍ତ ଇତିହାସରୁ ମିଳେ । ଡିଏଜିନସ୍ (Deogenes) ନାମକ ପ୍ରାଚୀନ ଏଥେନ୍ସର ଜଣେ ଅଧିବାସୀ ଖୋଲା ଏବଂ ସର୍ବସାଧାରଣ ରାସ୍ତାରେ ହସ୍ତମୈଥୁନ କରିପାରିଥିବା ଯୋଗୁଁ ସ୍ୱୀସ୍ପସ

(Chrsippus) ନାମକ ଜଣେ ବଶିଷ୍ଟ ବ୍ୟକ୍ତି ତାହାଙ୍କ ଅଭିନନ୍ଦନ ଜଣାଇଥିଲେ । ସେହି ସମୟରେ ଯୌନତୃପ୍ତି ନିମନ୍ତେ ହସ୍ତମୈଥୁନକୁ ଉତ୍କୃଷ୍ଟ ପନ୍ଥା ବୋଲି କୁହାଯାଉଥିଲା । ତଥାପି ଏହାକୁ ଘୃଣାଚକ୍ଷୁରେ ଦେଖିବା ସେହି ସମୟର ସାହିତ୍ୟରୁ ମିଳେ ।

ଅନେକ ରକମ ଅବସ୍ଥାରୁ ହସ୍ତମୈଥୁନ ବା ସ୍ୱମୈଥୁନ ପ୍ରବୃତ୍ତି ପ୍ରଥମେ ଜାତ ହୋଇଥାଏ । କୌଣସି କାରଣରୁ ଜନନେନ୍ଦ୍ରିୟ ଫୁଲିଲେ, କୁଣ୍ଡେଇ ହେଲେ ତାହା କୁଣ୍ଡେଇବା ନିମନ୍ତେ ଇଚ୍ଛା ହୁଏ । କୁଣ୍ଡାଇବା ଦ୍ୱାରା ସେଥିରୁ ଯୌନସୁଖ ଜାତ ହୁଏ । ପ୍ରଥମ ଅବସ୍ଥାରେ ପିଲାମାନେ କେବଳ କୁଣ୍ଡିଆରୁ ରକ୍ଷା ପାଇବା ନିମନ୍ତେ କୁଣ୍ଡେଇଥାନ୍ତି । କିନ୍ତୁ କୁଣ୍ଡାଇବା ଦ୍ୱାରା ଯେଉଁ ଯୌନସୁଖ ଜାତ ହୁଏ, ତାହା ହସ୍ତମୈଥୁନ ଦିଗରେ ଗତି କରେ । ସେହିପରି ଚିହ୍ନବା ଲୁଗାରେ ଜନନେନ୍ଦ୍ରିୟ ଘଷି ହେବା ଫଳରେ ଯେଉଁ ଯୌନସୁଖ ଜାତ ହୁଏ ତାହା ଫଳରେ ହସ୍ତମୈଥୁନ ଦିଗରେ ପ୍ରବୃତ୍ତି ଆସେ । କିନ୍ତୁ ପିଲା ବୟସରେ ଏହାକୁ ହସ୍ତମୈଥୁନ ବା ସ୍ୱମୈଥୁନ ବୋଲି ପିଲାମାନେ ଜାଣି ପାରନ୍ତି ନାହିଁ ।

ବାଳିକାମାନଙ୍କର ପିଲାଦିନେ ପେଟରେ କୃମି ହେଲେ ପୋକ-ଗୁଡ଼ିଏ ମଳଦ୍ୱାରରୁ ବାହାରି ଜନନେନ୍ଦ୍ରିୟରେ ପ୍ରବେଶ କରନ୍ତି । ଏହା ଫଳରେ କୁଣ୍ଡେଇ ଲାଗିବା ଯୋଗୁଁ ସେମାନେ ଜନନେନ୍ଦ୍ରିୟକୁ ମନ୍ଥିବା ଆରମ୍ଭ କରନ୍ତି ଓ ତଦ୍ୱାରା ସେମାନେ ଆନନ୍ଦ ଅନୁଭବ କରିଥାନ୍ତି । କିନ୍ତୁ ଯୌବନର ଆରମ୍ଭରେ ଯୌନ ପ୍ରବୃତ୍ତିର ଆରମ୍ଭ ହୁଏ । ରସାଳ ସାହିତ୍ୟ ପଢ଼ିବା, ସଙ୍ଗୀମାନଙ୍କ ସହିତ ଯୌନ ବିଷୟ ନେଇ କଥାବାର୍ତ୍ତା କରିବା ଓ ଯୌନାଙ୍ଗ-ସ୍ପର୍ଶରେ ଅଭିନୟ ଦ୍ୱାରା ସେମାନଙ୍କ ଯୌନ ପ୍ରବୃତ୍ତି ଓ ଉତ୍ତେଜନା ବୃଦ୍ଧି ପାଏ । ସମୟେ ସମୟେ ଯୋନୀରେ ରକ୍ତ ସଞ୍ଚାଳନର ବୃଦ୍ଧି ଯୋଗୁଁ କୁଣ୍ଡେଇ ହୋଇ ହସ୍ତମୈଥୁନ ଆରମ୍ଭ ହୁଏ । ଅଜାଣତରେ ନାରୀମାନଙ୍କର ଯୌନ ଉତ୍ତେଜନା ଆକସ୍ମିକ ଭାବେ ବୃଦ୍ଧି କରାଯାଇପାରେ ଯାହାକୁ ସ୍ୱମୈଥୁନ ବୋଲି କହିଥାନ୍ତି ।

ଇଚ୍ଛା କରି ସ୍ୱମୈଥୁନ ବା ହସ୍ତମୈଥୁନ କରିବା ସାଧାରଣତଃ ତିନି ପ୍ରକାର ଦେଖାଯାଏ । ଯଥା—(୧) ହାତର ପ୍ରୟୋଗ (୨) ଜଙ୍ଘକୁ ଜଙ୍ଘ ଲଗାଇ ଚିପିବା (୩) ନକଲି ବା କୃତ୍ରିମ ଯୌନସଙ୍ଗମ (Imitation of the sexual act) ଅର୍ଥାତ୍ ରତିକ୍ରିୟାର ଅନୁକରଣ ।

ହସ୍ତମୈଥୁନ ବେଳେ କୁମାରୀମାନେ ସାଧାରଣତଃ ଭଗାଙ୍କୁରକୁ ଆଙ୍ଗୁଠିରେ ମର୍ଦ୍ଦନ କରିଥାନ୍ତି । ଯୋନିର ମୁହଁରେ କୁମାରୀଛଦ ଥିବାଯୋଗୁଁ ଆଙ୍ଗୁଠି ବା ଅନ୍ୟ କୌଣସି ଜିନିଷ ଯୋନିନାଳୀରେ ପ୍ରବେଶ କରାଇବା ସୁବିଧା ହୁଏ ନାହିଁ ।

ଯେଉଁ ଲୋକ ହସ୍ତମୈଥୁନ ବା ସ୍ୱମୈଥୁନ ଅଭ୍ୟାସ କରିଥାଏ ସେ କେବଳ ଗୋଟିଏ ନିର୍ଦ୍ଦିଷ୍ଟ ପ୍ରଣାଳୀ ବ୍ୟବହାର କରିବା ସାଧାରଣତଃ ଦେଖାଯାଏ । ହସ୍ତମୈଥୁନରେ ଅଭ୍ୟସ୍ତ ମନୁଷ୍ୟ ନିଜର ଅନୁସୃତ ପ୍ରଣାଳୀ ବଦଳାଇବା କ୍ୱଚିତ୍ ଦେଖାଯାଏ । ପ୍ରାୟ ପ୍ରତ୍ୟେକ ଦେଶରେ ହସ୍ତ-ମୈଥୁନ ବେଳେ ସାଧାରଣତଃ ଅଧିକାଂଶ ଲୋକ ଗୋଟିଏ ହାତ ବ୍ୟବହାର କରନ୍ତି । ଅଳ୍ପ କେତେକ ଲୋକ ଦୁଇ ହାତ ମଧ୍ୟ ବ୍ୟବହାର କରିଥାନ୍ତି ।

ସ୍ୱମୈଥୁନବେଳେ ଜଙ୍ଘକୁ ଚିପିବା ସାଧାରଣତଃ ନାରୀମାନଙ୍କ-ଠାରେ ବିଶେଷଭାବେ ଦେଖାଯାଏ । ସ୍ୱିଡ଼େନ ଦେଶରେ ଏହି ପ୍ରଣାଳୀ ବ୍ୟବହାର କରି ଯୌନତୃପ୍ତି ପାଇବା ନାରୀମାନଙ୍କର ଗୋଟିଏ ସାଧାରଣ ଅଭ୍ୟାସ ବୋଲି ଜଣାଯାଏ । ସେହି ଦେଶରେ ଗୋଟିଏ ରେଳଷ୍ଟେସନରେ ଅନ୍ୟମାନଙ୍କ ଦୃଷ୍ଟି ଆକର୍ଷଣ ନ କଲାଭଳି ଜଣେ ମହିଳା ଏହି ପ୍ରଣାଳୀରେ ଯୌନତୃପ୍ତି ପାଇପାରୁଥିବା ବିଖ୍ୟାତ ଯୌନବିତ୍ ଓ ଡାକ୍ତର ହେବିଲକ୍ ଇଲିସ ଲକ୍ଷ୍ୟ କରିଥିଲେ । ମହିଳା ପ୍ରଥମେ ଜଙ୍ଘକୁ ଜଙ୍ଘରେ ଚିପି ଗୋଡ଼ ହଲାଇବା ଆରମ୍ଭ କଲେ । ଗୋଡ଼ ହଲାଇବା ଜୋର ହେବାବେଳେ ତାହା ହଠାତ୍ ବନ୍ଦ ହେବା ସମୟରେ ମୁହଁର ରଙ୍ଗ ବଦଳି ଯାଇ ତାହାଙ୍କ ଶରୀର ଅବଶ ଓ ଶିଥିଳ ହୋଇପଡ଼ିଥିଲା । କେବଳ ଯୌନବିଦ୍‌ମାନେ ହିଁ ଏହି ସବୁ ଲକ୍ଷଣ ଦେଖି ଅବସ୍ଥାଟି ସହଜରେ ବୁଝିପାରିବେ । ସାଧାରଣ ମନୁଷ୍ୟ ପକ୍ଷେ ଏହା ଲକ୍ଷ୍ୟ କରି ବୁଝି ପାରିବା ସହଜ ନୁହେ ।

କେତେକ ପୁରୁଷ ମଧ୍ୟ ସ୍ୱମୈଥୁନ ନିମନ୍ତେ ଜଙ୍ଘକୁ ଜଙ୍ଘରେ ଲଗାଇ ଲିଙ୍ଗଉପରେ ଚାପ ଦେଇଥାନ୍ତି । କିନ୍ତୁ ପୁରୁଷମାନେ ସ୍ୱମୈଥୁନ ନିମନ୍ତେ ଏହି ପ୍ରଣାଳୀ ବ୍ୟବହାର କରିବା କମ୍ ଦେଖାଯାଏ ।

ସାଧାରଣତଃ ବ୍ୟବହାର କରାଯାଉଥିବା ତୃତୀୟ ପ୍ରଣାଳୀଟି ହେଉଛି ନକଲି ବା କୃତ୍ରିମ ରତିକ୍ରିୟା ବା ରତିକ୍ରିୟାର ଅନୁକରଣ ।

ଏଥିରେ ଗୋଟିଏ ବସ୍ତୁକୁ ଅପରର ଜନନେନ୍ଦ୍ରିୟ ରୂପେ ବ୍ୟବହାର କରି ଅଙ୍ଗଗ୍ଧଳନା କରାଯାଏ । ଏଥିପାଇଁ ସାଧାରଣରେ ବ୍ୟବହାର କରିବା ଜିନିଷଗୁଡ଼ିକ ସହଜରେ ମିଳିଯାଏ । ପୁରୁଷମାନଙ୍କ ପକ୍ଷେ ତକିଆ, ବିଛଣାଗୃଦର କମ୍ବା ଗାତ ଥିବା କୌଣସି ଜିନିଷ ସୁବିଧାଜନକ ହୁଏ ।

ଜାପାନର ନାରୀମାନେ ଗୋଟିଏ ପିତଳ ବଲ ସ୍ୱମୈଥୁନ ନିମନ୍ତେ ବ୍ୟବହାର କରନ୍ତି । ଏହି ବଲ ଭିତରେ କେତୋଟି ଗୁଡ଼ି ରହେ । ବଲଟି ଯୋନି ଭିତରେ ଭରିତ କରି ଖସି ନ ଯିବା ସକାଶେ କାଗଜର ଠିପିଟିଏ ଯୋନିମୁଖରେ ଦିଅନ୍ତି । ତାହା ପରେ ନାରୀ ହଲଚଲ ହେଲେ ବଲ ଭିତରେ ଥିବା ଗୁଡ଼ିଗୁଡ଼ିକ ଗଡ଼ିବା ଯୋଗୁଁ ଯେଉଁ ଶବ୍ଦ ସୃଷ୍ଟି ହୁଏ ତାହା ଯୋନିନାଳୀରେ ଉତ୍ତେଜନା ସୃଷ୍ଟି କରେ । ଜାପାନରେ ଅନେକ ବିବାହିତ ନାରୀ ଏହି ରକମ ବଲ ବ୍ୟବହାର କରିଥାନ୍ତି ।

ନାରୀମାନେ ମଧ୍ୟ ଯୌନ ଉତ୍ତେଜନା ଓ ତୃପ୍ତି ନିମନ୍ତେ ପୁରୁଷ-ଲିଙ୍ଗ ସଦୃଶ ବା ଆକୃତିର ଜିନିଷ ବ୍ୟବହାର କରିଥାନ୍ତି । ନାରୀମାନଙ୍କ ସ୍ୱମୈଥୁନ ନିମନ୍ତେ ଲିଙ୍ଗ ସଦୃଶ ଗୋଟିଏ ଯନ୍ତ୍ର ମଧ୍ୟ ମିଳେ । ଏହି ଯନ୍ତ୍ରଟି ଆକାରରେ ଡାକ୍ତରମାନଙ୍କର ଇଞ୍ଜେକ୍‌ସନ୍ ସିରେଞ୍ଜ ପରି । ସିରେଞ୍ଜ ଭିତରେ ଉଷ୍ମ ଦୁଧ ବା ତମ୍ବରସ ବା ଅନ୍ୟ କୌଣସି ଉଷ୍ମ ଧଳା ରସ ଭରିତ କରି ନାରୀମାନେ ନିଜ ଜନନେନ୍ଦ୍ରିୟରେ ଲିଙ୍ଗ ବଦଳରେ ବ୍ୟବହାର କରନ୍ତି । ନାରୀମାନେ ସ୍ୱମୈଥୁନରେ ଲିଙ୍ଗ ସଦୃଶ ବ୍ୟବହାର କରୁଥିବା ଜିନିଷମାନଙ୍କ ମଧ୍ୟରେ କଦଳୀ ପ୍ରାୟ ପ୍ରତ୍ୟେକ ଦେଶରେ ପ୍ରଧାନତଃ ଦେଖାଯାଏ । ଏହା ଛଡ଼ା ଲମ୍ବା ବାଇଗଣ, ଗ୍ଲେଟ କାକୁଡ଼ି, ମୂଳା, ଗାଜର, ପେନସିଲ, କଲମ, ମହମବତି, ଦାନ୍ତକାଠି, ଦାନ୍ତ ଘଷିବା ବ୍ରସ୍, ବାଳରେ ଲଗାଇବା କଣ୍ଟା ପ୍ରଭୃତି ଏବଂ ନାନା ରକମର ଗ୍ଲେଟିଆ ଗ୍ଲେଟିଆ ଜିନିଷ ମଧ୍ୟ ବ୍ୟବହାର କରିବା ଦେଖାଯାଏ । ଗ୍ଲେଟିଆ ଜିନିଷ ବ୍ୟବହାର କଲେ ଯୌନ ଉତ୍ତେଜନା ସମୟରେ ସେହି ଜିନିଷଟି ଯୋନି ଭିତରକୁ ଗ୍ଧଲିଯାଏ । ସେଇଟି ପୁଣି ପଦାକୁ ବାହାର କରି ଆଣିବା ସହଜ ହୁଏ ନାହିଁ । ତେଣୁ ଡାକ୍ତରଙ୍କ ଆଶ୍ରୟ ନେବାକୁ ହୁଏ । ଡାକ୍ତରମାନେ ନାରୀମାନଙ୍କ ଜନନେନ୍ଦ୍ରିୟ ଭିତରୁ ବାହାର କରିଥିବା ଜିନିଷମାନଙ୍କ

ମଧ୍ୟରେ ଧାତୁ ନିର୍ମିତ ଆଙ୍କୁଡ଼ା, ଦାନ୍ତଖୋଳା କଣ୍ଟା, ମୁଣ୍ଡବାଳରେ ବ୍ୟବହାର କରିବା ପିନ୍, ଜଉକାଠି, ଛୁଞ୍ଚି ପ୍ରଭୃତି ବହୁତ ଦେଖାଯାଇଛି । ଦାନ୍ତଖୋଳା କଣ୍ଟା ଓ ବାଳରେ ଲଗାଇବା ପିନ୍ ସ୍ୱମୈଥୁନରେ ନାରୀମାନେ ଏତେ ବ୍ୟବହାର କରିବା ଦେଖାଗଲା ଯେ ୧୮୬୦ ମସିହାରେ ଜଣେ ଡାକ୍ତର ଏଗୁଡ଼ିକ ସହଜରେ ଯୋନିଭିତରୁ ବାହାର କରିବା ନିମନ୍ତେ ଗୋଟିଏ ନୂତନ ଧରଣର ଯନ୍ତ୍ର ତିଆରି କରିଥିଲେ ।

ସ୍ୱମୈଥୁନ ସମୟରେ ସମସ୍ତେ ଜନନେନ୍ଦ୍ରିୟରେ ଅଭ୍ୟାସ କରି ନ ଥାନ୍ତି । କେତେକ ଲୋକ ବିଭିନ୍ନ ଉତ୍ତେଜନାକାରୀ ଅଙ୍ଗ ଉପରେ ମଧ୍ୟ ଅଭ୍ୟାସ କରନ୍ତି । ଶରୀରର ଯେଉଁ ଅଙ୍ଗ ତାହା ପକ୍ଷେ ବିଶେଷ ଭାବେ ଉତ୍ତେଜନା ସୃଷ୍ଟି କରିଥାଏ ସେ ସେହି ଅଙ୍ଗ ଉପରେ ଅଭ୍ୟାସ କରେ । ଶରୀରର ବିଭିନ୍ନ ଅଙ୍ଗମାନଙ୍କ ମଧ୍ୟରୁ ସ୍ତନ, ପିଠି ଓ ମଳଦ୍ୱାର ପ୍ରଭୃତି ପ୍ରଧାନ । ସ୍ତନରେ ମର୍ଦ୍ଦନ କରିବା, ପିଠିରେ ମାଡ଼ ପାଇବା ଦ୍ୱାରା କେତେକ ଲୋକ ଉତ୍ତେଜନା ପାଇ ତୃପ୍ତିଲାଭ କରନ୍ତି । କେତେକ ଲୋକ ମଳ-ଦ୍ୱାରରେ ବିଭିନ୍ନ ଜିନିଷ ପ୍ରବେଶ କରାଇ ଯୌନତୃପ୍ତି ପାଇଥାନ୍ତି ।

ସ୍ୱମୈଥୁନରେ ବ୍ୟବହାର କରାଯାଉଥିବା ନାନା ରକମର ଜିନିଷ ଓ ଯନ୍ତ୍ର ବର୍ଲିନ ଯୌନାଗାର (Sexological Institute) ରେ ରଖାଯାଇଥିଲା । ସେଥିରୁ ବ୍ୟବହାର କରାଯାଇଥିବା କେତେକ ଜିନିଷର ଆକାର ଓ ଆୟତନ ଦେଖିଲେ ସ୍ୱମୈଥୁନରେ ତାର ବ୍ୟବହାର କଳ୍ପନା କରିହୁଏ ନାହିଁ; ଏପରି କି ଜଣେ ୧୬ ସେ. ମି. ଲମ୍ବ ଓ ୫ ସେ. ମି. ଚୌଡ଼ାର ଗୋଟିଏ ଜିନିଷ ଯୌନତୃପ୍ତି ନିମନ୍ତେ ମଳଦ୍ୱାରରେ ବ୍ୟବହାର କରୁଥିବା ଏହି ଯୌନାଗାରରେ ଥିଲା । ଜର୍ମାନ ଦେଶ ନାଜି ଶାସନରେ ଆସିବା ପରେ ଏହି ସଂଗ୍ରହାଳୟକୁ ଭାଙ୍ଗି ଦିଆଯାଇଥିଲା ।

ସାଧାରଣତଃ ହସ୍ତମୈଥୁନ ବା ସ୍ୱମୈଥୁନରେ ଲିଙ୍ଗ ବା ଜନନେ-ନ୍ଦ୍ରିୟରେ ହାତ ବା ଯେ କୌଣସି ଜିନିଷ ସାହାଯ୍ୟରେ ଶକ୍ତିର ବ୍ୟବହାର କରି ଯୌନତୃପ୍ତି ଲାଭ କରାଯାଏ । କିନ୍ତୁ ଆଉ କେତେକ ମନୁଷ୍ୟ ଶୃଙ୍ଗାର ବା ରସାଳ ବିଷୟ କଳ୍ପନା କରିବା କିମ୍ବା କୌଣସି ଯୌନ ସମ୍ବନ୍ଧୀୟ ପୂର୍ବ ଘଟଣା ବିଚାର କରିବାରେ ସେମାନଙ୍କର ସ୍ଖଳନ ବା ଯୌନତୃପ୍ତି ହୋଇଥାଏ । ଏହିପରି ଅଭ୍ୟାସଦ୍ୱାରା ମନୁଷ୍ୟର ସ୍ନାୟୁବିକ ବିକାର ଜାତ

ହୁଏ । ଅନେକ ସମୟରେ କଳ୍ପନା କରି ଯୌନ ଉତ୍ତେଜନା ସୃଷ୍ଟି କରିବା ପରେ ହସ୍ତମୈଥୁନରେ ତାହା ଶେଷ ହୋଇଥାଏ । ଏହିପରି କଳ୍ପନା ନ ରହିଲେ ହସ୍ତମୈଥୁନ ଯୋଗୁଁ ସ୍ନାୟବିକ ବିକାର ସେତେ ଦୂର ଆରମ୍ଭ ହୁଏ ନାହିଁ । ଏହିପରି ଅଭ୍ୟାସ ପୁରୁଷମାନଙ୍କ ଅପେକ୍ଷା ନାରୀମାନଙ୍କ ଠାରେ ବହୁତ ଦେଖାଯାଏ ।

ଏହି ସମସ୍ତ ରକମର ହସ୍ତମୈଥୁନ ବା ସ୍ୱମୈଥୁନ ଠାରୁ ଶେଷ ରକମ ସ୍ୱମୈଥୁନ ହେଉଛି ବିଗୃହ ବା କଳ୍ପନାରେ ସ୍ଖଳନ ବା ଯୌନତୃପ୍ତି । ଏହା ମନୁଷ୍ୟ ପକ୍ଷେ ବିଶେଷ କ୍ଷତିକାରକ ଏବଂ ଏହା ଅଭ୍ୟାସ କରିବା ଆଦୌ ଉଚିତ ନୁହେ ।

ଡାକ୍ତର ଗୁଟସିଟ୍ (Dr. Gutceit) ମତ ଦେଇଥିଲେ ଯେ ଦଶ ଠାରୁ ଷୋହଳ ବର୍ଷ ବୟସର ବାଳକମାନଙ୍କ ମଧ୍ୟରେ ହସ୍ତମୈଥୁନ ଯେତେଦୂର ପ୍ରସାର ଲାଭ କରେ ସେହି ବୟସର ବାଳିକାମାନଙ୍କ ମଧ୍ୟରେ ସେତେଦୂର ପ୍ରସାର ଲାଭ କରେ ନାହିଁ । କିନ୍ତୁ ଅଠର ଠାରୁ କୋଡ଼ିଏ ବର୍ଷ ବା ତା ପର ବୟସର ଅଧିକାଂଶ ଯୁବତୀ ହସ୍ତମୈଥୁନ ଅଭ୍ୟାସ କରିଥାନ୍ତି ।

ପୁରୁଷ ଓ ନାରୀ ଉଭୟଙ୍କ ମଧ୍ୟରୁ କେଉଁମାନେ ସ୍ୱମୈଥୁନ ବା ହସ୍ତମୈଥୁନ ବିଶେଷ ଭାବେ ଅଭ୍ୟାସ କରିଥାନ୍ତି, ଏହି ବିଷୟ ନେଇ ଅନେକ ଆଲୋଚନା କରାଯାଇଛି । ପରିସଂଖ୍ୟାନ ଦୃଷ୍ଟିରୁ (Statistical data) ଏହି ବିଷୟରେ ନିଷ୍ପତ୍ତି ନେବା ଉଚିତ ନୁହେ । ବାଲ୍ୟ-କାଳରେ ହସ୍ତମୈଥୁନ କରିବା ବାଳିକାମାନଙ୍କ ସଂଖ୍ୟା ବାଳକମାନଙ୍କ ଠାରୁ ଅଧିକ । ପ୍ରଥମ ଯୌବନର ଆରମ୍ଭରେ ସ୍ୱମୈଥୁନ କରୁଥିବା ବାଳିକାମାନଙ୍କ ସଂଖ୍ୟା ବାଳକମାନଙ୍କ ଅପେକ୍ଷା ଅଧିକ ଯେହେତୁ ବାଳିକାମାନେ ବାଳକମାନଙ୍କ ଅପେକ୍ଷା ଶୀଘ୍ର ଯୌବନରେ ପଦାର୍ପଣ କରିଥାନ୍ତି । ଯୌବନର ଆରମ୍ଭରେ ବାଳକମାନଙ୍କ ସଂଖ୍ୟା ବାଳିକାମାନଙ୍କ ଅପେକ୍ଷା ବୃଦ୍ଧି ପାଇଥାଏ । କିନ୍ତୁ ବୟସ ବୃଦ୍ଧି ହେବା ସଙ୍ଗେ ସଙ୍ଗେ ଯୁବକମାନଙ୍କର ସ୍ନେହ ଓ ସୁଯୋଗ ବୃଦ୍ଧି ପାଇବା ଯୋଗୁ ଏହି ଅଭ୍ୟାସର ପ୍ରୟୋଜନ ଆଉ ରହେ ନାହିଁ । କିନ୍ତୁ ବିବାହିତ ଜୀବନରେ ବା କୋଡ଼ିଏ ବର୍ଷ ବୟସ ପରେ ସ୍ୱମୈଥୁନ ବା ହସ୍ତମୈଥୁନ

ଅଭ୍ୟାସ କରୁଥିବା ନାରୀମାନଙ୍କ ସଂଖ୍ୟା ପୁରୁଷମାନଙ୍କ ଅପେକ୍ଷା ଅଧିକ । କାରଣ ପୁରୁଷମାନଙ୍କ ପରି ନାରୀମାନେ ରତିକ୍ରିୟାରେ ସହଜରେ ଯୌନତୃପ୍ତି ପାଇପାରି ନ ଥାନ୍ତି । ବିବାହିତ ଜୀବନରେ ରତି-କ୍ରିୟାରେ ଯୌନତୃପ୍ତି ନ ପାଇ ପାରିଲେ ଏହି ଅଭ୍ୟାସର ଆଶ୍ରୟ ନେଉଥିବା ଦେଖାଯାଏ ।

ବିବାହିତ ନାରୀମାନେ ନିଜ ସ୍ୱାମୀ ଠାରୁ ଯୌନତୃପ୍ତି ନ ପାଇଲେ ଅନ୍ୟ ପୁରୁଷର ଆଶ୍ରୟ ବା ହସ୍ତମୈଥୁନ କରିବା ଦରକାର ପଡ଼େ । ଅନ୍ୟ ପୁରୁଷର ଆଶ୍ରୟ ନେବାଠାରୁ ହସ୍ତମୈଥୁନ ଶ୍ରେୟ ବୋଲି ସେମାନେ ଠିକ୍ କରନ୍ତି । ପ୍ରତ୍ୟେକ ନାରୀ ଅଭ୍ୟାସ ଅନୁଯାୟୀ ହସ୍ତମୈଥୁନର ପ୍ରଣାଳୀ ବ୍ୟବହାର କରିଥାଏ । ଯୋନିନାଳୀର ଗଭୀରତମ ପ୍ରଦେଶ, ଭଗାଙ୍କୁର, ଯୋନିମୁଖ, ଯୋନିନାଳୀ ପ୍ରଭୃତି ସ୍ଥାନରେ ସାଧାରଣତଃ ହସ୍ତମୈଥୁନ ପ୍ରୟୋଗ କରାଯାଏ । ଯେକୌଣସି ଗୋଟିଏ ସ୍ଥାନରେ ହସ୍ତମୈଥୁନ ବରାବର ଅଭ୍ୟାସ କରିବା ଦ୍ୱାରା ସ୍ୱାଭାବିକ ରତିକ୍ରିୟାରେ ଆଉ ଯୌନତୃପ୍ତି ମିଳେ ନାହିଁ ।

ଯୌବନର ଆରମ୍ଭରେ ସାଧାରଣତଃ ଶତକଡ଼ା ୯୦ ଠାରୁ ୯୬ ପର୍ଯ୍ୟନ୍ତ ବାଳକ ଓ ବାଳିକା ସ୍ୱପ୍ନମୈଥୁନ ବା ହସ୍ତମୈଥୁନ ଅଭ୍ୟାସ କରିଥାନ୍ତି । ସାଧାରଣତଃ ଶତକଡ଼ା ୯୦ ଠାରୁ ୯୬ ପୁରୁଷ ଓ ନାରୀ କୌଣସି ନା କୌଣସି ବୟସରେ ହସ୍ତମୈଥୁନ ବା ସ୍ୱପ୍ନମୈଥୁନ ଅଭ୍ୟାସ କରିଥାନ୍ତି । ଏମାନଙ୍କ ମଧ୍ୟରୁ ଅଧିକାଂଶ ଚଉଦ ଠାରୁ ଅଠର ବର୍ଷ ବୟସ ଭିତରେ ଅଭ୍ୟାସ କରୁଥିବା ଜଣାଯାଏ । ଚଉଦ ବର୍ଷ ବୟସ ପୂର୍ବରୁ ଓ ଅଠର ବର୍ଷ ଠାରୁ ଏକୋଇଶ ବର୍ଷ ବୟସ ଭିତରେ ଅଭ୍ୟାସ କରୁଥିବା ବ୍ୟକ୍ତିଙ୍କ ସଂଖ୍ୟା କମ ନୁହେ । କିନ୍ତୁ ଦଶ ବର୍ଷ ବୟସ ପୂର୍ବରୁ ବା ବାଇଶ ବର୍ଷ ବୟସ ପରେ ହସ୍ତମୈଥୁନ ଅଭ୍ୟାସ କରୁଥିବା ବ୍ୟକ୍ତିଙ୍କ ସଂଖ୍ୟା ଅନ୍ୟାନ୍ୟଙ୍କ ଅନୁପାତରେ ବହୁତ କମ । କେତେକ ଲୋକ ତିରିଶ ବର୍ଷ ବୟସରେ ମଧ୍ୟ ଏହି ଅଭ୍ୟାସ କରୁଥିବା ଦେଖାଯାଇଛି । କିନ୍ତୁ ସେମାନେ କେତେ ପରିମାଣରେ ହସ୍ତମୈଥୁନ ଅଭ୍ୟାସ କରିଥାନ୍ତି ତାହାର କିଛି ଠିକ୍ ରହେ ନାହିଁ । କେତେକ ଦିନକୁ ଗୁରି ବା ପାଞ୍ଚ ଥର ଅଭ୍ୟାସ କରୁଥିବା ବେଳେ ଆଉ କେତେକ ମାସକେ ଥରେ ଅଭ୍ୟାସ କରିଥାନ୍ତି ଏବଂ ଆଉ କେତେକ ସପ୍ତାହକେ ଥରେ ଅଭ୍ୟାସ କରିଥାନ୍ତି ।

ଯୌବନର ଆରମ୍ଭରେ ସାଧାରଣତଃ ଶତକଡ଼ା ନବେ ଠାରୁ ଛପ୍ନାନବେ ବାଳକ ଓ ବାଳିକା ସ୍ୱମୈଥୁନ ବା ହସ୍ତମୈଥୁନ ଅଭ୍ୟାସ କରୁଥିବା ଆଗରୁ ଜଣାଯାଇଛି । ପୁଣି ନଅ ବା ଦଶ ବର୍ଷ ବୟସର ବାଳକ ଅପେକ୍ଷା ସେହି ବୟସର ବାଳିକାମାନେ ଅଧିକ ଚଞ୍ଚଳ, ଚତୁର ଓ ସାହସୀ । କିନ୍ତୁ ଯୌବନ ଆରମ୍ଭ ହେଲେ ବାଳିକାମାନଙ୍କ ଅପେକ୍ଷା ବାଳକମାନଙ୍କର ସାହସ ଅଧିକ ହୁଏ । ସାଧାରଣତଃ ମାସିକ ରଜଃସ୍ରାବ ଆରମ୍ଭର ପୂର୍ବରୁ ବାଳିକାମାନେ ଯୌନାକର୍ଷଣରେ ବଶ ହୋଇଥାନ୍ତି । ଏଠାରେ ମନେ ରଖିବା ଉଚିତ ଯେ ମାନସିକ ପ୍ରକ୍ରିୟା ନ ହେଲେ ଉତ୍ତେଜନା ସୃଷ୍ଟି ହୁଏ ନାହିଁ । ଯେଉଁମାନେ ସ୍ୱମୈଥୁନ ବା ହସ୍ତମୈଥୁନର ଆଶ୍ରୟ ନେଇଥାନ୍ତି ସେମାନଙ୍କ ପକ୍ଷେ ଏହି ଅଭ୍ୟାସରେ ରତ ହେବାବେଳେ ଅଭିଳଷିତ ବ୍ୟକ୍ତିର କଳ୍ପନା କରିବା ସ୍ୱାଭାବିକ ଏବଂ ଉଚିତ । କିନ୍ତୁ ଏହି ରକମ କଳ୍ପନା କରିବା ସମସ୍ତଙ୍କ ପକ୍ଷେ ସହଜ ହୋଇ ନ ଥାଏ । କେତେକ ସେହି ସମୟରେ ଅବାସ୍ତବ ଓ ଅନୁଚିତ ଅବସ୍ଥାର କଳ୍ପନା ମଧ୍ୟ କରିଥାନ୍ତି ।

ଡକ୍ଟର ହେନସାର୍ଡ଼ (Dr. Hensard) ଙ୍କ ମତରେ ସ୍ୱମୈଥୁନ କରିବା ବ୍ୟକ୍ତିମାନେ ହିଁ ପ୍ରଥମେ ଏହି ଅଭ୍ୟାସରେ ତୃପ୍ତି ବୋଧ କରିଥାନ୍ତି । ଏହା ପରେ ସେମାନେ ମାନସିକ ମୈଥୁନର ଅଭ୍ୟାସ ବା କଳ୍ପନା ଆରମ୍ଭ କରନ୍ତି । ଏହି କଳ୍ପନାମାନଙ୍କରେ କେବଳ ଶୃଙ୍ଗାର ବା ରସାଳ ବିଷୟର ସ୍ଥାନ ରହେ । ଏହିପରି ମୈଥୁନ ବରାବର ଅଭ୍ୟାସ କରିବା ଦ୍ୱାରା ସେମାନଙ୍କ ନୈତିକ ପତନ ଘଟେ । ଏହି କାରଣରୁ କେତେକ ଆତ୍ମହତ୍ୟା ମଧ୍ୟ କରିଥାନ୍ତି ।

ମାନସିକ ମୈଥୁନରେ ପ୍ରବୃତ୍ତ ଥିବା ଲୋକଙ୍କ ମଧ୍ୟରୁ କେତେକ ରତିସ୍ୱପ୍ନ ଦେଖିଥାନ୍ତି ଓ ଆଉ କେତେକ ଦିବାସ୍ୱପ୍ନ ମଧ୍ୟ ଦେଖିଥାନ୍ତି । ଶିଳ୍ପୀ କିମ୍ବା ଚଞ୍ଚଳମତି ଓ କଳ୍ପନା କରୁଥିବା ବ୍ୟକ୍ତିମାନେ ସାଧାରଣତଃ ଦିବାସ୍ୱପ୍ନରେ ମାତିଥାନ୍ତି । ସେମାନଙ୍କ ସ୍ୱପ୍ନରେ ଯେ କେବଳ ଯୌନ-ସଙ୍ଗମ ରହେ ତା’ ନୁହେ, ସେମାନେ ଯେଉଁ ଜିନିଷକୁ ଆଗ୍ରହ କରିଥାନ୍ତି ତାହାହିଁ କଳ୍ପନା କରିବାରେ ଲାଗିଥାନ୍ତି । ଯୁବକ ଓ ଯୁବତୀମାନେ କୌଣସି ଉପନ୍ୟାସ ବା ସାହିତ୍ୟରେ ପଢ଼ିଥିବା ମଉଜିଆ

ଅବସ୍ଥାକୁ ଦିବାସ୍ୱପ୍ନରେ କଳ୍ପନା କରିଥାନ୍ତି ଓ ସେହି କଳ୍ପନାରୁ ସେମାନେ ଉତ୍ତେଜନା ପାଇଥାନ୍ତି । ଦିବାସ୍ୱପ୍ନରେ ମାତିଥିବା ବ୍ୟକ୍ତିମାନେ ହସ୍ତମୈଥୁନ ବା ସ୍ୱମୈଥୁନ ଅଳ୍ପ ମାତ୍ରାରେ ଅଭ୍ୟାସ କରନ୍ତି । କିନ୍ତୁ ସେମାନଙ୍କର ବହୁତ ସ୍ୱପ୍ନଦୋଷ ହୁଏ । ପ୍ରତ୍ୟେକ ବାଳକାଠାରେ ଯୌବନର ଆରମ୍ଭ ସମୟରେ ଏହା ଦେଖାଯାଇ ପାରେ । ନିଦ ଲାଗିଥିବା ବେଳେ ଅସଂଯତ ଅବସ୍ଥା ଯୋଗୁଁ ରସାଳ ବା ଶୃଙ୍ଗାର ସ୍ୱପ୍ନ ଦେଖି ଶେଷରେ ବାଳକମାନଙ୍କର ଶୁକ୍ର ସ୍ଖଳନ ହୁଏ ଏବଂ ବାଳିକା ବା ଯୁବତୀ-ମାନଙ୍କ ପକ୍ଷେ ତାହା ଯୌନ ତୃପ୍ତିର ପ୍ରାପ୍ୟ ଶେଷ ସୀମାରେ ପହଞ୍ଚିଥାଏ । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ନିଦ ଭାଙ୍ଗିଲା ପରେ ସ୍ୱପ୍ନର ବିବରଣୀ ସାଧାରଣତଃ ମନେ ରହେ ନାହିଁ । ଯୌନବିତ୍ ଫ୍ରୟେଡ୍ କହନ୍ତି ଯେ ଦବେଇ ରଖିଥିବା ଇଚ୍ଛା ସାଧାରଣତଃ ସ୍ୱପ୍ନରେ ଆସେ । ନୈତିକତାର ଭୟ ଯୋଗୁଁ ବାସ୍ତବ ଜୀବନରେ ଯେଉଁ ଲାଳସା ତୃପ୍ତ ହୋଇପାରେ ନାହିଁ ତାହା ସ୍ୱପ୍ନରେ ଦେଖାଦିଏ । ସେହେତୁ ରୁଦ୍ଧ ହୋଇଥିବା ଯୌନ ପ୍ରବୃତ୍ତି ସ୍ୱପ୍ନଦୋଷରେ ଗୋଟିଏ ରାସ୍ତା ପାଏ ।

ପ୍ରଥମ ଯୌବନରେ ପ୍ରାୟ ପ୍ରତ୍ୟେକ ମନୁଷ୍ୟର ସ୍ୱପ୍ନଦୋଷ ହେବା ସ୍ୱାଭାବିକ ଓ ସାଧାରଣ ଜିନିଷ । ଯେଉଁ ଯୁବକମାନେ ଯୌନ ପ୍ରବୃତ୍ତିକୁ ଦବାଇ ରଖିବା ପାଇଁ ସଂଯମ ଅଭ୍ୟାସ କରନ୍ତି, ସେମାନଙ୍କର ମଧ୍ୟ ନିୟମିତ ଭାବେ ସ୍ୱପ୍ନଦୋଷ ହୁଏ ଯାହା କି ଅତୃପ୍ତ ଯୌନ ପ୍ରବୃତ୍ତିର ପ୍ରତିଫଳ ଭାବେ ପ୍ରକାଶ ପାଏ । ସଂଯମ ଅଭ୍ୟାସ କରୁଥିବା ବ୍ୟକ୍ତିମାନଙ୍କର କମ୍‌ରେ ପ୍ରାୟ ପନ୍ଦର ଦିନରେ ଥରେ କିମ୍ବା ମାସକେ ଥରେ ସ୍ୱପ୍ନଦୋଷ ହୁଏ ବୋଲି ବିଶେଷଜ୍ଞମାନେ ମତ ଦିଅନ୍ତି ।

ଯୌବନର ଆରମ୍ଭ ପୂର୍ବରୁ ଅର୍ଥାତ୍ ପନ୍ଦର ବା ସତର ବର୍ଷ ବୟସରେ ପ୍ରାୟ ପ୍ରତ୍ୟେକ ସ୍ୱାସ୍ଥ୍ୟବାନ୍ ବାଳକମାନଙ୍କର ସ୍ୱପ୍ନଦୋଷ ଆରମ୍ଭ ହୋଇଥାଏ । ଏହି ବୟସବେଳକୁ ସେମାନଙ୍କର ଯୌନ ସଙ୍ଗମର କୌଣସି ଅନୁଭୂତି ନ ଥାଏ । ଅଳ୍ପ କେତେକ ବାଳକ ସେତେବେଳକୁ ସ୍ୱମୈଥୁନ ବା ହସ୍ତମୈଥୁନ ଅଭ୍ୟାସ କରିଥାନ୍ତି । ଏହି ସ୍ୱପ୍ନଦୋଷ ସମୟରେ ସେମାନେ ନ ଜାଣିବା ନାରୀମାନଙ୍କର ଆକାର ଦେଖିଥାନ୍ତି । ଆଉ କେତେକ କେଉଁଠାରେ ଦେଖିଥିବା ନାରୀମାନଙ୍କୁ

ସ୍ୱପ୍ନରେ ଭେଟିଥାନ୍ତି । ସ୍ୱପ୍ନରେ ଯୌନସଙ୍ଗମ ଅନୁଭୂତ ହେବା ସମୟରେ କେତେକଙ୍କର ସ୍ଖଳନ ହୋଇଥାଏ । ଅଧିକାଂଶ ବାଳକମାନଙ୍କର ସ୍ୱପ୍ନରେ ପ୍ରେମ ସମ୍ଭାଷଣ ଓ ସ୍ପର୍ଶରେ ହିଁ ସ୍ଖଳନ ହୋଇଥାଏ । ଆଶ୍ଚର୍ଯ୍ୟର ବିଷୟ ଯେ ଯେଉଁମାନଙ୍କୁ ପ୍ରକୃତରେ ସ୍ନେହ ବା ପ୍ରେମ କରିଥାନ୍ତି ସେମାନଙ୍କୁ କମ୍ ସ୍ୱପ୍ନରେ ଦେଖନ୍ତି କିମ୍ବା ସ୍ୱପ୍ନରେ ଦେଖାଗଲେ ସୁଦ୍ଧା ସେମାନଙ୍କ ସହିତ ଯୌନ ପ୍ରବୃତ୍ତିର ବିଶେଷ ସମ୍ବନ୍ଧ ରହି ନ ଥାଏ । ସ୍ୱପ୍ନର ବିବରଣୀ ଚେତନା ଫେରିଲା ପରେ ବିଶେଷ ମନେ ରହେ ନାହିଁ । ଯଦି କିଛି ମନେ ରହେ ତାହା ହେଲେ ସ୍ୱପ୍ନରେ ଦେଖିଥିବା ନାରୀ ଅଚିହ୍ନା ରହେ କିମ୍ବା ସଚେତ ଅବସ୍ଥାରେ ଯାହା ପ୍ରତି ପ୍ରକୃତ ଯୌନ ଆକର୍ଷଣ ନ ଥାଏ ସେହିପରି କେହି ସାଧାରଣତଃ ଦେଖାଯାଇଥାନ୍ତି ।

ନାରୀମାନଙ୍କ ପକ୍ଷେ ସ୍ୱପ୍ନଦୋଷ ଭିନ୍ନ ରକମର । କିଶୋର-ମାନଙ୍କର ଯେପରି ସ୍ୱପ୍ନରେ ସ୍ଖଳନ ହୁଏ, କିଶୋରୀମାନଙ୍କର ସେପରି ସ୍ୱପ୍ନରେ ସ୍ଖଳନ ହୁଏ ନାହିଁ । ସେହେତୁ ସେମାନେ ଯୌନ ତୃପ୍ତିର ନିର୍ଦ୍ଦିଷ୍ଟ ଅବସ୍ଥା ବୁଝି ପାରନ୍ତି ନାହିଁ । ଯୁବତୀମାନେ ନିୟମିତ ଭାବେ ଏହିପରି ସ୍ୱପ୍ନ ଦେଖି ପାରନ୍ତି । ରତିକ୍ରିୟା ପରେ ନାରୀମାନେ ନିଦରେ ଏପରି ସ୍ୱପ୍ନ ଦେଖିଲେ ସୁଦ୍ଧା ସେମାନେ ଯୌନ ତୃପ୍ତିରେ ତତ୍ପର ନ ଥାନ୍ତି । ସାଧାରଣତଃ ନାରୀମାନେ ଶୃଙ୍ଗାର ସ୍ୱପ୍ନରେ ରତିକ୍ରିୟା ପରି ଯୌନତୃପ୍ତି ପାଆନ୍ତି ନାହିଁ । ସେହେତୁ ସ୍ୱପ୍ନରେ ସେମାନେ ଯୌନ ତୃପ୍ତି ପରିବର୍ତ୍ତେ ଉତ୍ତେଜନା ପାଇଥାନ୍ତି ।

କେଉଁ ପରିମାଣରେ ଅର୍ଥାତ୍ କେତେ ମାତ୍ରାରେ ସ୍ୱପ୍ନଦୋଷ ହୁଏ ତାହା ପ୍ରତ୍ୟେକ ଯୁବକର ଜୀବନନିର୍ବାହ ପ୍ରଣାଳୀ ଓ ଅନ୍ୟାନ୍ୟ କେତେକ ଆନୁଷଙ୍ଗିକ ଅବସ୍ଥା ଉପରେ ନିର୍ଭର କରେ । କେତେକଙ୍କର ମାସକୁ ଥରେ ସ୍ୱପ୍ନଦୋଷ ହେବା ବେଳେ ଆଉ କେତେକଙ୍କର ସପ୍ତାହରେ ଥରେ ହୁଏ ଏବଂ ଆଉ କେତେକଙ୍କର ସପ୍ତାହ ମଧ୍ୟରେ ଏକାଧିକ ବାର ହୁଏ । ସ୍ୱାସ୍ଥ୍ୟବାନ୍ ବ୍ୟକ୍ତିମାନେ, ଯେଉଁମାନଙ୍କର କୌଣସି ରକମ ଯୌନ କ୍ରିୟା ରହେ ନାହିଁ ସେମାନଙ୍କର ସ୍ୱପ୍ନଦୋଷ ହୋଇଥାଏ । କେବେ କିପରି କେତେ ଦିନ ବା ସପ୍ତାହ ପର୍ଯ୍ୟନ୍ତ ସ୍ୱପ୍ନଦୋଷ ନ ହୋଇ ଦୁଇ ବା ତିନି ଥର ଲାଗେ ଲାଗେ ହୋଇଯାଏ । ସ୍ୱପ୍ନଦୋଷ

ହେଲେ ସୁଦ୍ଧା ଯେତେବେଳ ଯାଏ ଯୁବକ ନିଜର ମାନସିକ ଓ ଶାରୀରିକ ସ୍ୱାସ୍ଥ୍ୟ ଠିକ୍ ଥିବା ଅନୁଭବ କରେ, ସେତେବେଳ ପର୍ଯ୍ୟନ୍ତ କୌଣସି ଖରାପ ଅବସ୍ଥା ପହଞ୍ଚେ ନାହିଁ । କେତେକ ଲୋକ ରାତିରେ ସ୍ୱପ୍ନଦୋଷ ହେବାପରେ ସକାଳେ ଶାରୀରିକ ଦୁର୍ବଳତା ବା ମାନସିକ ନିସ୍ତେଜତା ଅନୁଭବ କରିଥାନ୍ତି । ଶରୀରର ସ୍ୱାସ୍ଥ୍ୟ ଅନୁପାତରେ ସ୍ଖଳନର ମାତ୍ରା ଅଧିକ ହେଲେ ଏପରି ଅନୁଭୂତ ହୁଏ ।

କେତେକ ପୁରୁଷଙ୍କର ରାତିରେ ସ୍ୱପ୍ନଦୋଷ ହୁଏ କିମ୍ବା ଗୋଟିଏ ରାତିରେ ଏକାଧିକ ବାର ସ୍ୱପ୍ନଦୋଷ ହୁଏ । ସକାଳେ ଉଠିବା ପରେ ଚିହ୍ନ ଦେଖି ରାତିରେ ସ୍ଖଳନ ହୋଇଥିବା ବୁଝି ପାରିଥାନ୍ତି ! ଏହିପରି ସ୍ଖଳନମାନଙ୍କରେ କୌଣସି ରକମର ଶୃଙ୍ଗାର ସ୍ୱପ୍ନ ନ ଥାଏ କିମ୍ବା ରସାଳ ସ୍ୱପ୍ନ ଦେଖିଥିବା କଥା ମନେ ରହେ ନାହିଁ । ଆଉ କେତେକଙ୍କର ଦିନବେଳେ ସାମାନ୍ୟ ରକମର ସ୍ପର୍ଶରେ ସ୍ଖଳନ ହୋଇଥାଏ । ଏହିପରି ସ୍ଖଳନ ହେଲେ ଦୁର୍ବଳତା, ନିସ୍ତେଜତା, ହୃତ୍‌ପିଣ୍ଡ କ୍ରିୟାରେ ବାଧା, ସ୍ନାୟୁବିକ ବିକାର ଜାତ ହେବା ସ୍ୱାଭାବିକ ।

ଶୋଇବା ପୂର୍ବରୁ ରସାଳ ସାହିତ୍ୟ, ଉପନ୍ୟାସ ପ୍ରଭୃତି ପଢ଼ିବା ଯୋଗୁ ଅନେକ ସମୟରେ ସ୍ୱପ୍ନଦୋଷ ହୋଇଥାଏ । ମାନସିକ ଯୌନ ଉତ୍ତେଜନା ବୃଦ୍ଧି ପାଇବା ଦ୍ୱାରା ସ୍ୱପ୍ନଦୋଷ ହୁଏ । ରସାଳ ସାହିତ୍ୟ ପଢ଼ିବା ଦ୍ୱାରା କିମ୍ବା ରସାଳ କଳ୍ପନା କରିବା ଦ୍ୱାରା ସାଧାରଣତଃ ମାନସିକ ଯୌନ ଉତ୍ତେଜନା ଅଜାଣତରେ ବୃଦ୍ଧି ପାଏ ।

ଏହି ସମସ୍ତରୁ ବୁଝାଯିବ ଯେ ବାଳକମାନଙ୍କର ଯୌବନର ଆରମ୍ଭରେ ଯେଉଁ ସ୍ୱମୈଥୁନ ବା ହସ୍ତମୈଥୁନ ଅଭ୍ୟାସ ଦେଖା ଦେଇଥାଏ, ତାହା କେବଳ ଯୌନ ପ୍ରବୃତ୍ତିର ଗୋଟିଏ ନିର୍ଗମ ପଥ । ଯୌନସଙ୍ଗମର ସୁବିଧା ପାଇବା ପରେ ଏହି ଅଭ୍ୟାସ ସାଧାରଣତଃ ବନ୍ଦ ହୋଇଯାଏ ଏବଂ ଏହା ସେତେ ଦୂର କ୍ଷତିକାରକ ନୁହେଁ ।

ପ୍ରତ୍ୟେକ ମନୁଷ୍ୟ ଯୌବନରେ ପଦାର୍ପଣ କରି ଅନ୍ୟ ଲିଙ୍ଗର ସଙ୍ଗୀ ଖୋଜିବା ପର୍ଯ୍ୟନ୍ତ କେତୋଟି ଅବସ୍ଥା ଦେଇ ଗତି କରେ । ଯଥା—

(କ) ପ୍ରଥମ ଅବସ୍ଥାରେ ନିଜ ଶରୀର ପ୍ରତି ଆକୃଷ୍ଟ ହୁଏ ।

(ଖ) ଦ୍ୱିତୀୟ ଅବସ୍ଥାରେ ନିଜର କୌଣସି ଯୌନପ୍ରବୃତ୍ତି ରହେ ନାହିଁ ।

(ଗ) ତୃତୀୟ ଅବସ୍ଥାରେ ସମଲିଙ୍ଗର ସଙ୍ଗୀ ଖୋଜେ ।
(ଘ) ଚତୁର୍ଥ ଅବସ୍ଥାରେ ଅନ୍ୟ ଲିଙ୍ଗର ସଙ୍ଗୀ ଖୋଜେ ।

ଯେଉଁମାନଙ୍କର ଯୌନ ସଙ୍ଗମର ସୁବିଧା ନ ପାଇବା ଯୋଗୁଁ ଏହି ଅଭ୍ୟାସ ଯୁବକ ଅବସ୍ଥାରେ ମଧ୍ୟ ରହେ, ସେମାନଙ୍କ ପକ୍ଷେ ଯୌନ ସଙ୍ଗମର ଇଚ୍ଛା ବା ପ୍ରବୃତ୍ତି ରହିଲେ ଭବିଷ୍ୟତରେ କ୍ଷତି ହୁଏ ନାହିଁ । କିନ୍ତୁ ଯେଉଁମାନେ ସ୍ୱାଭାବିକ ରତିକ୍ରିୟାର ସୁବିଧା ରହି ମଧ୍ୟ ଏହି ଅଭ୍ୟାସ କରନ୍ତି କିମ୍ବା ରତିକ୍ରିୟା ବଦଳରେ ଏହି ଅଭ୍ୟାସରୁ ହିଁ ଯୌନ ତୃପ୍ତି ପାଆନ୍ତି, ସେମାନଙ୍କର ଏହା ଅସ୍ୱାଭାବିକ ପ୍ରବୃତ୍ତିରେ ପରିଣତ ହୁଏ । ସେହେତୁ ସ୍ୱମୈଥୁନ ପ୍ରବୃତ୍ତି ପ୍ରତି ପ୍ରତ୍ୟେକ ସଜାଗ ରହିବା ଉଚିତ ।

ହସ୍ତମୈଥୁନ ବା ସ୍ୱମୈଥୁନ ବିରୁଦ୍ଧରେ ପ୍ରଚାର କରିବାକୁ ଯାଇ ଅନେକ ଲୋକ ସେଥିର ଭୟଙ୍କର ଚିତ୍ର ବର୍ଣ୍ଣନା କରିଥାନ୍ତି । ଏହା କୋମଳ ଓ ସରଳମତି ବାଳକବାଳିକାମାନଙ୍କ ଠାରେ ନୈତିକ ଦୁର୍ବଳତା ଆଣିବା ସଙ୍ଗେ ସଙ୍ଗେ ଅନେକ ସମୟରେ ଅସ୍ୱାଭାବିକ ମାନସିକ ପ୍ରକ୍ରିୟା ସୃଷ୍ଟି କରେ ।

ଯୌବନର ଆରମ୍ଭବେଳେ ଅନେକ ସ୍ଥାନରେ ଯେଉଁ ସାଧାରଣ ପ୍ରକାର ହସ୍ତମୈଥୁନର ଅଭ୍ୟାସ ଦେଖାଯାଏ, ତାହାର ସେପରି କୌଣସି ପ୍ରଭାବ ଯୌନଶକ୍ତି ଉପରେ ପଡ଼େ ନାହିଁ ବୋଲି ଡାକ୍ତରମାନେ ମତ ଦିଅନ୍ତି । କିନ୍ତୁ ଏହି ଅଭ୍ୟାସ ଯୋଗୁଁ ଯେଉଁ ନୈତିକ ଦ୍ୱନ୍ଦ୍ୱ ଯୁବକର ମନରେ ଆସେ ତଦ୍ୱାରା ସ୍ନାୟୁବିକ ସମତାରେ ବାଧା ସୃଷ୍ଟି ହୋଇପାରେ, କିମ୍ବା ଅତ୍ୟଧିକ ଅଭ୍ୟାସର ମାତ୍ରା ଯୋଗୁଁ ମଧ୍ୟ ସ୍ନାୟୁବିକ ସମତାରେ ବାଧା ସୃଷ୍ଟି ହୋଇପାରେ । ପୁଣି ଭବିଷ୍ୟତରେ ଯୁବକ ମନରେ ଧାରଣା ଜାତ ହୁଏ ଯେ ପୂର୍ବର ହସ୍ତମୈଥୁନ ଅଭ୍ୟାସ ଯୋଗୁଁ କୌଣସି ନାରୀ ସହିତ ରତିକ୍ରିୟା କରିବାରେ ସେ ଅକ୍ଷମ । ତେଣୁ ସେ ନାରୀ ପ୍ରତି ଆକୃଷ୍ଟ ହୁଏ ନାହିଁ ବା ନାରୀକୁ ଦେଖିଲେ ତାହାର ଯୌନଶକ୍ତି ଉତ୍ତେଜନା ପାଏ ନାହିଁ । ଅନେକ ଅସ୍ୱାଭାବିକ ଯୌନ ପ୍ରବୃତ୍ତି ଥିବା ମନୁଷ୍ୟମାନଙ୍କ ଠାରେ ପୂର୍ବରେ ହସ୍ତମୈଥୁନ ଅଭ୍ୟାସ କରିଥିବା ଦେଖାଯାଇଛି ଏବଂ ଯୌବନରେ ପଦାର୍ପଣ କରିବା ପରେ ମଧ୍ୟ ସେହି ଅଭ୍ୟାସ ସେମାନେ ଛାଡ଼ି ନ ଥିବା ଜଣାଯାଏ ।

ଡାକ୍ତର ଓ ଯୌନବିତ୍‌ମାନେ ମତ ଦିଅନ୍ତି ଯେ ଅତିରିକ୍ତ ହସ୍ତମୈଥୁନ ଦ୍ୱାରା ମାନସିକ ନିସ୍ତେଜତା ଆସେ ଏବଂ ମନରେ ଏକାକୀ ଭାବ (Melancholia) ଦେଖାଦିଏ । କେତେକ ଏହି ଅଭ୍ୟାସକୁ ଛାଡ଼ି ନ ପାରି ନୈତିକ ପତନ ହେବା ବିଚାରି କରି ଆତ୍ମହତ୍ୟା କରିଥାନ୍ତି ବା ସେଥିନିମନ୍ତେ ଚେଷ୍ଟା କରିଥାନ୍ତି । ହସ୍ତମୈଥୁନର ଅଭ୍ୟାସ ଯୋଗୁଁ ସେପରି କୌଣସି ରୋଗ ଜାତ ହେବା କିମ୍ବା ଶାରୀରିକ ବା ମାନସିକ ବିକାର ଜାତ ହେବା ଡାକ୍ତରମାନେ କହନ୍ତି ନାହିଁ । କିନ୍ତୁ ଯୌବନରେ ପହଞ୍ଚିବା ପରେ ନାରୀ ସହିତ ରତିକ୍ରିୟାର ସୁବିଧା ଥିବାବେଳେ ଯେଉଁ ପୁରୁଷମାନେ ଯୌନତୃପ୍ତି ନିମନ୍ତେ ହସ୍ତମୈଥୁନ ଅଭ୍ୟାସ କରିଥାନ୍ତି, ତାହାକୁ ଅସ୍ୱାଭାବିକ ପ୍ରବୃତ୍ତି ବୋଲି ଧରିବା ବିଧେୟ ।

ହସ୍ତମୈଥୁନ ବା ସ୍ୱମୈଥୁନ ଯୌବନର ଆରମ୍ଭରେ ଗୋଟିଏ ସ୍ୱାଭାବିକ ଓ ସାଧାରଣ ଅବସ୍ଥା । ଅତିମାତ୍ରାରେ ଯୌନ ସଙ୍ଗମ କରିବା ଶରୀରପକ୍ଷେ ଯେପରି କ୍ଷତିକାରକ ଏହା ମଧ୍ୟ ଅତି ମାତ୍ରାରେ ଅଭ୍ୟାସ କରିବା ଶରୀର ପକ୍ଷେ ସେହିପରି କ୍ଷତିକାରକ । ଏହି ଅଭ୍ୟାସରୁ କ୍ଷାନ୍ତ ବା ନିବୃତ୍ତି ହେବା ଯେ ଶରୀର ପକ୍ଷେ ଉପକାରୀ, ଏଥିରେ କୌଣସି ସନ୍ଦେହ ନାହିଁ । ଶରୀରର କେତେକ ଅସ୍ୱାସ୍ଥ୍ୟକର ପରିସ୍ଥିତି ନେଇ ଅନେକ ସମୟରେ ମନୁଷ୍ୟର ଯୌନ ଉତ୍ତେଜନା ବୃଦ୍ଧି ହୁଏ । କେତେକ ରକମର ଅଭ୍ୟାସ ଦ୍ୱାରା ମାନସିକ ଓ ଶାରୀରିକ ଉତ୍ତେଜନା କମିଯାଏ । ସେହେତୁ କୋମଳମତି ବାଳକବାଳିକାମାନେ ଯୌବନରେ ପଦାର୍ପଣ କରିବା ବେଳେ ଏହି ଯେଉଁ ଅସୁବିଧାର ସମ୍ମୁଖୀନ ହୁଅନ୍ତି ସେହି ଅସୁବିଧା ପ୍ରତି ସଜାଗ ରହି ସେଥିରୁ ନିବୃତ୍ତ ହେବା ପାଇଁ ଚେଷ୍ଟା କରିବା ଆବଶ୍ୟକ । ନିମ୍ନରେ କେତୋଟି ବିଷୟ ଉଲ୍ଲେଖ କରାଗଲା ଯାହା କି ସେମାନଙ୍କର ଏହି ଚେଷ୍ଟାରେ ସାହାଯ୍ୟ କରିବ—

୧ । ଶରୀର ବରାବର ପରିଷ୍କାର ରଖିବ । ସକାଳେ ଶଯ୍ୟାତ୍ୟାଗ କରିବା ପରେ ଥଣ୍ଡା ପାଣିରେ ଗାଧୋଇବ । ଗାଧୋଇବାବେଳେ ଲିଙ୍ଗ ମଧ୍ୟ ସଫା କରିବା ଉଚିତ । ନଚେତ୍ ମଣିଭିତରେ ଆବର୍ଜନା ରହି ଅନେକ ସମୟରେ ଉତ୍ତେଜନା ସୃଷ୍ଟି କରେ ।

୨ । ସାଧାରଣତଃ ବାଳକାମାନଙ୍କ ପକ୍ଷେ କୃମିରୋଗ ହେଲେ ଜନନେନ୍ଦ୍ରିୟ କୁଣ୍ଡେଇ ହୁଏ । ଉପଯୁକ୍ତ ଔଷଧ ବ୍ୟବହାର କରି ସେଥିରୁ ଶୀଘ୍ର ମୁକ୍ତିଲାଭ କରିବା ଦରକାର ।

୩ । ନିୟମିତ ରୂପେ ଝାଡ଼ା ସଫା ରହିବା ଉଚିତ । ଝାଡ଼ା ସଫା ରଖିବା ନିମନ୍ତେ ଦୈନିକ ନିୟମିତ ସମୟରେ ଝାଡ଼ା ଫେରିବା ଅଭ୍ୟାସ କଲେ ଝାଡ଼ା ସଫା ରହେ । ଖାଇବାବେଳେ ଦହି ବା ଚକ୍କା ଖାଇବା ଦ୍ୱାରା ଶରୀରର ବହୁତ ଉପକାର ହୁଏ ।

୪ । ଉତ୍ତେଜକ କିମ୍ବା ମାଦକ ଦ୍ରବ୍ୟ ଯଥା ଗୁଣ୍ଡା, କୋକୋ, କଫି, ମଦ ପ୍ରଭୃତି ନିଶାଦ୍ରବ୍ୟ ବ୍ୟବହାର କରିବା ଅନୁଚିତ । ଅଣ୍ଡା, ମାଂସ, ମାଛ, ପାକଳ ଛେନା ପ୍ରଭୃତି ଖାଦ୍ୟ ନ ଖାଇବା ଭଲ କିମ୍ବା ଅଳ୍ପ ପରିମାଣରେ ଖାଇବ । ଗୁଆଳ୍ପକ, ଲଙ୍କା, ଗୋଲମରିଚ ପ୍ରଭୃତି ମସଲା ଦ୍ରବ୍ୟ ଅଳ୍ପ ପରିମାଣରେ ବ୍ୟବହାର କରିବା ଉଚିତ । ଗହମ, ଗୁଣ୍ଡଳ, ବାର୍ଲି ଏବଂ ଯଥେଷ୍ଟ ପରିମାଣରେ ସଜ ଓ ତଟକା ପନିପରିବା, ଫଳମୂଳ, ଦୁଧ, ଘୋଳଦହି ପ୍ରଭୃତି ଖାଇବା ଭଲ । ଏହା ଫଳରେ ଝାଡ଼ା ସଫା ରହି ଶରୀର ସୁସ୍ଥ ଓ ସବଳ ରହେ । ଉଚିତ ପରିମାଣରେ ପାଣି ମଧ୍ୟ ପିଇବା ଦରକାର । ରାତିବେଳା ଖାଇସାରିବାର ଦୁଇ ବା ତିନି ଘଣ୍ଟା ପରେ ଶୋଇବା ଉଚିତ । ଗୁରୁଭୋଜନରେ ବଦ୍‌ହଜମ ହେବାପରି ଖାଦ୍ୟ ଖାଇବ ନାହିଁ, କିମ୍ବା ପେଟ ଭର୍ତ୍ତି କରି ଖାଦ୍ୟ ଖାଇବା ଠିକ୍ ନୁହେ । ଶୋଇବା ପୂର୍ବରୁ ପେଟ ଭରି ପାଣି କିମ୍ବା ଅନ୍ୟ କୌଣସି ଦ୍ରବ୍ୟ ପିଇବା ଉଚିତ ନୁହେ ।

୫ । ଖୋଲା ପବନରେ ଦୈନିକ ବ୍ୟାୟାମ ଓ କସରତ୍ କରିବା, ଦୌଡ଼ିବା, ପହଁରିବା ଦ୍ୱାରା ଶରୀରର ଉପକାର ହୁଏ । ସ୍ୱପ୍ନଦୋଷ ଭୋଗୁଥିବା ବ୍ୟକ୍ତିମାନେ ବ୍ୟାୟାମ ଓ କସରତ୍ କରିବା ଦ୍ୱାରା ହାଲିଆ ହୋଇ ରାତିରେ ଶୋଇବାକୁ ଯିବା ଦରକାର । ସକାଳେ ନିଦ ଭାଙ୍ଗିବା ପରେ ଶେଯରେ ପଡ଼ି ନ ରହି ସଙ୍ଗେ ସଙ୍ଗେ ଶଯ୍ୟା ଛାଡ଼ିବା ଉଚିତ ।

୬ । ଶୋଇବା ପୂର୍ବରୁ ମଳମୂତ୍ର ତ୍ୟାଗ କରି ଶୋଇବାକୁ ଯିବ । ଶୋଇବା ବେଳେ ହାତ ଦୁଇଟି ବାହାରେ ଖୋଲା ରଖି ଶୋଇବା ଉଚିତ ।

୭ । କୋମଳ ଶେଯ ବଦଳରେ କଠିନ ଓ ଶକ୍ତ ଶେଯରେ ଶୋଇବା ଦରକାର । ଶେଯ ବଦଳରେ କନ୍ଥା ଓ ପଟିରେ ଶୋଇବା ଭଲ । ଯେ କୌଣସି ରକମର ଶେଯ ବ୍ୟବହାର କଲେ ଅଣ୍ଟାରୁ ଗୋଡ଼ ପର୍ଯ୍ୟନ୍ତ ଶେଯର ଅଂଶ କୋମଳ ନ ରହିବା ଭଲ ।

୮ । ଶୋଇବା ବେଳେ ଚିତ୍ ହୋଇ ନ ଶୋଇ କଡ଼ରେ ବା କଡ଼ ମୋଡ଼ି ଶୋଇବା ଭଲ । ଚିତ୍ ହୋଇ ଶୋଇବା ଦ୍ୱାରା ଶରୀର ଭିତରେ ଜନନେନ୍ଦ୍ରିୟ ଉପରେ ଚାପ ପଡ଼ି ଯୌନ ଉତ୍ତେଜନା ସୃଷ୍ଟି ହୋଇ ସ୍ୱପ୍ନଦୋଷ ହେବା ସମ୍ଭାବନା ।

୯ । ଶୋଇବା ଘର ଥଣ୍ଡା ରହିବା ଉଚିତ ଓ ଘରର ଝରକା ଖୋଲି ଶୋଇବ । ଶୋଇବାବେଳେ ଲୁଗା ଭିଡ଼ି ପିନ୍ଧିବ ନାହିଁ ।

୧୦ । ଶୃଙ୍ଗାର ବା ରସାଳ ସାହିତ୍ୟ, ଉପନ୍ୟାସ, ସିନେମା ପ୍ରଭୃତି ମାନସିକ ଉତ୍ତେଜନା ସୃଷ୍ଟି କରିଥାଏ । ଏହା ବଦଳରେ ଦୁଃସାହସିକ ଉପନ୍ୟାସ (Adventurous) ଓ ଗପ ('ଅଜାଙ୍କ କାହାଣୀ' ପରି) ଆଦି ପଢ଼ିବା ଭଲ କିମ୍ବା କଠିନ ବିଷୟ ପଢ଼ିବା ଭଲ ।



୬—

## ହସ୍ତମୈଥୁନ ବା ସ୍ୱମୈଥୁନର ପରିଣାମ

ବହୁକାଳରୁ ହସ୍ତମୈଥୁନ ବା ସ୍ୱମୈଥୁନ ଯୌବନର ଆରମ୍ଭରେ ଅଭ୍ୟାସ କରାଯାଉଥିଲେ ସୁଦ୍ଧା ଆଜକାଲି ଏହାର ବହୁଳଭାବରେ ଯେତିକି ପ୍ରଚାର ଚାଲିଛି ଓ ଭୟଙ୍କର ଚିତ୍ର ବର୍ଣ୍ଣନା କରାଯାଉଛି ପୂର୍ବେ ସେତିକି ପ୍ରଚାର କରାଯାଉ ନ ଥିଲା । ଯେଉଁମାନେ ହସ୍ତମୈଥୁନକୁ ଘୃଣା କରୁଥିଲେ ସେମାନେ ମଧ୍ୟ ବାଳିକାମାନଙ୍କ ହସ୍ତମୈଥୁନ ଅଭ୍ୟାସ ପ୍ରତି ନଜର ଦେଉ ନ ଥିଲେ ।

ଆଦିବାସୀ ସମାଜରେ ପିଲାମାନଙ୍କ ହସ୍ତମୈଥୁନକୁ ଏକ ପ୍ରକାର କୌତୁକ ବୋଲି ଧରିଥାନ୍ତି । ଖ୍ରୀଷ୍ଟଧର୍ମର ପ୍ରଚାର ପରଠାରୁ ଆରମ୍ଭ କରି ମଧ୍ୟଯୁଗ ପର୍ଯ୍ୟନ୍ତ ଏହି କୁ-ଅଭ୍ୟାସ ପ୍ରତି ୟୁରୋପରେ ଅଧିକ ଧ୍ୟାନ ଦିଆଗଲା । ଏହି ସମୟରେ ପୂର୍ବପରି ଯୌନସଙ୍ଗମର ସୁବିଧା ନ ରହିବାରୁ ହସ୍ତମୈଥୁନ ବା ସ୍ୱମୈଥୁନ ଅଭ୍ୟାସର ପ୍ରସାର ହେଲା । ଏହି ପ୍ରସାର ଦେଖି ଖ୍ରୀଷ୍ଟିୟାନ ଧର୍ମଯାଜକମାନେ ଏଥିର ନିନ୍ଦା କରିବା ଆରମ୍ଭ କଲେ । ସେମାନେ ଏହି ଅଭ୍ୟାସକୁ ପାପ ବୋଲି କହିବାବେଳେ ଡାକ୍ତରମାନେ ଏଥିରୁ ଭୟଙ୍କର ଚିତ୍ର ବର୍ଣ୍ଣନା କରିବାକୁ ଲାଗିଲେ । ଏହି ଅଭ୍ୟାସ ପ୍ରତ୍ୟେକ ରୋଗର କାରଣ ବୋଲି କୁହାଗଲା । ମାନସିକ ଦୁର୍ବଳତା, ଲଜ୍ଜାମୁଖ, ରକ୍ତହୀନତା, ଆଖିପତା କାଳିଆ ହେବା, ଗାଲ ଟାକୁଆ ହେବା, ଶରୀର ଦୁର୍ବଳ ଓ ପତଳା ହେବା, ମାନସିକ ଉଦ୍‌ବେଗ, ମୁଣ୍ଡବିନ୍ଧା, ଉତ୍ସାହହୀନତା, ସାଧାରଣରେ ଝାଳ ଧରିବା, ଶଙ୍କିତ ରହିବା, ଚଞ୍ଚଳ ନିଃଶ୍ୱାସ, ମାନସିକ ଭାବ, ଏକାଚିଆ ରହିବା ସ୍ୱଭାବ ପ୍ରଭୃତି ଏହି କୁ-ଅଭ୍ୟାସର ଫଳ ବୋଲି ପ୍ରଚାର ହେଲା । ଏପରି କି କୌଣସି କାରଣରୁ ପରିସ୍ରା ହେବା କଷ୍ଟ ହେଲେ ମଧ୍ୟ ତାହାକୁ ସ୍ୱମୈଥୁନର କାରଣ ବୋଲି ଦର୍ଶାଇ ଦିଆଗଲା ।

ସାଧାରଣତଃ ଜନନେନ୍ଦ୍ରିୟରୁ ଝାଳ ବାହାରିବା, ଆଖିପତା ଲାଲ ଦିଶିବା, ନଖ ଚୋବାଇବା, ବିଷଣ୍ଣତା, ରକ୍ତହୀନତା, ହାତ ଓ ପାଦ ଝାଳେଇବା, ଅଣ୍ଡନାଳୀରେ ବ୍ୟଥା ଓ ଯୌନଶକ୍ତିର ଅବସାନ

ପ୍ରଭୃତି ଅନ୍ତଃସ୍ରାବ ହସ୍ତମୈଥୁନ ବା ସ୍ୱପ୍ନମୈଥୁନ ଯୋଗୁଁ ହୋଇଥାଏ ବୋଲି କହନ୍ତି । କିନ୍ତୁ ଏହାର ବିରୁଦ୍ଧରେ ପ୍ରଚାର କରିବା ବ୍ୟକ୍ତିମାନେ ଏହି ଅଭ୍ୟାସ ପ୍ରତ୍ୟେକ ରୋଗର କାରଣ ବୋଲି ଦର୍ଶାଇଲେ । ଏପରି କି ଅଙ୍ଗବାତର ମଧ୍ୟ ଏହା ଗୋଟିଏ କାରଣ ବୋଲି କହିଲେ । ବାପା, ମା, ଅଭିଭାବକ ଓ ଶିକ୍ଷକମାନେ ମଧ୍ୟ ବିରୁଦ୍ଧ ପ୍ରଚାର କଲାବେଳେ ଏଥିର ଭୟଙ୍କର ଚିତ୍ର ବର୍ଣ୍ଣନା କରି ପିଲାମାନଙ୍କୁ କହିଲେ, ଯେଉଁ ପିଲାମାନେ ଭୁଲବଶତଃ ଥରେ ଅଧେ ଅଭ୍ୟାସ କରିଥିବେ ସେମାନଙ୍କ ମନରେ ନାନା ରକମର ଆଶଙ୍କା ଜନ୍ମିବା ସ୍ୱାଭାବିକ ।

ହସ୍ତମୈଥୁନ ବରାବର ଅଭ୍ୟାସ କରିବା ଯୋଗୁ ମନରେ ଦୁର୍ବଳତା ଆସେ । ସେହେତୁ ମନୁଷ୍ୟ ଏହିପରି ଅବସ୍ଥାରେ ଆତ୍ମଘାତୀ ହେବା ସ୍ୱାଭାବିକ । ଏହି ଅବସ୍ଥାରେ ଶିକ୍ଷକ ବା ଅଭିଭାବକମାନେ ବାଳକମାନଙ୍କୁ ଗାଳି ଦେଇ ଏଥିର ଭୟଙ୍କର ଚିତ୍ର ବର୍ଣ୍ଣନା କରିବା ଦ୍ୱାରା ବାଳକର ଅବସ୍ଥା ଆହୁରି ସାଙ୍ଘାତିକ ହୁଏ ଯାହା କି କଳ୍ପନାତୀତ । ସେହେତୁ ଏପରି ଅବସ୍ଥାରେ ଯଦି ବାଳକ ଆତ୍ମଘାତୀ ହୁଏ ତାହାହେଲେ ତାହାର ଶିକ୍ଷକ ବା ଅଭିଭାବକମାନେ ସେଥି ନିମନ୍ତେ ଦାୟୀ ନୁହନ୍ତି କି ? ହସ୍ତମୈଥୁନର ଭୟଙ୍କର ପରିଣାମ ଶୁଣି କେତେକ ଆତ୍ମହତ୍ୟା ମଧ୍ୟ କରିଥାନ୍ତି । ଯୌନବିତ୍ ଷ୍ଟିକେଲ୍ (Stekel) ନିଜ ଜୀବନ ସମ୍ବନ୍ଧରେ ଲେଖିଛନ୍ତି ଯେ ସେ ଯୌବନରେ ପଦାର୍ପଣ କଲାବେଳେ ହସ୍ତମୈଥୁନ ବା ସ୍ୱପ୍ନମୈଥୁନର ମନ୍ଦଫଳ ବିଷୟରେ ଲେଖାଥିବା ଖଣ୍ଡିଏ ବହି ତାଙ୍କର ହସ୍ତଗତ ହେଲା । ସେହି ବହି ଖଣ୍ଡିକ ପଢ଼ି ତାଙ୍କ ମନରେ ମଧ୍ୟ ଭୟଙ୍କର ଧାରଣା ସୃଷ୍ଟି ହେଲା । କେତେ ଦିନ ପରେ ତାଙ୍କର ଯେତେବେଳେ ସ୍ୱପ୍ନଦୋଷ ହୁଏ, ସେତେବେଳେ ସେ ବିବ୍ରତ ହୋଇପଡ଼ିଲେ ଓ ଡାକ୍ତରମାନଙ୍କ ପରାମର୍ଶ ନେଲେ । ପୁଣି ଏହି ବିଷୟରେ ଆହୁରି କେତେକ ବହି ପଢ଼ିଲେ । ଏହା ଫଳରେ ତାଙ୍କର ଧାରଣା ଆହୁରି ଭୟଙ୍କର ହେବାକୁ ଲାଗିଲା । ଶେଷରେ ତାଙ୍କର ଜଣେ ଅଧ୍ୟାପକଙ୍କୁ ପଚାରିବାରେ ସେ କହିଥିଲେ ଯେ ସ୍ୱାସ୍ଥ୍ୟବାନ୍ ଯୁବକଙ୍କ ପକ୍ଷେ ସାଧାରଣରେ କେବେ କିପରି ସ୍ୱପ୍ନଦୋଷ ହେବା ସ୍ୱାଭାବିକ । ଏହା ଶୁଣିବା ପରେ ତାଙ୍କର ମନର ଅବସ୍ଥା ଭଲ ହୋଇଯାଇ ସେ ପୂର୍ବ ସ୍ୱାସ୍ଥ୍ୟ ଫେରି ପାଇଥିଲେ ।

ସାଧାରଣତଃ ଶତକରା ପଞ୍ଚାନବେ ମନୁଷ୍ୟ ଯୌବନର ଆରମ୍ଭରେ ହସ୍ତମୈଥୁନ ଅଭ୍ୟାସ କରିଥାନ୍ତି । ଗତ କୋଡ଼ିଏ ବା ତିରିଶ ବର୍ଷ ହେଲା ଏ ଦିଗରେ ଗବେଷଣା ହେଉଥିବା ଯୋଗୁ ଡାକ୍ତରମାନଙ୍କ ମତ ହସ୍ତମୈଥୁନ ବା ସ୍ୱମୈଥୁନ ବିଷୟରେ ବଦଳି ଯାଇଛି । ଯୌବନର ଆରମ୍ଭରେ ମନୁଷ୍ୟର ଶାରୀରିକ ଓ ମାନସିକ ପରିବର୍ତ୍ତନ ଆସେ । ଏହି ବୟସରେ ଶରୀର ଭିତର ରସ-ନିଃସୃତ ଗ୍ରନ୍ଥିଗୁଡ଼ିକର ସମତା ନ ରହି ପାରିବା ଯୋଗୁଁ ଲଜ୍ଜା, ମୁହଁରେ ବ୍ରଣ ପ୍ରଭୃତି ଦେଖାଯାଏ । ବର୍ତ୍ତମାନ ଡାକ୍ତର-ମାନେ କହନ୍ତି ଯେ ଯୁବକମାନଙ୍କର ଏହି କୁ-ଅଭ୍ୟାସ ଯୋଗୁ ଯେତିକି କ୍ଷତି ହୋଇଥାଏ, ତାଠାରୁ ବେଶୀ ହୋଇଥାଏ ଏହାର ବିରୁଦ୍ଧ ପ୍ରଚାରର ଭୟଙ୍କର ଚିନ୍ତା ଶୁଣି ।

ହସ୍ତମୈଥୁନ ବା ସ୍ୱମୈଥୁନରେ ଯେତିକି ପରିମାଣରେ ଶୁକ୍ର ସ୍ଖଳନ ହୁଏ, ଯୌନସଙ୍ଗମରେ ମଧ୍ୟ ସେତିକି ମାତ୍ରାରେ ଶୁକ୍ର ସ୍ଖଳନ ହୋଇଥାଏ ଏବଂ ଏହାର ଓଜନ ପ୍ରାୟ ତିନି ଗ୍ରାମ । ପ୍ରଥମ ସ୍ଖଳନ ପରେ ଦ୍ୱିତୀୟ ସ୍ଖଳନରେ ଶୁକ୍ରର ପରିମାଣ କମିଯାଏ । ଶୁକ୍ର ସ୍ଖଳନ ଦ୍ୱାରା ଶରୀରର ଯେଉଁ କ୍ଷତି ହୁଏ ସେହି କ୍ଷତିକି ଖାଇବା ଖାଦ୍ୟ ପୂରଣ କରେ । ଡକ୍ଟର ନରମାନ୍ ହେରେ (Dr. Norman Haire) ଙ୍କ ମତରେ ଗୋଟିଏ ସ୍ଖଳନରେ ଶରୀରର ଯେଉଁ କ୍ଷତି ହୁଏ ତାହା ମନୁଷ୍ୟ ପାଟିରୁ ଥରେ ବାହାରିବା ଛେପର ପରିମାଣ କମ୍ବା ଆଖିରୁ ଲୁହ ବୋହିବା ଯୋଗୁ କ୍ଷତିର ସଙ୍ଗେ ସମାନ । ସ୍ଖଳନ ପରେ ପ୍ରତ୍ୟେକ ମନୁଷ୍ୟ ଦୁର୍ବଳତା ଅନୁଭବ କରେ । ଯୌନ ସଙ୍ଗମର ସ୍ଖଳନ ପରେ ସଙ୍ଗୀର ଉପସ୍ଥିତି ଯୋଗୁ ଦୁର୍ବଳ ଅବସ୍ଥା ବିଶେଷ ଅନୁଭବ କରାଯାଏ ନାହିଁ । ହସ୍ତମୈଥୁନ ବା ସ୍ୱମୈଥୁନ ବେଳେ କୌଣସି ସଙ୍ଗୀ ନ ଥାନ୍ତି । ପୁଣି ଯୌନ ଉତ୍ତେଜନା ଉପଶମ ହେବା ପରେ ସାଧାରଣତଃ ଧର୍ମଭାବ ଜାତ ହୋଇଥାଏ । କିଶୋର ବା ଯୁବକମାନଙ୍କ ପକ୍ଷେ ଏହା ସାଧାରଣତଃ ନିୟମ ବୋଲି କହିଲେ ଚଳେ । ସେଥିହେତୁ ସେମାନେ ବହୁତ ଦୁର୍ବଳତା ଅନୁଭବ କରନ୍ତି । କେତେକ ଡାକ୍ତର ପରାମର୍ଶ ଦିଅନ୍ତି ଯେ ସ୍ୱମୈଥୁନ ବେଳେ ମନୁଷ୍ୟ କଳ୍ପନା ଶକ୍ତିକୁ ଜୋର୍‌ରେ ବ୍ୟବହାର କରିବା ଯୋଗୁ ରତିକ୍ରିୟା ସମୟର ଦୁର୍ବଳତା ଅପେକ୍ଷା ଏହା ବେଶି ଅନୁଭୂତ ହୁଏ । ଡକ୍ଟର ହେରସ୍‌ଫିଲ୍‌ଡ

(Dr. Hirschfild)ଙ୍କ ମତରେ, ଯୌନସଙ୍ଗମରେ ପୁରୁଷର ଯେତିକ ପରିମାଣରେ ଶୁକ୍ର ସ୍ଖଳନ ହୋଇଥାଏ ସ୍ୱମୈଥୁନରେ ମଧ୍ୟ ସେତିକ ପରିମାଣରେ ଶୁକ୍ର ସ୍ଖଳନ ହୁଏ । ଉଭୟ ପ୍ରଣାଳୀର ପାର୍ଥକ୍ୟ କେବଳ ଶୁକ୍ରସ୍ଖଳନ ପରେ ହିଁ ଆରମ୍ଭ ହୁଏ । ଯୌନସଙ୍ଗମରେ ଶୁକ୍ରସ୍ଖଳନ ପରେ ଶରୀର ଭିତର ବିଭିନ୍ନ ଗ୍ରନ୍ଥିର କାର୍ଯ୍ୟ ସଙ୍ଗୀର ଉପସ୍ଥିତି ଯୋଗୁ ହଠାତ୍ ବନ୍ଦ ନ ହୋଇ ଉତ୍ତେଜନା କ୍ରମେ କ୍ରମେ ଖସିଆସେ । କିନ୍ତୁ ସ୍ୱମୈଥୁନ ବା ହସ୍ତମୈଥୁନ ବେଳେ ସ୍ଖଳନର ପରେ ସଙ୍ଗୀର ଅନୁପସ୍ଥିତି ଯୋଗୁ ଉତ୍ତେଜନା ହଠାତ୍ ଖସିଆସେ । ସେହେତୁ ସ୍ଖଳନ ପରେ ଦୁର୍ବଳତା ଅଧିକ ଅନୁଭୂତ ହୁଏ ।

ସ୍ୱମୈଥୁନ ବା ହସ୍ତମୈଥୁନରେ ସ୍ଖଳନ ସମୟରେ ଶୁକ୍ରକୁ ଅବରୋଧ କରିବା ବିଶେଷ କ୍ଷତିକାରକ । ଯୌନସଙ୍ଗମରେ ସ୍ଖଳନ ବେଳେ ଲିଙ୍ଗକୁ ପଦାକୁ ବାହାର କରିନେବା ଦ୍ୱାରା ଯେତିକ କ୍ଷତି ହୋଇଥାଏ ସ୍ୱମୈଥୁନ ବେଳେ ଲିଙ୍ଗକୁ ଚିପିଧରି ସ୍ଖଳନକୁ ଅବରୋଧ କରିବା ଦ୍ୱାରା ତାଠାରୁ ଅନେକ ଗୁଣରେ ପୁରୁଷର କ୍ଷତି ହୁଏ । କାରଣ ଯୌନ ସଙ୍ଗମରେ ଲିଙ୍ଗକୁ ପଦାକୁ ବାହାର କରିଦେବା ଦ୍ୱାରା ପଦାରେ ସ୍ଖଳନ ହୁଏ; କିନ୍ତୁ ସ୍ଖଳନକୁ ଅବରୋଧ କରିବା ଦ୍ୱାରା ସ୍ଖଳନ ଆଦୌ ହୁଏ ନାହିଁ । କେତେକ ପୁରୁଷ ହସ୍ତମୈଥୁନ ବେଳେ ଲିଙ୍ଗକୁ ଚିପିଧରି ବା ଶୁକ୍ରର ରାସ୍ତାକୁ ଚିପି ସ୍ଖଳନକୁ ବନ୍ଦ କରିଦେଇଥାନ୍ତି । ସ୍ଖଳନକୁ ବନ୍ଦ କରିବା ଅଭ୍ୟାସ ଦ୍ୱାରା ମାନସିକ ବିକାର ଜାତ ହୁଏ ଏବଂ ଏଥି ସଙ୍ଗେ ସଙ୍ଗେ ଲିଙ୍ଗର ଉତ୍ଥାନ ଶକ୍ତି ଓ ସ୍ଖଳନ ଶକ୍ତିରେ ବାଧାଆସେ ବୋଲି ଡାକ୍ତରମାନେ କହନ୍ତି ।

ଦୈନନ୍ଦିନ ଅଧିକମାତ୍ରାରେ ହସ୍ତମୈଥୁନ ବା ସ୍ୱମୈଥୁନ କରିବା ଦ୍ୱାରା ଏହା ପୁରୁଷ ଓ ନାରୀ ଉଭୟଙ୍କ ପକ୍ଷେ ଅଭ୍ୟାସରେ ପରିଣତ ହୁଏ । ଏପରି ଅଭ୍ୟାସ କରିବା ଫଳରେ ଲିଙ୍ଗରେ ଥିବା ସୂକ୍ଷ୍ମ ସ୍ନାୟୁ ଗୁଡ଼ିକ ସ୍ପର୍ଶ ଉତ୍ତେଜନା ଶକ୍ତି ହରାଇଥାନ୍ତି । ସେହେତୁ ଯୋନି-ନାଳୀର ତୈଳାକ୍ତ ଓ କୋମଳ ଝିଲ୍ଲି ପରଦାର ସ୍ପର୍ଶରେ ମଧ୍ୟ ଲିଙ୍ଗରେ ଉତ୍ତେଜନା ଆସେ ନାହିଁ । ଫଳତଃ ରତିକ୍ରିୟାରେ ଯୌନତୃପ୍ତି ନ ଆସି କେବଳ ହସ୍ତମୈଥୁନ ବା ସ୍ୱମୈଥୁନରେ ହିଁ ଯୌନତୃପ୍ତି ଆସେ । ହସ୍ତମୈଥୁନର ଅଭ୍ୟାସ ଫଳରେ ଶୁକ୍ର ଦୁର୍ବଳ ହୋଇ ଶୀଘ୍ର ସ୍ଖଳନ ହୁଏ ।

ନାରୀମାନଙ୍କ ପକ୍ଷେ ହସ୍ତମୈଥୁନ ନାନା ରକମର ଅସୁବିଧା ସୃଷ୍ଟି କରିଥାଏ । ଯୌନବିତ୍ ଗାର୍ନିଅର୍ (Garnier) ଙ୍କ ମତରେ— ଦୁଇ ଜଣ ନାରୀ ସାଙ୍ଗ ହୋଇ ଏହା ଅଭ୍ୟାସ କରିବା କିମ୍ବା ଜଣେ ନାରୀ ଏକୁଟିଆ ଅଭ୍ୟାସ କରିବା ଦ୍ୱାରା ମାନସିକ ରଜଃସ୍ରାବ ସମୟରେ ବ୍ୟଥା, ରକ୍ତସ୍ରାବ ପ୍ରଭୃତି ହୁଏ । ସ୍ୱାଭାବିକ ଯୌନସଙ୍ଗମ ପ୍ରତି ଇଚ୍ଛା ବା ପ୍ରବୃତ୍ତି ରହେ ନାହିଁ । ସାଧାରଣତଃ ନାରୀମାନେ ହସ୍ତମୈଥୁନ ବେଳେ ହାତ ବା ଆଙ୍ଗୁଠିକୁ ଯୋନିନାଳୀରେ ପ୍ରବେଶ କରାଇ ଘଷିବା କିମ୍ବା ଭଗୌଷ୍ଠକୁ ମର୍ଦ୍ଦନ କରି ତୃପ୍ତି ପାଇଥାନ୍ତି । ଏହିପରି ଅଭ୍ୟାସର ବୃଦ୍ଧି ସଙ୍ଗେ ସଙ୍ଗେ ଆଙ୍ଗୁଠି ସାହାଯ୍ୟରେ ଭଗାଙ୍କୁର ମର୍ଦ୍ଦନ କରି ବା ଜୋରରେ ଘଷି, ହଲାଇ ମଧ୍ୟ ଯୌନତୃପ୍ତି ପାଇଥାନ୍ତି । କେତେକ ଡାକ୍ତରଙ୍କ ମତରେ ନାରୀମାନେ ହସ୍ତମୈଥୁନ କରିବା ଫଳରେ ସେମାନଙ୍କ ସ୍ତନର ଆକାର କମିଆସେ ବା ସ୍ତନ ଦୁଇଟି ଶୁଖି ଆସେ । ପୁଣି ଭଗଉନ୍ଦ୍ରିର ଶେଷ ପର୍ଯ୍ୟନ୍ତ ପ୍ରୟୋଗ କରି ଅଭ୍ୟାସ କରିବା ଦ୍ୱାରା ରକ୍ତ ସଂଚଳନ ଜୋର ହୋଇ ବିକୃତ ଅବସ୍ଥା ସୃଷ୍ଟି ହୁଏ ଯାହା ଡାକ୍ତରମାନେ ଜନନେନ୍ଦ୍ରିୟ ଦେଖିବା ମାତ୍ରେ ସହଜରେ ବିଷୟଟି ଧରି ପାରନ୍ତି ବା ଜାଣି ପାରନ୍ତି । ଆଉ କେତେକ ଡାକ୍ତରଙ୍କ ମତରେ ଭଗାଙ୍କୁରରେ ହସ୍ତମୈଥୁନ ଅଭ୍ୟାସ କରିବା ଦ୍ୱାରା ଭଗାଙ୍କୁର ଓ ଭଗୌଷ୍ଠର ଆକାର ବୃଦ୍ଧି ହୁଏ । ପୁଣି କୌଣସି କାରଣରୁ ଭଗାଙ୍କୁରରେ ସାମାନ୍ୟ ସ୍ପର୍ଶମାତ୍ରେ ଯୋନିନାଳୀ ଜକେଇଯାଏ ।

ଯେଉଁ ବାଳିକାମାନଙ୍କର ଯୌନ ପ୍ରବୃତ୍ତି ଜୋର, ଯେଉଁମାନେ ପିଲାଦିନୁ ସମବୟସ୍କ ବାଳକମାନଙ୍କ ସହିତ ମିଳାମିଶା କରିବାରେ ଅଭ୍ୟସ୍ତ, ଯେଉଁମାନେ ନିଜର ସାଙ୍ଗସାଥୀମାନଙ୍କ ସହିତ ବେଶି ସମୟ କଥାବାର୍ତ୍ତା ହୋଇ କିମ୍ବା ଉପନ୍ୟାସ ପ୍ରଭୃତି ରସାଳ ସାହିତ୍ୟ ପଢ଼ି ଯୌନ ସମ୍ବନ୍ଧୀୟ ଜ୍ଞାନ ପାଇଥାନ୍ତି, ସେମାନଙ୍କ ଠାରେ ହସ୍ତମୈଥୁନ ପ୍ରବୃତ୍ତି ବିଶେଷଭାବେ ଲକ୍ଷ୍ୟ କରାଯାଇ ପାରେ ।

ଡକ୍ଟର କିଷ୍ଟ୍ (Kisch) କହିଛନ୍ତି ଯେ ହସ୍ତମୈଥୁନ କରୁଥିବା ବାଳିକାମାନେ ସାଧାରଣତଃ ସେଠୁଆ, ଦୁର୍ବଳ ବା ହାଲିଆ ରହିବା ଦେଖାଯାଏ ବିଶିଷ୍ଟ । ଆଖିର ଜ୍ୟୋତି କମିଯିବା ଓ ଆଖିପତାରେ କଳା ଦାଗ ଉଠିବା, ଆଳସ୍ୟଗତି, ଶେଯରେ ପଡ଼ିରହିବା ପ୍ରଭୃତି ଲକ୍ଷଣମାନ

ଦେଖାଯାଏ । ଏହି ଅଭ୍ୟାସର ବାଳିକାମାନେ ଯୌବନରେ ପଦାର୍ପଣ କଲା ବେଳେ ସେମାନଙ୍କ ଶ୍ରବଣେନ୍ଦ୍ରିୟରେ ବିଶେଷ ଗୋଳମାଳ ବା କାନରେ ବରାବର ଶବ୍ଦ ଶୁଭେ । ସୌନବିତ୍ ମେକେଞ୍ଜି (Mackenzie)ଙ୍କ ମତରେ ଯେଉଁ ବାଳିକାମାନେ ହସ୍ତମୈଥୁନ ଅଭ୍ୟାସ କରନ୍ତି ସେମାନଙ୍କ ନାକ ଭିତରେ ପରଳ ପରି ଗୋଟିଏ ପରଦା ବଢ଼େ, ଭଗୌଷ୍ଠ ବଡ଼ ହୁଏ ଓ ଭଗୌଷ୍ଠର ଭିତର ପଟ ଜାମୁଆ ରଙ୍ଗ ହୋଇଯାଏ । କେତେକଙ୍କର ଗର୍ଭାଶୟ ବିକୃତ ଅବସ୍ଥାକୁ ଆସେ ଓ ଯୋନିରୁ ସ୍ରାବ ହୁଏ । ବାଳିକାମାନେ ହସ୍ତମୈଥୁନ ଅଭ୍ୟାସ କରିବା ଦ୍ୱାରା ଭବିଷ୍ୟତ ଜୀବନରେ ସେମାନେ ବନ୍ଧ୍ୟା ହୋଇ ରହୁଥିଲେ ବୋଲି ପୂର୍ବେ ପ୍ରଚାର କରାଯାଉଥିଲା ।

ସାଧାରଣତଃ ନାରୀମାନେ ଯୌନ ଉତ୍ତେଜନା ପାଇବା ସଙ୍ଗେ ସଙ୍ଗେ ଉତ୍ତେଜନା ଶକ୍ତି ଯୋନିନାଳୀରେ ସଞ୍ଚାର ହୋଇ ସେଠାରେ କେନ୍ଦ୍ରୀଭୂତ ହୁଏ ଓ ସେଥିଯୋଗୁଁ ଯୌନ ସଙ୍ଗମରେ ସେମାନେ ଯୌନ-ତୃପ୍ତି ପାଆନ୍ତି । ବାଳିକାର ଯୋନିରେ କୁମାରୀଚ୍ଛଦର ଉପସ୍ଥିତି ଯୋଗୁଁ ହସ୍ତମୈଥୁନ ବେଳେ ରତିକ୍ରିୟାର ଅନୁକରଣ କରିବା ସୁବିଧା ରହେ ନାହିଁ । ଯେହେତୁ ଯୌନତୃପ୍ତି ନିମନ୍ତେ ଜନନେନ୍ଦ୍ରିୟର ଅନ୍ୟାନ୍ୟ ଅଂଶ ଉପରେ ଅଭ୍ୟାସ କରନ୍ତି ଯାହା ଫଳରେ ଯୌନ-ଉତ୍ତେଜନା-କେନ୍ଦ୍ର ସ୍ଥାନାନ୍ତରିତ ହେବା ସମ୍ଭାବନା । ଏହି କାରଣରୁ ବାଳିକାମାନେ ହସ୍ତମୈଥୁନ ଅଭ୍ୟାସ କରିବା ଦ୍ୱାରା ଭବିଷ୍ୟତ ଜୀବନରେ ବନ୍ଧ୍ୟା ହୋଇ ରହିବା ପୂର୍ବେ ପ୍ରଚାର କରାଯାଉଥିଲା ।

ଯୌନତୃପ୍ତି ନିମନ୍ତେ ଭଗାଙ୍କୁରକୁ ବରାବର ମର୍ଦନ ବା ଘର୍ଷଣ କରିବା ଅଭ୍ୟାସ କଲେ ଯୌନ ଉତ୍ତେଜନା କେନ୍ଦ୍ର ଯୋନିନାଳୀରେ ନ ରହି ଭଗାଙ୍କୁରରେ ହିଁ କେନ୍ଦ୍ରୀଭୂତ ହୁଏ । ଯେହେତୁ ଯୌନ ସଙ୍ଗମରେ ନାରୀର ଆଉ ଯୌନତୃପ୍ତି ରହେ ନାହିଁ । ପୂର୍ବରୁ ଏହି ରକମ ଅଭ୍ୟାସ ହୋଇଥିଲେ ଭବିଷ୍ୟତ ଜୀବନରେ ଭଗାଙ୍କୁରରୁ ଉତ୍ତେଜନା କେନ୍ଦ୍ର ଯୋନିନାଳୀ ଭିତରକୁ ଯିବାରେ ବାଧା ସୃଷ୍ଟି ହୋଇଥାଏ । ହସ୍ତମୈଥୁନର ଏହି ମନ୍ଦ ଫଳ ଯେଉଁଠାରେ କେତେକ ମାତ୍ରାରେ ଥାଏ, ସେଠାରେ ସୁଧାରିବା ପାଇଁ ପୁରୁଷ ପକ୍ଷେ ସମୟ ଓ ସାବଧାନତା

ଆବଶ୍ୟକ ହୁଏ । ପୁରୁଷର ସାବଧାନତା ଓ ଉଭୟଙ୍କ ମଧ୍ୟରେ ସଦ୍‌ଭାବ ଦ୍ୱାରା ଏହି ଅସୁବିଧା କ୍ରମେ କ୍ରମେ ଡ଼ଭେଇ ଯାଏ ।

ଯୌନତୃପ୍ତି ନିମନ୍ତେ କୌଣସି ଯନ୍ତ୍ରପାତି ବା ଜିନିଷ ଯୋନି-ନାଳୀରେ ପ୍ରବେଶ କରାଇବା ଅନୁଚିତ । ଅପରିଷ୍କାର ଜିନିଷ ବା ଯନ୍ତ୍ରପାତି ବ୍ୟବହାର କରିବା ଫଳରେ ରୋଗ ସଂକ୍ରମଣ କରିପାରେ । ପୁଣି ଯୋନି-ନାଳୀର ଝିଲ୍ଲି ପରଦା ଖୁବ୍ ସୂକ୍ଷ୍ମ ଓ କୋମଳ । ବ୍ୟବହାର କରୁଥିବା ଜିନିଷ ବା ଯନ୍ତ୍ରପାତିଗୁଡ଼ିକର ଆକାର ଓ ପ୍ରକାର ସେଠାରେ ଆଘାତ ଦେଇପାରନ୍ତି । କୌଣସି ଜିନିଷର ସାହାଯ୍ୟ ନେଇ ସ୍ୱମୈଥୁନରେ ପ୍ରବୃତ୍ତ ହେବା ଶରୀରର ଯେତିକ କ୍ଷତି କରେ ନାହିଁ ସେଥିରୁ ଆଘାତ ବା ସଂକ୍ରାମକ ରୋଗ ପାଇବା ତାଠାରୁ ଅନେକ ଗୁଣରେ କ୍ଷତିକାରକ ।

ଉପରେ ଯାହା ସବୁ ଲେଖାଗଲା ସେଥିରୁ ଯୌନତୃପ୍ତି ନିମନ୍ତେ ହସ୍ତମୈଥୁନ ବା ସ୍ୱମୈଥୁନର ଆଶ୍ରୟ ନେବା ଉଚିତ ପନ୍ଥା ଏବଂ କ୍ଷତି-କାରକ ନୁହେ ବୋଲି ଭାବିବା ଠିକ୍ ନୁହେ । ଯୌନତୃପ୍ତି ନିମନ୍ତେ ଏ ସମସ୍ତ ଅସ୍ୱାଭାବିକ ପ୍ରଣାଳୀ । ଯେଉଁଠାରେ ଯୌନସଙ୍ଗମର ସୁବିଧା ନାହିଁ ସେହିଠାରେ ଯୌନତୃପ୍ତି ପାଇଁ ମନୁଷ୍ୟମାନେ ଏହାର ଆଶ୍ରୟ ନେଇଥାନ୍ତି । ଏହା ଅଧିକ ମାତ୍ରାରେ ଅଭ୍ୟାସ କରିବା କ୍ଷତିକାରକ । ବହୁତ ଖାଇବା ଦ୍ୱାରା ଯେପରି ଅଜୀର୍ଣ୍ଣ ହୋଇ ସ୍ୱାସ୍ଥ୍ୟହାନି ହୁଏ, ସେହିପରି 'ବହୁତ' ସବୁ କ୍ଷେତ୍ରରେ ଖରାପ କରିଥାଏ । ଯୌବନର ଆରମ୍ଭରେ ଏହି ମନ୍ଦ ଅଭ୍ୟାସ ସାଧାରଣତଃ ସ୍ୱାଭାବିକ । ଯୌନସଙ୍ଗମର ସୁବିଧା ପାଇବା ମାତ୍ରେ ଏହି ପ୍ରବୃତ୍ତି ଆପେ ଆପେ ବଦଳିଯାଏ । ଯୌନସଙ୍ଗମର ସୁବିଧା ଥିଲେ ଯୌନତୃପ୍ତି ନିମନ୍ତେ ଏହାର ଆଶ୍ରୟ ନେବା ଆଦୌ ଉଚିତ ନୁହେ । ଯେଉଁଠାରେ ଏହି ଉପାୟକୁ ଯୌନତୃପ୍ତିର ଏକ ମାତ୍ର ପନ୍ଥା ବୋଲି ନିଆଯାଏ, ସେଠାରେ ଏହା ଅସ୍ୱାଭାବିକ ଯୌନ ପ୍ରବୃତ୍ତି ବୋଲି ଧରାଯାଏ । ଯୌନ ସଙ୍ଗମର ଅସୁବିଧା ଯୋଗୁଁ ସାଧାରଣତଃ ପୁରୁଷ ପକ୍ଷେ ନିଜ ସ୍ୱାସ୍ଥ୍ୟଦୃଷ୍ଟିରୁ ଯେତେଥର ବା ଯେଉଁ ମାତ୍ରା ବା ଅନୁପାତରେ ରତିକ୍ରିୟା କରିବା ଉଚିତ ସେତିକ ଅନୁପାତରେ ଏହି ଅଭ୍ୟାସ କରିବା ଦ୍ୱାରା ସ୍ୱାସ୍ଥ୍ୟହାନି ହୁଏ ନାହିଁ ବୋଲି ଡାକ୍ତରମାନେ କହନ୍ତି ।



# ଯୌବନପଥେ ନାରୀ

ପ୍ରଥମ ରଜଃସ୍ରାବ କିଶୋରୀ ପକ୍ଷେ ପ୍ରଥମ ଯୌବନର ଆରମ୍ଭ ହେବା ସୂଚାଇ ଦିଏ। ଏହା ଗୋଟିଏ ଜଟିଳ ପରିବର୍ତ୍ତନ ପ୍ରଣାଳୀର ସାଧାରଣ ବାହ୍ୟ ଲକ୍ଷଣ ମାତ୍ର। ପରେ ଏହିପରି ରଜଃସ୍ରାବ ପ୍ରତ୍ୟେକ ଚାରି ସପ୍ତାହରେ ଥରେ ହୁଏ। ଏହା ଦ୍ୱାରା ନିୟମିତ କାଳରେ ଶରୀରର ସ୍ନାୟୁତନ୍ତ୍ର ଉତ୍ତେଜନା ପାଏ। କେବେ କେବେ ଏହାର ବ୍ୟତିକ୍ରମ ମଧ୍ୟ ଦେଖାଯାଏ। ରଜଃସ୍ରାବ ନିୟମିତ ଭାବେ ହେବା ଉଚିତ। ସ୍ୱାସ୍ଥ୍ୟ-ହାନି, ମାନସିକ ପୀଡ଼ା, ଖାଦ୍ୟାଭାବ ବା ଗର୍ଭସଞ୍ଚାର ହେଲେ ନିୟମିତ ରୂପେ ରଜଃସ୍ରାବ ହୁଏ ନାହିଁ।

ନାରୀମାନଙ୍କର ମାସିକ ରଜଃସ୍ରାବ ଯୌନ ଜୀବନ ସାରା ସାଧାରଣତଃ ନିୟମିତ ଭାବେ ହୋଇଥାଏ। ନାରୀମାନଙ୍କ ଯୌନ ଜୀବନ ପ୍ରାୟ ଚଉଦ ବର୍ଷ ବୟସରେ ଆରମ୍ଭ ହୋଇ ପ୍ରାୟ ପଚାଶ ବର୍ଷ ବୟସ ପର୍ଯ୍ୟନ୍ତ ରହେ। କେତେକ ନାରୀଙ୍କ ଯୌନ ଜୀବନ ଦଶ ବା ବାର ବର୍ଷ ବୟସରେ ଆରମ୍ଭ ହେବାବେଳେ ଆଉ କେତେକ ନାରୀଙ୍କ କୋଡ଼ିଏ ବର୍ଷ ବୟସରେ ଆରମ୍ଭ ହୋଇଥିବା ଦେଖାଯାଇଛି। ସେହିପରି ଯୌନ-ଜୀବନର ଅବସାନ କେତେକ ନାରୀଙ୍କର ତିରିଶ ବା ଚାଳିଶ ବର୍ଷ ବୟସରେ ହେବାବେଳେ ଆଉ କେତେକଙ୍କ ଷାଠିଏ ବର୍ଷ ବୟସରେ ଅବସାନ ହେବା ମଧ୍ୟ ଜଣାଯାଇଛି। କିନ୍ତୁ ସାଧାରଣ ପକ୍ଷେ ନାରୀମାନଙ୍କ ଯୌନ ଜୀବନର ସମୟ ତିରିଶ ପଇଁତିରିଶ ବର୍ଷ ବ୍ୟାପି ରହେ। ପୁଣି ଯେଉଁମାନଙ୍କର ଯେତେ ଶୀଘ୍ର ଆରମ୍ଭ ହୋଇଥାଏ, ସେମାନଙ୍କର ସନ୍ତାନ-ଉତ୍ପାଦନ କ୍ଷମତା ସେତିକି ଅଧିକ ବୟସ ପର୍ଯ୍ୟନ୍ତ ରହେ।

ନାରୀମାନଙ୍କ ପକ୍ଷେ ପ୍ରଥମ ରଜଃସ୍ରାବ ବା ଯୌନ ଜୀବନର ଆରମ୍ଭ ଏବଂ ଯୌନଜୀବନର ଅବସାନ କେତୋଟି କାରଣ ଉପରେ ନିର୍ଭର କରେ। ଯଥା—

୧। ଜଳବାୟୁର ବିଶେଷ ପ୍ରଭାବ ରହେ। ଗ୍ରୀଷ୍ମ ଜଳବାୟୁରେ ପ୍ରାୟ ଏଗାର ବର୍ଷ ଠାରୁ ଚଉଦ ବର୍ଷ ବୟସରେ, ସମଶୀତୋଷ୍ଣ

ଜଳବାୟୁରେ ସାଧାରଣତଃ ତେର ଠାରୁ ଷୋଳ ବର୍ଷ ବୟସରେ, ଶୀତପ୍ରଧାନ ଦେଶମାନଙ୍କରେ ପ୍ରାୟ ପନ୍ଦର ଠାରୁ ଅଠର ବର୍ଷ ବୟସରେ ବାଳିକାମାନଙ୍କର ସାଧାରଣତଃ ପ୍ରଥମ ରଜଃସ୍ରାବ ହୋଇଥାଏ । ତେଣୁ ସ୍ବଭାବରେ ଦାକ୍ଷିଣାତ୍ୟ ଅଞ୍ଚଳର ବାଳିକାମାନେ ଉତ୍ତରାଞ୍ଚଳର ବାଳିକାମାନଙ୍କ ଅପେକ୍ଷା ଶୀଘ୍ର ଯୌବନରେ ପଦାର୍ପଣ କରିଥାନ୍ତି । ଭାରତର ଗ୍ରୀଷ୍ମପ୍ରଧାନ ଜଳବାୟୁ ଯୋଗୁଁ ଏଠାରେ ବାଳିକାମାନଙ୍କର ଏଗାର ଠାରୁ ତେର ବର୍ଷ ବୟସରେ ପ୍ରଥମ ରଜଃସ୍ରାବ ହୋଇଥାଏ । ସେହିପରି ଦକ୍ଷିଣାଞ୍ଚଳର ବାଳିକାମାନେ ଉତ୍ତରାଞ୍ଚଳର ବାଳିକାମାନଙ୍କ ଅପେକ୍ଷା ଶୀଘ୍ର ଯୌନ ଜୀବନ ହରାଇ ବସନ୍ତି ।

ପ୍ରାଚ୍ୟ ଜଗତ, ଏସିଆ ଓ ଆଫ୍ରିକା ମହାଦେଶମାନଙ୍କରେ ଆଠ ବା ଦଶବର୍ଷ ବୟସରେ ରଜଃସ୍ରାବ ଆରମ୍ଭ ହେବାବେଳେ ଗ୍ରୀନଲ୍ୟାଣ୍ଡରେ ଷୋଳ ବର୍ଷ ବୟସରେ ବାଳିକାମାନଙ୍କର ରଜଃସ୍ରାବ ଆରମ୍ଭ ହୋଇଥାଏ, ଏବଂ ବରଫ ଦେଶର ଏସ୍କିମୋ ବାଳିକାମାନଙ୍କର ସତର ଠାରୁ ତେଇଶି ବର୍ଷ ବୟସ ମଧ୍ୟରେ ପ୍ରଥମ ରଜଃସ୍ରାବ ଦେଖାଦିଏ । ସହରରେ ରହୁଥିବା ବାଳିକାମାନଙ୍କର ମଫସଲରେ ରହୁଥିବା ବାଳିକାମାନଙ୍କ ଅପେକ୍ଷା ଶୀଘ୍ର ରଜଃସ୍ରାବ ଆରମ୍ଭ ହୁଏ ।

୨ । ଭୋଗବିଳାସ ବା ସୌଖୀନରେ ରହୁଥିବା ବାଳିକାମାନଙ୍କର ଶୀଘ୍ର ଯୌନଜୀବନ ଆରମ୍ଭ ହୁଏ । ଭଲ ଭାବେ ଖାଦ୍ୟପେୟ ପାଇ ଖୁସିରେ ରହିବା ବାଳିକାମାନେ ମଧ୍ୟ ଶୀଘ୍ର ଯୌବନରେ ପଦାର୍ପଣ କରିଥାନ୍ତି ।

୩ । ଜାତିଗତ ବା ବଂଶ ପରମ୍ପରାର ମଧ୍ୟ ପ୍ରଭାବ ରହେ । ସ୍ଲାଭ୍ ବାଳିକାମାନଙ୍କର ରଜଃସ୍ରାବ ଶୀଘ୍ର ଆରମ୍ଭ ହେବାବେଳେ ଟ୍ୟୁଟନିକ୍ ଜାତିର ବାଳିକାମାନଙ୍କର ଡେରିରେ ରଜଃସ୍ରାବ ଆରମ୍ଭ ହୋଇଥାଏ । ସେନେଗଲର ବାଳିକାମାନଙ୍କର ପ୍ରାୟ ଏଗାର ବର୍ଷ ବୟସରେ ରଜଃସ୍ରାବ ଆରମ୍ଭ ହେବାବେଳେ ଇଜିପ୍ଟର ନିଗ୍ରୋ ବାଳିକାମାନଙ୍କର ପ୍ରାୟ ଆଠ ବର୍ଷ ବୟସରେ ଏବଂ ବରଫ ଦେଶର ଏସ୍କିମୋ ବାଳିକାମାନଙ୍କର ପ୍ରାୟ ସତର ବର୍ଷରେ ରଜଃସ୍ରାବ ହୋଇଥାଏ । ସେହିପରି ସେମେଟିକ୍ ଜାତିର ବାଳିକାମାନଙ୍କ ଠାରେ ଆର୍ଯ୍ୟଜାତିର ବାଳିକାମାନଙ୍କ ଅପେକ୍ଷା ଶୀଘ୍ର ରଜଃସ୍ରାବ ଦେଖାଦିଏ ।

ସ୍ପୁତ୍ସୱି ବାଳକାମାନଙ୍କର ଚଉଦ ବା ପନ୍ଦର ବର୍ଷ ବୟସରେ ପ୍ରଥମ ରଜଃସ୍ରାବ ଆରମ୍ଭ ହେବାବେଳେ ଜର୍ମାନ୍ ଦେଶର ବାଳକାମାନଙ୍କ ଠାରେ ଷୋଳ ବା ସତର ବର୍ଷ ବୟସରେ ପ୍ରଥମ ରଜଃସ୍ରାବ ଦେଖାଦିଏ ।

୪ । ଶାରୀରିକ ଗଠନ ଅନୁସାରେ ଗୋରା ଓ କହରା ବାଳ ବା କୋମଳ ବାଳ, ଶରୀରର ଚମ ପାତଳା ଥିବା ବାଳକାମାନଙ୍କ ଅପେକ୍ଷା ଶ୍ୟାମଳ ଓ କଳାବର୍ଣ୍ଣ, ବହଳା ଶରୀର ଚର୍ମ, କୃଷ୍ଣ ଓ ଘନକେଶ ଥିବା ବାଳକାମାନଙ୍କର ପ୍ରଥମ ରଜଃସ୍ରାବ ଶୀଘ୍ର ହୁଏ ।

୫ । ରକ୍ତହୀନତା, ଦୁର୍ବଳତା, ଖାଦ୍ୟପେୟରେ ଜାଗ୍ରତ ନ ଥିବା ବାଳକାମାନଙ୍କର ଶୀଘ୍ର ରଜଃସ୍ରାବ ଆରମ୍ଭ ହୋଇଥାଏ । ସେହେତୁ ଗରିବ ଘରର ଝିଅମାନଙ୍କ ଠାରେ ଧନୀ ଘରର ଝିଅମାନଙ୍କ ଅପେକ୍ଷା ଶୀଘ୍ର ରଜଃସ୍ରାବ ଆରମ୍ଭ ହୋଇଥାଏ ।

୬ । ଯେଉଁମାନଙ୍କର କମ୍ ବୟସରେ ରଜଃସ୍ରାବ ହୋଇଥାଏ ସେମାନଙ୍କ ପ୍ରସବଜାତ ବାଳକାମାନଙ୍କର ମଧ୍ୟ କମ୍ ବୟସରେ ରଜଃସ୍ରାବ ଆରମ୍ଭ ହୁଏ । ସେହିପରି ଯେଉଁ ମା'ମାନଙ୍କର ବିଳମ୍ବରେ ରଜଃସ୍ରାବ ଆରମ୍ଭ ହୋଇଥାଏ ସେମାନଙ୍କ ଝିଅମାନଙ୍କର ମଧ୍ୟ ବିଳମ୍ବରେ ରଜଃସ୍ରାବ ହେବା ଲକ୍ଷ୍ୟ କରାଯାଇଛି ।

୭ । ବାଳକାମାନେ ଯୌନକ୍ରିୟା କମ୍ ବୟସରେ ଆରମ୍ଭ କଲେ ସେମାନଙ୍କର ଶୀଘ୍ର ରଜଃସ୍ରାବ ଆରମ୍ଭ ହୁଏ ବୋଲି କେତେକ ଯୌନବିତ୍ ମତ ଦେଇଛନ୍ତି । କିନ୍ତୁ ସାଧାରଣତଃ ଲୁହାଯାଏ ଯେ ଏସ୍କିମୋ ବାଳକାମାନେ ପ୍ରଥମ ରଜଃସ୍ରାବ ଆରମ୍ଭର ଅନେକ ଦିନ ପୂର୍ବରୁ ଯୌନ ସଙ୍ଗମ ଆରମ୍ଭ କରିଥାନ୍ତି । ଯୌନବିତ୍ ପ୍ଲସ୍ (Ploss) କହନ୍ତି ଯେ ଯେଉଁ ନାରୀମାନଙ୍କଠାରେ ଶୀଘ୍ର ଯୌନଶକ୍ତି ଆରମ୍ଭ ହୁଏ ସେମାନଙ୍କର ଯୌନଶକ୍ତିର ଅବସାନ ଶୀଘ୍ର ହୁଏ । ସାଧାରଣତଃ ଅଷ୍ଟ୍ରେଲିଆର ବାଳକାମାନେ ଆଠ ଠାରୁ ବାର ବର୍ଷ ବୟସ ଭିତରେ ବିବାହ କରନ୍ତି ଓ ଆଠ ବର୍ଷ ବୟସଠାରୁ ରତିକ୍ରିୟା ଆରମ୍ଭ କରିଥାନ୍ତି । ନିଉଜିଲ୍ୟାଣ୍ଡର ମେଓରି (Maori) ଆଦିବାସୀ ସମାଜର ବାଳକାମାନେ ଦଶ ବା ଏଗାର ବର୍ଷ ବୟସରେ ସାଧାରଣତଃ ସନ୍ତାନ ପ୍ରସବ କରିଥାନ୍ତି ।

ଏଥିରୁ ଜଣାଯିବ ଯେ ଜଳବାୟୁ, ଖାଦ୍ୟ, ବଂଶ-ପରମ୍ପରା, ସଙ୍ଗଦୋଷ, ଜୀବନଯାତ୍ରା ପ୍ରଣାଳୀ, ଆର୍ଥିକ ପରିସ୍ଥିତି ଓ ଅନ୍ୟାନ୍ୟ

କେତେକ କାରଣ ଉପରେ ବାଳିକାର ପ୍ରଥମ ରଜଃସ୍ରାବ ଆରମ୍ଭ ହେବା ନିର୍ଭର କରେ । ସେହେତୁ ସବୁ ଦେଶମାନଙ୍କରେ ବାଳିକାମାନଙ୍କର ପ୍ରଥମ ରଜଃସ୍ରାବ ସମାନ ବୟସରେ ହୁଏ ନାହିଁ । ଯୌନବିତ୍ତମାନେ ବିଭିନ୍ନ ଦେଶର ବାଳିକାମାନଙ୍କର ଯେଉଁ ବୟସରେ ସାଧାରଣତଃ ପ୍ରଥମ ରଜଃସ୍ରାବ ଆରମ୍ଭ ହୁଏ ବୋଲି ନିର୍ଦ୍ଧାରଣ କରିଛନ୍ତି, ତାହା ନିମ୍ନରେ ପ୍ରଦତ୍ତ ହେଲା —

| | |
|---|---|
| ସ୍ୱିଡେନ | ୧୬ ବର୍ଷ ୯ ମାସ |
| ନରଓ୍ୱେ | ୧୪ ବର୍ଷ ୭ ମାସ |
| ଫିନଲ୍ୟାଣ୍ଡ୍ | ୧୪ ଠାରୁ ୧୫ ବର୍ଷ |
| ରୁଷିଆର ଉଦ୍ରାଞ୍ଚଳ··· | ୧୮ ଠାରୁ ୧୯ ବର୍ଷ |
| ବର୍ଲିନ ··· | ୧୪ ଠାରୁ ୧୫ ବର୍ଷ |
| (ଶ୍ରମିକ ଶ୍ରେଣୀର) | ୧୭ ଠାରୁ ୧୮ ବର୍ଷ |
| ଗ୍ରେଟ ବ୍ରିଟେନ ··· | ୧୫ ଠାରୁ ୧୫½ ବା ୧୬ ବର୍ଷ |
| ଫ୍ରାନ୍ସ | ୧୫ ଠାରୁ ୧୬ ବର୍ଷ |
| ଦକ୍ଷିଣ ୟୁରୋପ | ୧୨ ଠାରୁ ୧୩ ବର୍ଷ |
| ଇଟାଲି | ୧୩ ଠାରୁ ୧୪ ବର୍ଷ |
| ହଙ୍ଗେରୀ | ୧୫ ଠାରୁ ୧୬ ବର୍ଷ |
| ପାଲେଷ୍ଟାଇନ | ୧୩ ବର୍ଷ |
| ତୁର୍କି | ୧୦ ବର୍ଷ |
| ସିରିଆ | ୧୨ ବର୍ଷ |
| ଉତ୍ତର ପର୍ସିଆ | ୧୪ ବର୍ଷ |
| ଦକ୍ଷିଣ ପର୍ସିଆ | ୯ ଠାରୁ ୧୦ ବର୍ଷ |
| ଭାରତ | ୧୧ ଠାରୁ ୧୩ ବର୍ଷ |
| ସିହଳ | ୧୧ ଠାରୁ ୧୩ ବର୍ଷ |
| ଥାଇଲ୍ୟାଣ୍ଡ୍ | ୧୧ ଠାରୁ ୧୩ ବର୍ଷ |
| ଜାପାନ ··· | ୧୩ ଠାରୁ ୧୪ ବର୍ଷ |
| ଆଫ୍ରିକାର ନିଗ୍ରୋ··· | ୧୦ ଠାରୁ ୧୩ ବର୍ଷ |
| ଆଲଜିରିଆ ··· | ୯ ଠାରୁ ୧୦ ବର୍ଷ |

| | |
|---|---|
| ଅଷ୍ଟ୍ରେଲିଆର ଆଦିବାସୀ ନାରୀ··· | ପ୍ରାୟ ୮ ବର୍ଷ ବୟସରେ, ଖୁବ ଡେରି ହେଲେ ୧୨ ବର୍ଷ ବୟସରେ |
| ଇଣ୍ଡୋନେସିଆ | ୧୦ ଠାରୁ ୧୩ ବର୍ଷ |
| ଦକ୍ଷିଣ ଆମେରିକା··· | ୯ ଠାରୁ ୧୪ ବର୍ଷ |
| ଗ୍ରେଟ ବ୍ରିଟେନ୍··· | ୧୨ ଠାରୁ ୧୪ ବର୍ଷ |
| ଗ୍ରୀନ୍‌ଲ୍ୟାଣ୍ଡ୍ ··· | ୧୭ ଠାରୁ ୧୯ ବର୍ଷ |
| ତୁନ୍ଦ୍ରାଞ୍ଚଳ | ୧୭ ଠାରୁ ୨୩ ବର୍ଷ |

ବାଳିକାର ପ୍ରଥମ ରଜଃସ୍ରାବ ବେଳେ କେତେକ ଲକ୍ଷଣ ରହେ। ଯଥା—ଅଣ୍ଟା ଭିତର ଟାଣିବା ପରି ଲାଗିବା, ତଳପେଟରେ ଗୁପ ଓ ବ୍ୟଥା, ବିଶେଷରେ ଗର୍ଭାଶୟ ଓ ଡିମ୍ବକୋଷ ନିକଟରେ, ଅସୁଖ ଲାଗିବା, ସ୍ତନରେ ସ୍ପର୍ଶକଷ୍ଟ, ମୁହଁ ଲାଲ ହୋଇ ଆସିବା, ଶୀଘ୍ର ଶୀଘ୍ର ଥଣ୍ଡା ଓ ଗରମ ଲାଗିବା ଅନୁଭୂତ। ଅନେକ ସମୟରେ ଝାଡ଼ା ଓ ପରିସ୍ରା ସମୟରେ ଅସୁବିଧା ଲାଗେ। ଏହି ସମୟରେ ବାଳିକା ମଧ୍ୟ ଚିଡ଼ଚିଡ଼ିଆ ପ୍ରକୃତିର ହୁଏ ଓ ତାର ମାନସିକ ଉତ୍ତେଜନା ରହେ। ମୁଣ୍ଡବ୍ୟଥା, କ୍ଳାନ୍ତ-ବୋଧ, ଆଖିର ପତା କାଳିଆ ଦିଶିବା, କ୍ଷୁଧାହୀନତା, ଗୁଳ୍ମ ଥିବା ଓ ହୃତ୍‌କମ୍ପନ ହେବା ( palpitation ) ଓ ଅଣ୍ଟା ଠାରୁ ଜଙ୍ଘ ପର୍ଯ୍ୟନ୍ତ ବ୍ୟଥା ଦେଖାଦିଏ ।

ଏହି ସମୟରେ ସ୍ତନ ସାମାନ୍ୟ ଫୁଲି ଉଠେ । ତଳପେଟ ଭାରିଲାଗେ। ରଜଃସ୍ରାବ ଆରମ୍ଭ ହୁଏ ଓ ତାପରେ ଜନନେନ୍ଦ୍ରିୟ କୁଣ୍ଡେଇ ଲାଗେ। କିଶୋରୀଙ୍କର ତଳପେଟରେ ଜୋର୍‌ରେ ବ୍ୟଥା ହୋଇ ଦୁର୍ବଳ ଲାଗେ। ମନ୍ଦାଗ୍ନି ଓ ଅଜୀର୍ଣ୍ଣ ଝାଡ଼ା ହୁଏ। ପ୍ରଥମ ରଜଃସ୍ରାବର ଦୁଇ ବା ତିନି ମାସ ପରେ ପୁଣି ରଜଃସ୍ରାବ ହୁଏ ଏବଂ ଏକ ବର୍ଷ ପରେ ନିୟମିତ ରୂପେ ରଜଃସ୍ରାବ ହୋଇଥାଏ। କେବେ କିପରି ପ୍ରଥମେ ପ୍ରଥମେ ବ୍ୟଥା ହୋଇ ସ୍ରାବ ହୁଏ ଏବଂ କୋଡ଼ିଏ ଦିନ ବ୍ୟବଧାନରେ ମଧ୍ୟ ରଜଃସ୍ରାବ ହୋଇଥାଏ।

ପ୍ରଥମ ରଜଃସ୍ରାବରେ ସ୍ରାବର ପରିମାଣ କମ୍ ହୁଏ। ପ୍ରଥମେ ମାଟିଆ ରଙ୍ଗର ରକ୍ତ ଆସେ। ସ୍ରାବର ଦ୍ୱିତୀୟ ବା ତୃତୀୟ ଦିନରେ

ସଫା ରକ୍ତ ଆସେ । ଏହି ରକ୍ତ କଟା ଘା'ରୁ ବୋହିବା ରକ୍ତଠାରୁ ଭିନ୍ନ । ଏହା ପାତଳା ହୁଏ ଓ ଜମାଟ ବାନ୍ଧେ ନାହିଁ, କିନ୍ତୁ କଟା ଘା'ର ରକ୍ତ ବହଳ ଓ ଶୀଘ୍ର ଜମାଟ ବାନ୍ଧେ ।

କିଶୋରୀମାନଙ୍କର ପ୍ରଥମ ରଜଃସ୍ରାବ ବେଳେ ସେମାନଙ୍କର ଆକାର ଓ ଓଜନ ବୃଦ୍ଧି ପାଇବାର ଆରମ୍ଭ ହୁଏ । ଶ୍ରମିକ ଶ୍ରେଣୀର ବାଳିକାମାନଙ୍କର ପ୍ରାୟ ତେର ବର୍ଷଠାରୁ ପନ୍ଦର ବର୍ଷ ବୟସ ଭିତରେ ଆକାର ଓ ଶକ୍ତି ଯଥେଷ୍ଟ ବୃଦ୍ଧି ପାଏ । ପ୍ରଥମ ରଜଃସ୍ରାବ ଆରମ୍ଭ ପୂର୍ବରୁ ସେହି ବୟସର ବାଳକମାନଙ୍କ ଅପେକ୍ଷା ବାଳିକାମାନେ ଶରୀର ଆକାରରେ ଅଧିକ ବୃଦ୍ଧିଲାଭ କରନ୍ତି । କିନ୍ତୁ ସାଧାରଣ ବାଳିକାମାନଙ୍କର ପ୍ରାୟ ଚଉଦ ବର୍ଷ ବୟସରେ ଶରୀରର ବୃଦ୍ଧି ବନ୍ଦ ହୋଇଯାଉଥିବା ବେଳେ ବାଳକମାନଙ୍କର ଷୋଳ ବର୍ଷ ବୟସ ପର୍ଯ୍ୟନ୍ତ ଚାଲିଥାଏ ।

ଜନ୍ମ ସମୟରେ ମଧ୍ୟ ବାଳକମାନେ ବାଳିକାମାନଙ୍କ ଅପେକ୍ଷା ସାଧାରଣତଃ ଏକ ସେଣ୍ଟିମିଟର ବଡ଼ ଥାନ୍ତି । କିନ୍ତୁ ପ୍ରଥମ ରଜଃସ୍ରାବ ସମୟରେ ସେମାନଙ୍କ ଶରୀରର ଆକାର ଏତେ ଶୀଘ୍ର ବୃଦ୍ଧି ପାଏ ଯେ ଷୋଳ ବା ସତର ବର୍ଷ ବୟସର ବାଳିକା ଅଠର ବା ଊଣେଇଶି ବର୍ଷ ବୟସର ବାଳକ ସଙ୍ଗେ ଉଚ୍ଚରେ ପ୍ରାୟ ସମାନ ହୋଇଯାଏ । ପ୍ରାୟ ପ୍ରତ୍ୟେକ ଜଳବାୟୁ, ଜାତି ଓ ଶ୍ରେଣୀରେ ଏହା ଲକ୍ଷ୍ୟ କରାଯାଇ ପାରେ ।

| | କେଉଁ ବୟସରେ ବୃଦ୍ଧି ହୁଏ | |
|---|---|---|
| | ବାଳିକା | ବାଳକ |
| ଓଜନ | ୧୨—୧୪ | ୧୪—୧୭ |
| ଉଚ୍ଚତା | ୧୨—୧୩ | ୧୨—୧୫ |
| ନିଃଶ୍ୱାସ ପ୍ରଶ୍ୱାସ ଶକ୍ତି | ୧୨—୧୫ | ୧୫—୧୭ |
| ଶରୀରର ମାଂସପେଶୀମାନଙ୍କ ଶକ୍ତି | ୧୨—୧୪ | ୧୪—୧୫ |

ସାଧାରଣତଃ ବାଳକମାନଙ୍କ ଅପେକ୍ଷା ଦୁଇ ବର୍ଷ ପୂର୍ବରୁ ବାଳିକାମାନେ ପ୍ରଥମ ଯୌବନରେ ପଦାର୍ପଣ କରନ୍ତି । କିନ୍ତୁ ଏହା ଶରୀରର ଶକ୍ତି ଉପରେ ନିର୍ଭର କରେ ।

କିଶୋରୀର ମାସିକ ରଜଃସ୍ରାବ ଠିକ୍ ଓ ନିୟମିତ ରୂପେ ହେବା ପର୍ଯ୍ୟନ୍ତ ସେ ଯୁବତୀ ଅବସ୍ଥାରେ ପଦାର୍ପଣ କରିନାହିଁ ବୋଲି ଧରାଯାଇ

ପାରେ । ଭିତରର ଏହି ପରିବର୍ତ୍ତନ ସମୟରେ କିଶୋରୀମାନେ କେତେକ ମାତ୍ରାରେ ଦୁର୍ବଳ ହୋଇ ପଡ଼ିବା ଯୋଗୁ ସେମାନଙ୍କ ଶରୀରର ପ୍ରତିରୋଧ ଶକ୍ତି କମିଯାଏ । ସେଥିପାଇଁ ଏହି ବୟସରେ ଅନେକ କିଶୋରୀ ସହଜରେ ରୋଗାକ୍ରାନ୍ତ ହୁଅନ୍ତି ।

ରଜଃସ୍ରାବ ଆରମ୍ଭ ହେବା ପରେ କିଶୋରୀମାନଙ୍କ ମୁହଁ ଫୁଲି ସତେଜ ରହେ । ଏହି ସମୟରେ କିଶୋରୀମାନଙ୍କ ଯୋନିମଣ୍ଡଳ ଓ କାଖରେ ଲୋମ ଗଜୁରି ଉଠେ । ସେଥିପାଇଁ ପ୍ରାଚୀନ ରୋମ ରାଜ୍ୟରେ ପ୍ରତ୍ୟେକ କିଶୋରୀ ବିବାହ କରିବା ପୂର୍ବରୁ ବିବାହଯୋଗ୍ୟ କି ନୁହେଁ ଜାଣିବା ନିମନ୍ତେ ତାହାର ଯୋନିମଣ୍ଡଳରେ ଲୋମ ଗଜୁରି ଉଠିଛି କି ନାହିଁ ପରୀକ୍ଷା କରିବା ପାଇଁ ରାଜା ଜଷ୍ଟିନିୟନ ଆଦେଶ ଜାରି କରିଥିଲେ । ୟୁହୁଦୀମାନଙ୍କ ଧର୍ମଗ୍ରନ୍ଥ 'ତାଲମୁଡ଼'ରେ ଲେଖା ଅଛି ଯେ ବାଳିକାମାନଙ୍କ ଯୋନିମଣ୍ଡଳରେ ଦୁଇଟି ଲୋମ ଉଠିଲେ କିମ୍ବା ଲୋମ ନ ଉଠି ବାର ବର୍ଷ ବୟସ ହେଲେ ସେମାନେ ସାଧାରଣତଃ ଯୌବନରେ ପଦାର୍ପଣ କରନ୍ତି ।

ପୂର୍ବେ ଚୀନରେ ବାଳିକାମାନଙ୍କ ଯୋନିମଣ୍ଡଳରେ ଲୋମ ଗଜୁରି ଉଠିଲେ ସେ ଯୌବନରେ ପଦାର୍ପଣ କଲା ବୋଲି ଭାବୁଥିଲେ । ଆଜି କେତେକ ସମାଜରେ ଛାତିର ସ୍ତନ ଓ ସ୍ତନମୁଣ୍ଡି ଠିକ୍ ଭାବେ ବୃଦ୍ଧି ହେଲେ ବାଳିକା ଯୌବନରେ ପଦାର୍ପଣ କରିବା ଅନୁମାନ କରିଥାନ୍ତି । ପୁଣି କେତେକ ସମାଜରେ ସ୍ତନମୁଣ୍ଡିର ଚାରିପଟେ ଅର୍ଥାତ୍ ସ୍ତନାଗ୍ରରେ କାଳିଆ ଅଂଶ ଭଲଭାବେ ଦେଖାଗଲେ ଏବଂ ଯୋନିମଣ୍ଡଳରେ ଚର୍ବି ଜମି ଚର୍ବିପଟି ବର୍ଦ୍ଧିତ ହେଲେ କିଶୋରୀ ଯୌବନରେ ପଦାର୍ପଣ କଲା ବୋଲି ଭାବୁଥିଲେ ।

ଆଦିବାସୀ ସମାଜରେ କେବଳ ରଜଃସ୍ରାବ ଆରମ୍ଭ ହେଲେ ବାଳିକାମାନେ ଯୌବନରେ ପଦାର୍ପଣ କରନ୍ତି ବୋଲି ଭାବନ୍ତି ଏବଂ ସେହି ସମୟରେ ଭୋଜି କରନ୍ତି । ରଜଃସ୍ରାବ ହେବା ଦିନଗୁଡ଼ିକ ବାଳିକା ସମସ୍ତଙ୍କ ଠାରୁ ଅଲଗା ହୋଇ ଦୂରେଇ ରହେ । ଏହିତକ ଦିନ ତାକୁ ଉପବାସରେ ରହିବାକୁ ପଡ଼େ ।

ଏହି ବୟସରେ କିଶୋରୀମାନଙ୍କର ଶାରୀରିକ ଓ ମାନସିକ ପରିବର୍ତ୍ତନ ଆସେ, ଜନନେନ୍ଦ୍ରିୟର ପ୍ରତ୍ୟେକ ଅଂଶ ବର୍ଦ୍ଧିତ ହୁଏ । ବାଳିକ-

ମାନଙ୍କର ବୁଝିବା ଶକ୍ତି ବୃଦ୍ଧିପାଏ ଓ ମାନସିକ ଶକ୍ତି ସୂକ୍ଷ୍ମ (Sensative) ହୋଇଉଠେ। ଜନନେନ୍ଦ୍ରିୟ ବର୍ଦ୍ଧିତ ହୋଇ ଆସିବା ଯୋଗୁଁ ଶରୀରର ସ୍ନାୟୁତନ୍ତ୍ରରେ ଯେଉଁ ଚାପ ପଡ଼େ ତାହା ସମ୍ଭାଳିବା ନିମନ୍ତେ ସ୍ନାୟୁବିକ ତନ୍ତ୍ରର ଶକ୍ତି, ସ୍ୱଭାବ ଓ ଶାରୀରିକ ଗଠନ ଓ ଶିକ୍ଷା ଉପରେ ନିର୍ଭର କରେ। ଚଡ଼ଚଡ଼ିଆ ପ୍ରକୃତି ଥିବା ପରିବାରର ବାଳକମାନେ, ବଡ଼ ବଡ଼ ସହରର ବାଳିକାମାନେ ଯେଉଁମାନେ ସ୍କୁଲରେ ପଢ଼ୁଥାନ୍ତି ଏବଂ ଯୌନତନ୍ତ୍ର କେତେ ପର୍ଯ୍ୟନ୍ତ ବୁଝି ସାରିଥାନ୍ତି ସେମାନଙ୍କଠାରେ ଏହି ବୟସରେ ବା ସମୟର ଢଙ୍ଗଢାଙ୍ଗ ମଫସଲର ଅଶିକ୍ଷିତ ବାଳିକାମାନଙ୍କ ଅପେକ୍ଷା ଭିନ୍ନ ରହିବା ଭଲଭାବେ ଲକ୍ଷ୍ୟ କରାଯାଇ ପାରେ।

କେତେକ ବାଳିକାମାନଙ୍କର ଠିକ୍ ବୟସରେ ଓ ସମୟରେ ପ୍ରଥମ ରଜଃସ୍ରାବ ଆରମ୍ଭ ହେବାବେଳେ ଆଉ କେତେକ ବାଳିକାଙ୍କର ଅତି ଶୀଘ୍ର ଆରମ୍ଭ ହୁଏ। ସେତେବେଳକୁ ଶରୀର ଓ ଜନନେନ୍ଦ୍ରିୟ ଠିକ୍ ଭାବେ ବୃଦ୍ଧି ପାଇ ନ ଥାଏ। ଆଉ କେତେକ ବାଳିକାମାନଙ୍କର ଡେରିରେ ଅର୍ଥାତ୍ କେତେ ବର୍ଷ ବୟସ ପର୍ଯ୍ୟନ୍ତ ରଜଃସ୍ରାବ ଆରମ୍ଭ ହୁଏ ନାହିଁ। ଏମାନଙ୍କର ଜନନେନ୍ଦ୍ରିୟ ଓ ବାହ୍ୟ ଶରୀରର ଆକାର ଠିକ୍ ଭାବେ ବୃଦ୍ଧି ପାଇଥିଲେ ମଧ୍ୟ ରଜଃସ୍ରାବ ଆରମ୍ଭ ହୁଏ ନାହିଁ। ଆଉ କେତେକଙ୍କର ପ୍ରଥମ ରଜଃସ୍ରାବ ଆରମ୍ଭ ହେଲେ ସୁଦ୍ଧା ଜନନେନ୍ଦ୍ରିୟର ବାହ୍ୟ ଅଂଶ-ଗୁଡ଼ିକ ଠିକ୍ ଭାବେ ବୃଦ୍ଧି ପାଇ ନ ଥାଏ କିମ୍ବା କାଖ ଓ ଯୋନିମଣ୍ଡଳରେ ଭଲ ଭାବେ ଲୋମ ଉଠି ନ ଥାଏ ଏବଂ ସ୍ତନ ଭଲ ଭାବେ ବର୍ଦ୍ଧିତ ହୋଇ ନ ଥାଏ।

ସହରର ଶ୍ରମିକ ଶ୍ରେଣୀର ବାଳିକାମାନେ ଏହି ବୟସରେ ଖାଦ୍ୟାଭାବ, ପରିଶ୍ରମ, ପୁରୁଷର ସଙ୍ଗ ଓ ବିଶେଷ ଯୌନ ଉତ୍ତେଜନା ପାଇବା ଯୋଗୁଁ ଯେତିକି ଅସୁବିଧା ଅନୁଭବ କରନ୍ତି, ସେହି ଅନୁପାତରେ ମଫସଲର କୃଷକ ଶ୍ରେଣୀର ବାଳିକାମାନେ ଏହି ବୟସରେ ନିର୍ମଳ ପବନ, କମ୍ ଯୌନ ଉତ୍ତେଜନା, ଅପେକ୍ଷାକୃତ ଭଲ ଖାଦ୍ୟ ପାଉଥିବା ଯୋଗୁଁ ସେମାନେ ଯୌବନରେ ପଦାର୍ପଣ କରିବା ନିମନ୍ତେ ସମୟ ନେଉଥିଲେ ସୁଦ୍ଧା ଏତେ ଅସୁବିଧା ଅନୁଭବ କରନ୍ତି ନାହିଁ।

ସହରରେ ବୟସ୍କ ବାଳିକା ଓ ବାଳକମାନଙ୍କ ସଙ୍ଗ, ନାଚ ତାମସା, ଥିଏଟର୍, ଉପନ୍ୟାସ ପଢ଼ିବା, ଗୃହ, ଭୋଜ ପ୍ରଭୃତି

ଯୌନ ଉତ୍ତେଜନାକୁ ବୃଦ୍ଧି କରାଏ ଏବଂ ଏହାର ଯୌନ ଜୀବନ ଉପରେ ପ୍ରଭାବ ପଡ଼େ ।

ପ୍ରଥମ ରଜଃସ୍ରାବ ସମୟରେ ବାଳିକାମାନଙ୍କର ପୂର୍ବର ଫୂର୍ତ୍ତି ଚାଲିଯାଏ । ସେମାନେ ଧୀରସ୍ଥିର ଓ ଏକୁଟିଆ ରହି ନିଜ ଚିନ୍ତାରେ ବୁଡ଼ି ରହନ୍ତି । ଶାରୀରିକ ବା ମାନସିକ ପରିଶ୍ରମ କରିବା ପାଇଁ ସେମାନଙ୍କର ଇଚ୍ଛା ହୁଏ ନାହିଁ ଏବଂ ସାମାନ୍ୟ କଥାରେ ବିରକ୍ତ ହୁଅନ୍ତି । ସେମାନଙ୍କ ଠାରେ ଚିତ୍ତରେ ଅସ୍ଥିରତା ଦେଖାଦିଏ । ପ୍ରଥମ ରଜଃସ୍ରାବ ବେଳେ ସେମାନେ ଶୁଖିଲି ଦିଶନ୍ତି ଓ ଉଦ୍‌ବେଗ ରହିଥିବା ଦେଖାଯାଏ । ହାଲିଆ ହେବା, ଆଖିର ପତା କାଳିଆ ହେବା, ଶକ୍ତିହୀନତା ପ୍ରଭୃତି ଲକ୍ଷଣ ମଧ୍ୟ ସେମାନଙ୍କ ଠାରେ ଦେଖାଯାଏ ।

ପ୍ରଥମ ରଜଃସ୍ରାବ ଆରମ୍ଭ ହେବାର କେତେ ଦିନ ପୂର୍ବରୁ ଯୋନିରନ୍ଧ୍ର, ଭଗୌଷ୍ଠ ଓ ଯୋନିନାଳୀର ଝିଲି ପରଦା ଫୁଲି ରହେ । ଭଗାଙ୍କୁରଟି ବର୍ଦ୍ଧିତ ହୋଇ ବଡ଼ ଦିଶେ । ସ୍ତନ ଦୁଇଟି ସ୍ପଷ୍ଟ ହୋଇ ଉଠନ୍ତି । ପରିସ୍ରା ବହଳିଆ ହୁଏ । ଅନେକ ବାଳିକାମାନଙ୍କ ଠାରେ ପ୍ରଥମ ରଜଃସ୍ରାବ ପୂର୍ବରୁ କୋଷ୍ଠକାଠିନ୍ୟ, ଅଗ୍ନିମାନ୍ଦ୍ୟ, ଅଜୀର୍ଣ୍ଣ ଝାଡ଼ା ହେବା ପ୍ରଭୃତି ଲକ୍ଷଣ ଦେଖାଯାଏ ।

ପ୍ରଥମ ରଜଃସ୍ରାବ ପ୍ରାୟ ତିନିଦିନ ଠାରୁ ଛଦିନ ପର୍ଯ୍ୟନ୍ତ ରହେ । ପ୍ରଥମ ଦିନ ପ୍ରାୟ ଲାଳଯୁକ୍ତ ରକ୍ତ ବାହାରେ । କେତେକଙ୍କର ପ୍ରଥମ ରଜଃସ୍ରାବ ସମୟରେ ଜୋରରେ ସ୍ରାବ ହୋଇ ବହୁତ ଦିନ ପର୍ଯ୍ୟନ୍ତ ରହେ । ପ୍ରଥମ ରଜଃସ୍ରାବ ପରେ ସବୁ ଯୁବତୀମାନଙ୍କର ନିୟମିତ ଭାବେ ପ୍ରତ୍ୟେକ ଚାରି ସପ୍ତାହରେ ଥରେ ରଜଃସ୍ରାବ ହୋଇ ନ ଥାଏ । ଦୁର୍ବଳ ଓ ରକ୍ତହୀନ ବାଳିକାମାନଙ୍କର ପ୍ରଥମ ରଜଃସ୍ରାବ ପରେ ଅନେକ ସପ୍ତାହ ପର୍ଯ୍ୟନ୍ତ ରଜଃସ୍ରାବ ହୁଏ ନାହିଁ । ଆଉ କେତେକଙ୍କର ଶୀଘ୍ର ଶୀଘ୍ର ରଜଃସ୍ରାବ ହୋଇଥାଏ । ଏପରିକି ପ୍ରଥମ ରଜଃସ୍ରାବର ଦୁଇ ସପ୍ତାହ ପରେ ବା ତା ପୂର୍ବରୁ ମଧ୍ୟ ପୁଣି ରଜଃସ୍ରାବ ହୋଇପାରେ ।

ପ୍ରଥମ ରଜଃସ୍ରାବ ବେଳେ ବାଳିକାର ଯୌନ ପ୍ରବୃତ୍ତି ଯାହା କି ସେତେବେଳ ପର୍ଯ୍ୟନ୍ତ ଲୁକ୍‌କାୟିତ ହୋଇ ଶରୀରରେ ରହିଥିଲା ତାହା ବୃଦ୍ଧି ହୁଏ । କାରଣ ଶରୀରର ବିଭିନ୍ନ ଯୌନଗ୍ରନ୍ଥି କାର୍ଯ୍ୟ କରିବା ଆରମ୍ଭ କରିଦିଅନ୍ତି । ଯୋନିମଣ୍ଡଳରେ ଲୋମ ଉଠିବା, ଛାତିରେ ସ୍ତନର ଆକାର

ବଡ଼ ହେବା ଏବଂ ରଜଃସ୍ରାବ ଆରମ୍ଭ ହେବା, ଏହି ସବୁ ଦେଖି କିଶୋରୀମାନଙ୍କର ଯୌନ ପ୍ରବୃତ୍ତି, ରସାଳ ସ୍ୱପ୍ନ ଜାଗି ଉଠେ । ଉପନ୍ୟାସ ପଢ଼ିବା, ବୟସ୍କ ଯୁବତୀମାନଙ୍କ ସହ କଥାବାର୍ତ୍ତା, ସେମାନଙ୍କର ଚାଲି-ଚଳନ ସେହି ସମୟରେ ବିଶେଷ ପ୍ରଭାବ ପକାଇଥାନ୍ତି ଓ ଯୌନ ପ୍ରବୃତ୍ତିକୁ ବୃଦ୍ଧି କରିଥାନ୍ତି । ଏହି ସବୁ ବାହ୍ୟ ପ୍ରଭାବର ଅନୁପାତରେ ତାହାର ଯୌନ ପ୍ରବୃତ୍ତି ବୃଦ୍ଧି ପାଏ ।

ପ୍ରଥମ ଅବସ୍ଥାରେ ଏହି ସବୁ ପ୍ରଭାବ କୌଣସି ପରିଷ୍କାର ଧାରଣା ମନରେ ଆଣେ ନାହିଁ । କିଶୋରୀ ଏକାକୀ ବସିବା ଅବସ୍ଥାରେ ତାହାର ଭାବନା ଶକ୍ତି ଖଟାଏ, ଯାହା ଫଳରେ ସେ ରସାଳ ସ୍ୱପ୍ନ ଦେଖିବା ଆରମ୍ଭ କରେ । ଶିକ୍ଷା, ଉପନ୍ୟାସ ପଢ଼ା, ବୟସ୍କା ଓ ଅନୁଭୂତ ଥିବା ରମଣୀ-ମାନଙ୍କ ସହିତ ବାସ ତାହାର ଧାରଣାଗୁଡ଼ିକୁ ସ୍ପଷ୍ଟ କରିଦିଏ । ଏହା ଫଳରେ ତାହାର ଯୌନ ପ୍ରବୃତ୍ତି ଜାଗିଉଠେ । ଯେଉଁ ପୁରୁଷ ବା ଯୁବକକୁ ସେ ପ୍ରେମ ବା ସ୍ନେହ କରିବା ଆରମ୍ଭ କରେ ସେହି ଯୁବକର ଉପସ୍ଥିତିରେ ତାହାର ଗ୍ରନ୍ଥି ସ୍ପନ୍ଦିତ ହୁଏ । ସମୟେ ସମୟେ ଶରୀରରୁ ଝାଳ ବହେ ଓ କଣ୍ଠସ୍ୱର ଖନ ମାରିଥାଏ । ସେହି ସମୟରେ ବାଳିକା ଆଦର୍ଶ ପ୍ରେମର କଳ୍ପନା କରେ । ଯୌନ ପ୍ରବୃତ୍ତି ଓ ଧର୍ମ ଏହି ଦୁଇଟି ଜିନିଷ ପ୍ରତି ଏହି ବୟସରେ ବାଳିକାମାନେ ବିଶେଷଭାବେ ଆକୃଷ୍ଟ ହେଉଥିବାର ଦେଖାଯାଏ । ଏହା ପରେ ଯେତେବେଳେ ଯୌନ ପ୍ରବୃତ୍ତି ଜୋର ହୋଇ କୌଣସି ଯୁବକ ବା ପୁରୁଷ ଉପରେ ନିର୍ଦ୍ଦିଷ୍ଟ ଭାବେ ରହେ, ସେତେବେଳେ ସେମାନେ ସମସ୍ତ ବନ୍ଧନ ଛାଡ଼ି ତା ସହିତ ଚାଲିଯାନ୍ତି । ଯେଉଁ ପ୍ରେମ ବା ସ୍ନେହରେ ମନୁଷ୍ୟର କେବଳ ପ୍ରବୃତ୍ତି ବିଶେଷ ଅଂଶ ନିଏ ସେହି ପ୍ରେମ ବା ସ୍ନେହ ଠିକ୍ ନ ଥିବା ଯୋଗୁଁ ବେଶି ଦିନ ରହି-ପାରେନା । ପ୍ରଥମ ଦେଖା ଠିକ୍ ଭାବେ ପ୍ରକୃତ ପ୍ରେମକୁ ଜଗାଇ ପାରେ ନାହିଁ । ଏହା କେବଳ ସ୍ନେହ ପାଇଁ । ଯୌନ ପ୍ରବୃତ୍ତିରେ ଅନ୍ଧ ହେଲେ ପ୍ରଥମ ଦେଖାରେ ପ୍ରେମ ହୋଇଯାଏ ।

ଯୌନବିତ୍ କେବଲ କହିଛନ୍ତି ଯେ ଷୋଳ ଠାରୁ ଏକୋଇଶି ବର୍ଷ ବୟସ ଭିତରେ ଅନେକ ଯୁବତୀ ଆତ୍ମହତ୍ୟା କରିବା ଦେଖାଯାଏ । ଏହାର କାରଣ ହେଉଛି— ଯୌନତୃପ୍ତି ନ ପାଇବା, ଅସଙ୍ଗତ ପ୍ରେମ, ବ୍ୟଭିଚାରରୁ ଗର୍ଭସଞ୍ଚାର ଓ ପୁରୁଷମାନଙ୍କ ବିଶ୍ୱାସଘାତକତା ।

ଯେଉଁ ବାଳକାମାନଙ୍କର ଖୁବ୍ କମ୍ ବୟସରେ ପ୍ରଥମ ରଜଃସ୍ରାବ ଆରମ୍ଭ ହୋଇଯାଏ, ସେମାନଙ୍କ ଶରୀରର ଓଜନ ଅପେକ୍ଷାକୃତ ଅଧିକ ବୃଦ୍ଧି ପାଏ, ଶରୀରରେ ବେଶି ଚର୍ବି ଜମେ, ବାଳକା ଦାନ୍ତଗୁଡ଼ିକ ଶୀଘ୍ର ଉଠେ, ଶରୀରର ବୃଦ୍ଧି ଅନୁପାତରେ ବୟସ ବେଶି ହେବାପରି ମନେହୁଏ । ଯୋନମଣ୍ଡଳରେ ଶୀଘ୍ର ଲୋମ ଉଠେ । ଭଗୌଷ୍ଠ, ସ୍ତନ, ନିତମ୍ବ ବୟସ୍କା ରମଣୀଙ୍କ ପରି ଦିଶେ । ସେମାନଙ୍କ ଯୌନ ପ୍ରବୃତ୍ତି ମଧ୍ୟ ଶୀଘ୍ର ଆରମ୍ଭ ହୁଏ । କିନ୍ତୁ ଶାରୀରିକ ବୃଦ୍ଧି ଅନୁପାତରେ ମାନସିକ ବିକାଶ ପଛେଇ ଯାଏ ।

ଡିମ୍ବକୋଷର କାର୍ଯ୍ୟକ୍ରମ ନେଇ ପ୍ରଥମ ରଜଃସ୍ରାବ ବାଳକା-ମାନଙ୍କର ଆରମ୍ଭ ହୋଇଥାଏ । ଡିମ୍ବକୋଷ ଓ ଡିମ୍ବବାହିନୀ ନାଳୀ ଶୀଘ୍ର ବର୍ଦ୍ଧିତ ହୋଇଆସିଲେ ପ୍ରଥମ ରଜଃସ୍ରାବ ଶୀଘ୍ର ଆରମ୍ଭ ହୁଏ । ଏହିପରି ବାଳକାମାନଙ୍କର ଶୀଘ୍ର ଗର୍ଭସଞ୍ଚାର ହେବା ମଧ୍ୟ ଲକ୍ଷ୍ୟ କରାଯାଇଛି ।

କେଉଁଠି କିପରି ବାଳିକା ଜନ୍ମ ହେବାର ପ୍ରଥମ ବର୍ଷରେ ହିଁ ରଜଃସ୍ରାବ ଆରମ୍ଭ ହୋଇଥିବା ଯୌନବିତ୍‌ମାନେ ଲକ୍ଷ୍ୟ କରିଛନ୍ତି । ଗୋଟିଏ ବାଳିକାର ଜନ୍ମଠାରୁ ବାର ବର୍ଷ ବୟସ ପର୍ଯ୍ୟନ୍ତ ପ୍ରତ୍ୟେକ ମାସରେ ଦୁଇଦିନ ହିସାବରେ ସ୍ରାବ ହେଉଥିବା ଯୌନବିତ୍ ବର୍ନାର୍ଡ଼ (Bernard) ଲକ୍ଷ୍ୟ କରିଥିବା କହିଛନ୍ତି ।- ଏହି ବାଳିକାର ବାର ବର୍ଷ ଠାରୁ ଚଉଦ ବର୍ଷ ବୟସ ପର୍ଯ୍ୟନ୍ତ ସ୍ରାବ ବନ୍ଦ ହୋଇଯାଇଥିଲା ଏବଂ ପରେ ନିୟମିତ ଭାବେ ସ୍ରାବ ପୁଣି ଆରମ୍ଭ ହୋଇଥିଲା ।

ଏହିପରି ରଜଃସ୍ରାବ ଆରମ୍ଭ ହେଉଥିବା ବାଳିକାମାନଙ୍କର ଗର୍ଭସଞ୍ଚାର ମଧ୍ୟ ହୁଏ । ଯୌନବିତ୍ ମଣ୍ଟେଗୋମେରୀ (Montgomery) ଦେଖିଥିଲେ ଯେ ଗୋଟିଏ ବାଳକା ଯାହାର ଜନ୍ମର ପ୍ରଥମ ବର୍ଷ ବୟସରେ ରଜଃସ୍ରାବ ଆରମ୍ଭ ହେଉଥିଲା, ସେ ଦଶ ବର୍ଷ ବୟସ ବେଳକୁ ଜନନୀ ହୋଇଯାଇଥିଲା । ଯୌନବିତ୍ ହଲେର (Haller) ଲକ୍ଷ୍ୟ କରିଥିଲେ ଯେ ଗୋଟିଏ ବାଳକାର ଜନ୍ମ ହେବା ସମୟରେ ଯୋନମଣ୍ଡଳରେ ଲୋମ ଉଠି ଯାଇଥିଲା ଓ ଦୁଇ ବର୍ଷ ବୟସରେ ରଜଃସ୍ରାବ ଆରମ୍ଭ ହୋଇଥିଲା ଏବଂ ନ ବର୍ଷ ବୟସରେ ସେ ଜନନୀ ହୋଇଥିଲା ।

ଆଉ କେତେକ ବାଳକାମାନଙ୍କର ଅନେକ ବର୍ଷ ବୟସ ପର୍ଯ୍ୟନ୍ତ ରଜଃସ୍ରାବ ଆରମ୍ଭ ହୁଏ ନାହିଁ । ଏପରି କି ଛବିଶି ବର୍ଷ ବୟସରେ ପ୍ରଥମ

ରଜଃସ୍ରାବ ଆରମ୍ଭ ହେବା ଦେଖାଯାଇଛି । ଶରୀରରେ ଅତ୍ୟଧିକ ପରିମାଣରେ ଚର୍ବି ଜମିଯିବା, ଶରୀରର ଗଠନ, ରକ୍ତଦୋଷ, ବଢ଼ିବା ବୟସରେ ଜୀବନ ନିର୍ବାହ ପ୍ରଣାଳୀରେ ହଠାତ୍ ପରିବର୍ତ୍ତନ ପ୍ରଭୃତି କାରଣରୁ ବାଳିକାମାନଙ୍କର ପ୍ରଥମ ରଜଃସ୍ରାବ ଠିକ୍ ସମୟରେ ଆରମ୍ଭ ହୁଏ ନାହିଁ । ମଫସଲର ବାଳିକା ସହରକୁ ଆସି ରହିଲେ କିମ୍ବା ସେହି ବୟସରେ ନୂତନ କରି ଜୀବିକା ନିର୍ବାହ ନିମନ୍ତେ ଶାରୀରିକ ବା ମାନସିକ ପରିଶ୍ରମ କଲେ କିମ୍ବା ବାସ କରୁଥିବା ଜଳବାୟୁରେ ହଠାତ୍ ପରିବର୍ତ୍ତନ ହେଲେ ଏହିପରି ହୁଏ ବୋଲି ଯୌନବିଜ୍ଞମାନେ କହନ୍ତି ।

କୌଣସି ଦୁର୍ଘଟଣା ଯୋଗୁଁ ମାନସିକ ଭୟ ହେଲେ ରଜଃସ୍ରାବ ବନ୍ଦ ହୋଇଯାଏ । ଜଣେ ଯୁବତୀଙ୍କର କୌଣସି ପୁରୁଷଙ୍କ ସହିତ ସହବାସ ବା ଆଲିଙ୍ଗନରେ ଗର୍ଭସଞ୍ଚାର ହୋଇଥିବା ଭୟ ଯୋଗୁଁ ତାହାଙ୍କର ମାସିକ ରଜଃସ୍ରାବ ବନ୍ଦ ହୋଇଯାଇଥିଲା । ଯୁବତୀମାନଙ୍କର ଯୌନ ପ୍ରବୃତ୍ତି ଓ ଯୌନ ସଙ୍ଗମ ଉପରେ ହୁଏ ସେଥିର ଠିକ୍ ଭାବେ ଧାରଣା ନ ଥିଲେ ନିୟମିତ ଭାବେ ରଜଃସ୍ରାବ ନ ହୋଇ କେତେଦିନ ବନ୍ଦ ହୋଇ ଯାଇପାରେ ।

ବସବାସ ବା ଜୀବିକା ନିର୍ବାହ ପ୍ରଣାଳୀରେ ହଠାତ୍ ଓ ହଠାତ୍ ପରିବର୍ତ୍ତନ ହେଲେ ଠିକ୍ ସମୟରେ ରଜଃସ୍ରାବ ଆରମ୍ଭ ହୁଏ ନାହିଁ । ମଫସଲର ବାଳିକା ସହରରେ ଯାଇ ରହିଲେ କିମ୍ବା ଗୋଟିଏ ଦେଶରୁ ଯାଇ ଅନ୍ୟ ଦେଶରେ ରହିଲେ ସେଉଁଠାରେ ଜଳବାୟୁର ହଠାତ୍ ପାର୍ଥକ୍ୟ ଅନୁଭବ କରାଯାଏ କିମ୍ବା ବସି ରହି କାମ କରିବା ଅଭ୍ୟାସ ଥିବାବେଳେ ହଠାତ୍ ଶାରୀରିକ ପରିଶ୍ରମ ଆରମ୍ଭ ହେଲେ ଠିକ୍ ସମୟରେ ରଜଃସ୍ରାବ ଆରମ୍ଭ ହୁଏ ନାହିଁ ।

ବାଳିକାମାନେ ଥଣ୍ଡା ପାଇଲେ ସେମାନଙ୍କ ରଜଃସ୍ରାବ ଅନେକ ସମୟରେ ବନ୍ଦ ହୋଇଯାଏ । ପାଣିରେ ଠିଆ ହୋଇ ରହିବା, ପାଦ ସର୍ବଦା ଓଦା କରିବା ବା ରଖିବା, ମାସିକ ରଜଃସ୍ରାବ ବେଳେ କିମ୍ବା ବର୍ଷା ଓ ପବନ ହେବା ସମୟରେ ଶରୀରକୁ ଭଲଭାବେ ନ ଘୋଡ଼େଇ ରଖିବା, ଯୋନିଦ୍ୱାରରେ ଖୁବ୍ ଥଣ୍ଡା ପାଣି ମାରିବା ଯୋଗୁ ସମୟେ ସମୟେ ରଜଃସ୍ରାବ ବନ୍ଦ ହୋଇଥାଏ । ଏହା ସାଧାରଣତଃ ଶ୍ରମିକଶ୍ରେଣୀର

ଯୁବତୀମାନଙ୍କ ଠାରେ ଲକ୍ଷ୍ୟ କରାଯାଇପାରେ । ସ୍ୱଳ୍ପ ରଜ ହେଉଥିବା ଯୁବତୀମାନଙ୍କର ସାଧାରଣତଃ କମ୍ ବୟସରେ ପ୍ରଥମ ରଜଃସ୍ରାବ ଆରମ୍ଭ ହେଉଥିବା ଲକ୍ଷ୍ୟ କରାଯାଇଛି । ସମୟେ ସମୟେ ଏମାନଙ୍କର ଉନ୍ମାଦ, ବିକାର ଜନ୍ମିବା ମଧ୍ୟ ଦେଖାଯାଇଛି ।

ରଜଃସ୍ରାବ ଆରମ୍ଭ ହେବା ପୂର୍ବରୁ ନାରୀମାନଙ୍କ ଶରୀରର ଉତ୍ତାପ ସାମାନ୍ୟ ବୃଦ୍ଧି ହୁଏ । ସ୍ରାବ ହେଉଥିବା ସମୟରେ ଓ ସ୍ରାବ ବନ୍ଦ ହେବା ପରେ କେତେ ସମୟ ପର୍ଯ୍ୟନ୍ତ ଶରୀରର ଉତ୍ତାପ କମୁଥାଏ । ଏହା ହେଉଛି ସୁସ୍ଥ ସବଳ ଥିବା ନାରୀମାନଙ୍କ ସାଧାରଣ ଲକ୍ଷଣ । ଯେଉଁ ନାରୀମାନଙ୍କର ସ୍ୱାଭାବିକ ଓ ନିୟମିତ ରଜଃସ୍ରାବ ହୁଏ ନାହିଁ, ସେମାନଙ୍କ ଠାରେ ଶରୀରରେ ଜ୍ୱାଳା ଅନୁଭବ କରିବା, ତଳପେଟରେ ବ୍ୟଥା ହେବା, ପାଦ ଥଣ୍ଡା ହୋଇଆସିବା, ବାନ୍ତି, କୋଷ୍ଠବଦ୍ଧତା, ଅଜୀର୍ଣ୍ଣ, ମୁଣ୍ଡବ୍ୟଥା, ଛାତି ଥରିବା, ଉନ୍ମାଦ ପ୍ରଭୃତି ଲକ୍ଷଣ ଦେଖାଯାଇ ପାରେ । ଏହା ବ୍ୟତୀତ ଆଖିପତା କଳା ପଡ଼ିବା, ଦାନ୍ତମୂଳ ଫୁଲିବା ପ୍ରଭୃତି ଲକ୍ଷଣ ମଧ୍ୟ ଦେଖାଯାଇ ପାରେ ।

ଆଉ କେତେକ ନାରୀଙ୍କର ଠିକ୍ ଭାବେ ରଜଃସ୍ରାବ ନ ହେଲେ ନାକ, କାନ, ତୁଣ୍ଡ, ଅନ୍ତନାଳୀ, ମଳଦ୍ୱାର, ସ୍ତନ, ଫୁସ୍‌ଫୁସ୍ ଦେଇ ରକ୍ତ ବାହାରିବା ଦେଖାଯାଇଛି । କିନ୍ତୁ ଏହା ବିଶେଷଭାବେ ଦେଖାଯାଏ ନାହିଁ । ଏପରି ପରିସ୍ଥିତି ଉପୁଜିଲେ ଡାକ୍ତରଙ୍କ ପରାମର୍ଶ ନେଇ କାର୍ଯ୍ୟ କରିବା ଉଚିତ ।

ମାସିକ ରଜଃସ୍ରାବ ସମୟରେ ନାରୀମାନେ ପୂରାମାତ୍ରାରେ ବିଶ୍ରାମ ନେବା ଉଚିତ । ଶ୍ରମିକଶ୍ରେଣୀର ନାରୀମାନେ ଜୀବିକା ନିର୍ବାହ କରିବା ନିମନ୍ତେ ଶାରୀରିକ ପରିଶ୍ରମ କଲାବେଳେ ଧନୀ ପରିବାରର ଝିଅମାନେ ନାଚ, ଗାନ, ତାମସା ବା ପାହାଡ଼ ଚଢ଼ିବା ବା ଅନ୍ୟ ରକମ ପରିଶ୍ରମ କରିଥାନ୍ତି । ଆଉ କେତେକ ଝିଅ ସିଲେଇ କରିବାରେ ପରିଶ୍ରମ କରିଥାନ୍ତି । କେତେକ ଅନେକ ଦିନ ପର୍ଯ୍ୟନ୍ତ ହସ୍ତମୈଥୁନ ଅଭ୍ୟାସ କରିଥିବା ଯୋଗୁଁ ବିଶେଷ ଅସୁବିଧାର ସମ୍ମୁଖୀନ ହୁଅନ୍ତି । ଏହା ଫଳରେ ଶରୀରର ବିଭିନ୍ନ ଅଙ୍ଗରେ ବ୍ୟଥା, ଦୁର୍ବଳତା, ସ୍ନାୟବିକ ବିକାର ଓ କୋଷ୍ଠକାଠିନ୍ୟ ଦେଖାଦିଏ । ଅନେକ ସମୟରେ ବହୁତ ପରିମାଣରେ ଓ ଅନେକ ଦିନ ପର୍ଯ୍ୟନ୍ତ ରଜଃସ୍ରାବ ହୁଏ ।

ମାସିକ ରଜଃସ୍ରାବ ବେଳେ ସ୍ରାବ ଯୋଗୁଁ ଯୋନିମଣ୍ଡଳର ଲୋମ ରକ୍ତରେ ଭିଜିଯାଏ । ଏହିପରି ଭିଜିଯାଇ ରହିବା ଦ୍ୱାରା ଛାଲି ଘଷିଯାଇ ଯୋନିମଣ୍ଡଳ ଓ ଯୋନିନାଳୀରେ ଅସୁବିଧା ସୃଷ୍ଟି କରିପାରେ । ସେହେତୁ ସାମାନ୍ୟ ଉଷୁମ ପାଣି ବ୍ୟବହାର କରି ଯୋନିମଣ୍ଡଳକୁ ବରାବର ସଫା-ସୁତୁରା ରଖିବା ଆବଶ୍ୟକ ।

ବାଳିକାମାନେ ଦୀର୍ଘ ଦିନ ହସ୍ତମୈଥୁନ ଅଭ୍ୟାସ କଲେ ଜନନେନ୍ଦ୍ରିୟର ସୂକ୍ଷ୍ମ ତନ୍ତୁଗୁଡ଼ିକର ସୂକ୍ଷ୍ମତା ନଷ୍ଟ ହେବା ସଙ୍ଗେ ସଙ୍ଗେ ଗର୍ଭାଶୟର ଶ୍ଳେଷ୍ମା ଝିଲ୍ଲି ପତ୍ରେ ଓ ଡିମ୍ବକୋଷରେ ଅସୁବିଧା ସୃଷ୍ଟି ହୁଏ । ଡିମ୍ବକୋଷରେ ଯେଉଁ ଅସୁବିଧା ସୃଷ୍ଟି ହୁଏ ତଦ୍ଦ୍ୱାରା ଡିମ୍ବକୋଷର ଗୃହିପଟେ ବ୍ୟଥା ହୋଇପାରେ । ମାସିକ ରଜଃସ୍ରାବ ସମୟରେ ଓ ବିଶେଷରେ ଆରମ୍ଭ ବେଳେ ଏହି ବ୍ୟଥା ଜୋର୍‌ରେ ହୁଏ । କେବେ କିପରି ରଜଃସ୍ରାବର ପରେ ମଧ୍ୟ ଶାରୀରିକ ପରିଶ୍ରମ ଯୋଗୁଁ ଏହିପରି ବ୍ୟଥା ଅନୁଭୂତ ହୁଏ ।

ଯେଉଁ ବାଳିକାମାନେ ଯୌବନରେ ପଦାର୍ପଣ କଲାବେଳେ ସ୍ୱଳ୍ପରଜଃ କଷ୍ଟ ଭୋଗ କରନ୍ତି ବା ନିୟମିତ ରୂପେ ଯେଉଁମାନଙ୍କର ରଜଃସ୍ରାବ ହୁଏ ନାହିଁ । ସେହିମାନେ ସାଧାରଣତଃ ପାଣ୍ଡୁର ରୋଗ ବା ରକ୍ତହୀନ (Clorosis) ହୋଇଥାନ୍ତି । ସେମାନଙ୍କ ଶରୀରରେ ବହୁତ ଚର୍ବି ଜମି ରହିବା ଦେଖାଯାଏ । ରକ୍ତହୀନତା ଯୋଗୁଁ ଶରୀରର ଚର୍ମ ସେଠୁଆ ଏବଂ ଧଳା ଦିଶେ । ମୋଟା ଦିଶିଲେ ମଧ୍ୟ ସେମାନଙ୍କର ଶରୀର କୋମଳ ଓ ମାଂସପେଶୀଗୁଡ଼ିକ ଦୁର୍ବଳ ରହେ ।

କେତେକ ଯୁବତୀଙ୍କର କଠିନ ପରିଶ୍ରମ ନ କଲେ ସୁଦ୍ଧା ହୃତକମ୍ପନ୍, ଶ୍ୱାସରୋଧ, ଉଦ୍‌ବେଗ, ଥଣ୍ଡା ଧରିବା ଓ ଦୁର୍ବଳତା ପ୍ରଭୃତି ଦେଖାଦିଏ । ଏହିପରି ଯୁବତୀମାନେ ଦୁର୍ବଳତା ଯୋଗୁଁ ଶାରୀରିକ ପରିଶ୍ରମ କରିବାକୁ ଅନିଚ୍ଛା ପ୍ରକାଶ କରିଥାନ୍ତି । କିନ୍ତୁ ଖୋଲା ପବନରେ ଶାରୀରିକ ପରିଶ୍ରମ କରିବା ଦ୍ୱାରା ଏହା ଅନେକ ଦୂର କମିଯାଏ । ଖୋଲା ପବନରେ ରହିବା ଯୋଗୁଁ ନିଃଶ୍ୱାସରେ ଶରୀର ଅମ୍ଳଜାନ ବାଷ୍ପ ପାଏ ଏବଂ ତଦ୍ଦ୍ୱାରା ଶରୀରର ଉପକାର ହୁଏ ।

ଯୌନ ଉତ୍ତେଜନାରେ ଅତୃପ୍ତ ରହିବା, ଭୀଷଣ ଶାରୀରିକ ପରିଶ୍ରମ କରିବା, ମାନସିକ ରଜଃସ୍ରାବ ସମୟରେ ଥଣ୍ଡା ଧରିବା, କମ୍ପା

ତଳପେଟ, ମୂତ୍ରାଶୟ ଇତ୍ୟାଦିରେ କେତେକ ପ୍ରକାରର ରୋଗ ହେଲେ ନିୟମିତ ଓ ସ୍ୱାଭାବିକ ରଜଃସ୍ରାବରେ ବାଧା ଆସିଥାଏ । ଏହା ବ୍ୟତୀତ ହୃଦରୋଗ, ଫୁସ୍‌ଫୁସ୍‌ରେ କୌଣସି ରୋଗ ହେଲେ ମଧ୍ୟ ରଜଃସ୍ରାବରେ ବାଧା ଆସେ । କଲେରା, ବସନ୍ତ, ଇନ୍‌ଫ୍ଲୁଏନ୍‌ଜା, ଜ୍ୱର ଇତ୍ୟାଦି ଦ୍ୱାରା ଆକ୍ରାନ୍ତ ହେଲେ ନିୟମିତ ଓ ସ୍ୱାଭାବିକ ରଜଃସ୍ରାବରେ ବାଧା ଆସେ ।

ସମୟେ ସମୟେ ବହୁତ ପରିମାଣରେ ସ୍ରାବ ହେବା ଯୋଗୁଁ କିମ୍ବା ଅଧିକ ଦିନ ସ୍ରାବ ହେଲେ ନାରୀ ଦୁର୍ବଳ ଓ ଦୁର୍ବଳ ହୋଇ ମାନ୍ଦା ହୋଇଥାଏ । ଶାରୀରିକ ଓ ମାନସିକ ପରିଶ୍ରମ ନିମନ୍ତେ ଏହି କାରଣରୁ ଅନୁପଯୁକ୍ତ ହୋଇ କେତେକ ମୂର୍ଚ୍ଛା ଯିବାର ଦେଖାଯାନ୍ତି । ଆଉ କେତେକ ନାରୀଙ୍କର ସ୍ରାବ ପୂର୍ବରୁ ଓ ପରେ ତଳପେଟରେ ଜୋରରେ ବ୍ୟଥା ହୁଏ ।

ଯୌନଜୀବନ ଓ ପାଣ୍ଡୁର ରୋଗ ମଧ୍ୟରେ ସମ୍ବନ୍ଧ ରହିଥିବା ବହୁ ପୂର୍ବ କାଳରୁ ଲକ୍ଷ୍ୟ କରାଯାଇଛି । ପୂର୍ବେ ବିବାହ କରିବା ପରେ ବାଳିକା-ମାନଙ୍କ ପାଣ୍ଡୁର ରୋଗ ଭଲ ହୋଇଯାଏ ବୋଲି କହୁଥିଲେ । କିନ୍ତୁ ଏହା ଠିକ ନୁହେଁ । ମାସିକ ରଜଃସ୍ରାବ ନିୟମିତ ରୂପେ ଆରମ୍ଭ ହେଲେ ପାଣ୍ଡୁର ରୋଗ ଆପେ ଆପେ ଭଲହୋଇଯାଏ ।

ଆଜିକାଲି ସହରର ବାଳିକାମାନେ ଯୌବନରେ ପଦାର୍ପଣ କରିବା ବୟସରେ ଚପା ଜାମା ଶରୀରର ସୌନ୍ଦର୍ଯ୍ୟ ରକ୍ଷିବା ପାଇଁ ବା ଅନ୍ୟ କୌଣସି କାରଣରୁ ପିନ୍ଧନ୍ତି । ଯୌବନରେ ପଦାର୍ପଣ କଲାବେଳେ ଶରୀରର ଆକାର ବୃଦ୍ଧି ହେଉଥାଏ । ଏହି ବୟସରେ ଚପାଜାମା ପିନ୍ଧିବା ଦ୍ୱାରା ଶରୀର ଭିତରର ଯାନ୍ତ୍ରିକ କ୍ରିୟାରେ ଅନେକ ଅସୁବିଧା ସୃଷ୍ଟି ହୁଏ । ଏପରି କି ଏହି କାରଣରୁ ହୃତ୍‌କମ୍ପନ ଆରମ୍ଭ ହେଉଥିବା ଜଣାଯାଇଛି । ସେହେତୁ ଶରୀରର ଆବରଣ ଚପା ନ ରହି ସାମାନ୍ୟ ଢିଲା ରହିବା ଆବଶ୍ୟକ ।

ଯୌନବିତ୍ ବେନେକ (Beneke) କହିଛନ୍ତି ଯେ ପ୍ରଥମ ରଜଃସ୍ରାବ ପୂର୍ବରୁ ହୃତ୍‌ପିଣ୍ଡ ବିଶେଷ ବୃଦ୍ଧି ହୁଏ ନାହିଁ । ଏହା ପରେ ହୃତ୍‌ପିଣ୍ଡର ଆକାର ଶୀଘ୍ର ବୃଦ୍ଧି ପାଏ । ଯୌବନର ଆରମ୍ଭରେ ରକ୍ତଚାପ ଖୁବ୍ ଜୋରରେ ରହେ ଏବଂ ଏହା ବାଲ୍ୟାବସ୍ଥା କିମ୍ବା ପରଜୀବନ ଅପେକ୍ଷା

ଅଧିକ । କିନ୍ତୁ ଯୌବନାବସ୍ଥାରେ ବାଳକମାନଙ୍କ ଅପେକ୍ଷା ବାଳିକା-ମାନଙ୍କର ହୃତ୍‌ପିଣ୍ଡ ଆକାରରେ ବଡ଼ ହୁଏ । ସେହିପରି ମୂଳ ଧମନୀଗୁଡ଼ିକ ନାରୀମାନଙ୍କ ଅପେକ୍ଷା ପୁରୁଷମାନଙ୍କର ବଡ ହେବ । ପ୍ରତ୍ୟେକ ଧମନୀ (Artery) ଏକାପରି ବୃଦ୍ଧି ହୁଅନ୍ତି ନାହିଁ ।

ଯୌବନରେ ପଦାର୍ପଣ କରିବା ପରେ ପ୍ରତ୍ୟେକ ବାଳକ ଓ ବାଳିକାର ଭାବନା, ଆଶା ଓ ଭୟ ତାହାର ମାନସିକ ଚିନ୍ତାଧାରା ଉପରେ ନିର୍ଭର କରେ । କେତେକ ବାଳିକା ସ୍ୱାସ୍ଥ୍ୟବିକ ବିକାରରୁ ପ୍ରଥମ ରଜଃସ୍ରାବ ପରେ ଭଲ ହୋଇଯିବା ଲକ୍ଷ୍ୟ କରାଯାଇଛି ।

ଯୌବନରେ ପଦାର୍ପଣ କରିବା ବେଳେ ଅନେକ କୁମାରୀଙ୍କ ହଜମଶକ୍ତି କମିଯାଏ । କାନରେ ଗୋଳମାଳ ହୁଏ । କେତେକ କୁମାରୀଙ୍କ ମାସିକ ରଜଃସ୍ରାବ ସମୟରେ କାନରୁ ରକ୍ତ ବାହାରିବା ଦେଖାଯାଇଛି । ରଜଃସ୍ରାବ ସମୟରେ ଯୌବନର ଆରମ୍ଭରେ ରମଣୀମାନଙ୍କର ନାକ ଭିତରର ଝିଲ ପରଦା ସାଧାରଣତଃ ଫୁଲି ରହେ । ଶରୀରରୁ ବହୁତ ଝାଳ ବୋହେ ଓ ଚର୍ମ ଭିତରେ ଥିବା କେତେକ ଗ୍ରନ୍ଥିରୁ ମଧ୍ୟ ଜୋରରେ ରସ ନିଃସୃତ ହୁଏ ।

ଯୌବନର ଆରମ୍ଭରେ ଶରୀର ଚର୍ମର ରଙ୍ଗ ବଦଳେ ଯାହା ଫଳରେ ଶରୀରର ଅବସ୍ଥା ବାହାରୁ ଜଣାପଡ଼େ । ମୁଣ୍ଡର ବାଳ ବଢ଼ିବା ମଧ୍ୟ ଜୋରରେ ଆରମ୍ଭ ହୁଏ । ଶରୀରର ଯେଉଁ କେତେକ ସ୍ଥାନରେ ଲୋମ ଉଠି ନ ଥାଏ ସେଠାରେ ଲୋମ ଉଠିବା ଆରମ୍ଭ କରେ ଯଥା ଚୁଙ୍ଗ, ପିଠି, ମୁହଁ, ନାକ ପ୍ରଭୃତି । ଚର୍ମ ଭିତରୁ କେତେକ ଗ୍ରନ୍ଥିରୁ ଏତେ ଜୋରରେ ରସ ନିଃସୃତ ହୁଏ ଯେ ସେଗୁଡ଼ିକ ଚର୍ମ ଭିତରେ ରହିଲେ କୁଣ୍ଡେଇ ହୁଏ ଓ ସେହି ସ୍ଥାନମାନଙ୍କରେ ଖୋଲପା ବାହାରେ । ଆଉ କେତେକ ଲୋକଙ୍କର ଏହି ନିଃସୃତ ରସ ତେଲିଆ ଆବରଣ ପରି ଲାଗି ରହେ । ଏହା ସାଧାରଣତଃ ମୁହଁରେ ହୁଏ । ଏହିପରି ବ୍ୟକ୍ତିମାନେ ନିଜ ମୁହଁକୁ ବରାବର ସଫାସୁତୁରା ନ ରଖିଲେ ଅସୁବିଧା ଭୋଗ କରିଥାନ୍ତି ଓ ବିଇଞ୍ଚି ଘା (Eczema) ସେଠାରେ ଆରମ୍ଭ ହୁଏ । କୁମାରୀମାନଙ୍କର ଭଗାଙ୍କୁର ଓ ଭଗୌଷ୍ଠ ମଧ୍ୟରେ ଚର୍ମରୁ ଏହି ନିଃସୃତ ରସ ଜମିଯାଇ ଦୁର୍ଗନ୍ଧ ଜାତ କରାଏ ଓ ଅନେକ ସମୟରେ ଯୋନି

କୁଣ୍ଡାଇ ହୋଇ ନାନା ରକମ ଅସୁବିଧା ସୃଷ୍ଟି କରେ । ଯେଉଁ କୁମାରୀ-ମାନେ ଉକ୍ତରୋଗ ଭୋଗ କରୁଥାନ୍ତି ସେମାନଙ୍କ-ଠାରେ ବାଇଥି ରୋଗ ଆରମ୍ଭ ହେବା ସ୍ୱାଭାବିକ ।

ଯୌବନରେ ପଦାର୍ପଣ କରିବା ବେଳେ କୁମାର ଓ କୁମାରୀମାନେ ଭଲ ଖାଦ୍ୟ ଖାଇବା, ସ୍ୱାସ୍ଥ୍ୟକର ପ୍ରକୋଷ୍ଠମାନେ ରହିବା ଓ ନିୟମିତ ଭାବେ ଉଚିତ ମାତ୍ରାରେ ଶାରୀରିକ ପରିଶ୍ରମ କରିବା ଆବଶ୍ୟକ ।

କେତେକ ଡାକ୍ତରଙ୍କ ମତରେ ସେମାନେ ହଜମ କରିବା ପରି ଦୈନିକ ଚାରି ବା ପାଞ୍ଚ ଥର ଖାଦ୍ୟ ଖାଇବା ଦରକାର । ଦୁର୍ବଳମାନଙ୍କ ପକ୍ଷେ ପ୍ରତ୍ୟେକ ଦୁଇ ବା ତିନି ଘଣ୍ଟାରେ ଖାଦ୍ୟ ଖାଇବା ଆବଶ୍ୟକ । ପୁଷ୍ଟିକାରୀ ଖାଦ୍ୟ ଅର୍ଥାତ୍ ମାଂସ, ଅଣ୍ଡା ଓ ଛେନା ଜାତୀୟ ଖାଦ୍ୟ, ସଜ ପନିପରିବା ଓ ଫଳମୂଳ ବିଶେଷ ପରିମାଣରେ ଖାଇବା ଉଚିତ । ଏହି ବୟସରେ ମଦ, ଗୁଣ୍ଡି ପ୍ରଭୃତି ପାନୀୟ ଉତ୍ତେଜକ ଦ୍ରବ୍ୟ ବ୍ୟବହାର କରିବା ଉଚିତ ନୁହେ । ଖାଦ୍ୟ ଖାଇବା ପୂର୍ବରୁ ଓ ପରେ ଅନ୍ତତଃ ଅଧ ଘଣ୍ଟାଏ ବିଶ୍ରାମ ନେବା ଶରୀର ପକ୍ଷେ ଉପକାରୀ ।

ରକ୍ତହୀନ, ପାତଳା ଓ ଦୁର୍ବଳ ଝିଅମାନେ ଚର୍ବିଜାତୀୟ ଖାଦ୍ୟ ଅଧିକ ପରିମାଣରେ ଖାଇବା ଉଚିତ । ଭାତ, ଚିନି, ଦୁଧ, ଘିଅ, ମିଠା, ଫଳମୂଳ, ଆଳୁ ପ୍ରଭୃତି ଖାଦ୍ୟ ସେମାନଙ୍କ ପକ୍ଷେ ଉପକାରୀ । ଧନୀ ପରିବାରର ଝିଅମାନେ ଯେଉଁମାନେ ବିଶେଷ ଶାରୀରିକ ପରିଶ୍ରମ କରନ୍ତି ନାହିଁ ସେମାନଙ୍କୁ ଭାତ, ଆଳୁ ପ୍ରଭୃତି ଶର୍କରା ଜାତୀୟ ଖାଦ୍ୟ ବିଶେଷ ଦେବା ଉଚିତ ନୁହେ ।

କୁମାର ଓ କୁମାରୀମାନେ ଏହି ବୟସରେ ବେଶି ପାଣି ପିଇବା ଉଚିତ ନୁହେ; ରକ୍ତହୀନ ଓ ପାତଳୀ ଝିଅମାନେ ଅତ୍ୟଧିକ ଶାରୀରିକ ପରିଶ୍ରମ କରିବା ଠିକ୍ ନୁହେ । ଦେହରେ ଭିଡ଼ିହୋଇ ରହିବା ଜାମା ବା ଲୁଗା ପିନ୍ଧିବା ଭଲ ନୁହେ । ଅଣ୍ଟାରୁ ଜଙ୍ଘ ପର୍ଯ୍ୟନ୍ତ ଗରମ ରଖିବା କୌଣସି କପଡ଼ା ବା ଲୁଗା ପିନ୍ଧିବ ନାହିଁ । ଏହା ଦ୍ୱାରା ଉତ୍ତେଜନା ସୃଷ୍ଟି ହୁଏ । ଏହି ବୟସରେ ଅଳସୁଆ ହୋଇ ବସି ରହିବା ଭଲ ନୁହେ । ଅନେକ ସମୟ ବସିରହି କୌଣସି କାର୍ଯ୍ୟ କରିବା ଭଲ ନୁହେ—ଯଥା, ସିଲେଇ କାମ, ବାଦ୍ୟଯନ୍ତ୍ର ବଜାଇବା ପ୍ରଭୃତି ।

ପ୍ରତିଦିନ ଥଣ୍ଡା ପାଣିରେ ଗାଧୋଇ ଦେହ ସଫା ରଖିବା ସ୍ୱାସ୍ଥ୍ୟ ପକ୍ଷେ ବିଶେଷ ଉପକାରୀ । ଯେଉଁ କୁମାରୀମାନେ ସ୍ୱଳ୍ପ ରଜ ବା ଅନିୟମିତ ରଜଃସ୍ରାବ ଭୋଗୁଥାନ୍ତି, ସେମାନଙ୍କ ପକ୍ଷେ ଥଣ୍ଡା ପାଣିରେ ଗାଧୋଇବା ବିଶେଷ ଉପକାରୀ ।

ବାଳିକା ଯୌବନରେ ପଦାର୍ପଣ କରିବା ବେଳେ ପ୍ରତିଦିନ ନାନା ରକମ ଉତ୍ତେଜକର ପ୍ରଭାବ ଯୋଗୁଁ ତାହାର କୌତୂହଳ ପ୍ରବୃତ୍ତି ଏବଂ ଆକାଙ୍‌କ୍ଷା ଯୌନ ଦିଗରେ ଗତି କରିଥାଏ । ସିନେମା, ଥିଏଟର, ଉପନ୍ୟାସ ଓ ଶୃଙ୍ଗାର ସାହିତ୍ୟ ପଢ଼ିବା, ଗୃହା ଭୋଜରେ ଭାଗ ନେବା, ବାଳକମାନଙ୍କ ସହିତ ମିଳାମିଶା ପ୍ରଭୃତି ତାହାର ଯୌନ ପ୍ରବୃତ୍ତିକୁ ଅବେଳରେ ବୃଦ୍ଧି କରିଦିଏ । ପୂର୍ବେ ଏହି ସମସ୍ତର ସୁବିଧା ନ ଥିଲା ଓ ସେଥିଯୋଗୁଁ ଯୌନ ପ୍ରବୃତ୍ତି ବୃଦ୍ଧି ପାଇବାରେ ଡେରି ହେଉଥିଲା । ଆଜିକାଲିର ପାଠପଢ଼ା ଓ ଶିକ୍ଷା ଏବଂ ଯୁବକମାନଙ୍କ ସହିତ ସମାନ ଅଧିକାର ଭାବ ତାହା ମନରେ ସଞ୍ଚାର ହୁଏ । ଏହା ଫଳରେ କିଶୋରୀର ମନରେ ଏକରକମ କୃତ୍ରିମ ଗର୍ବ ଆସେ । ଫଳରେ ସେ ଅତ୍ୟଧିକ ମାତ୍ରାରେ ଉତ୍ତେଜିତ ହୋଇଯାଏ । ଲଜ୍ଜା ଓ ଶୀଳତା ଯାହା କି କିଶୋରୀମାନଙ୍କ ଠାରେ ସ୍ୱାଭାବିକ ଦେଖାଯିବା କଥା, ତାହା ପ୍ରାୟ ରହେ ନାହିଁ କହିଲେ ଚଳେ । ପୁଣି ମା'ର ଦୃଷ୍ଟି ଓ ଶାସନର ଆଜିକାଲି ବହୁତ ଅଭାବ । କାରଣ ଘରର ଜଞ୍ଜାଳ ଓ ସାମାଜିକ କାର୍ଯ୍ୟ ମା'ର ବହୁତ ସମୟ ନେଇଥାଏ । ଏହିପରି ଅବସ୍ଥାରେ ହସ୍ତମୈଥୁନ ବା କୃତ୍ରିମ ମୈଥୁନ, ଉନ୍ମାଦ, ରଜଃରୋଗ ପ୍ରଭୃତି ଦେଖାଯିବା ସାଧାରଣ କଥା ହୋଇପଡ଼େ । ସେହେତୁ ଏହି ବୟସରେ ଉଦ୍ଦୀପକ ପରିବେଶ ଅର୍ଥାତ୍, ସିନେମା, ଥିଏଟର, ଗୃହାଭୋଜି, ଉପନ୍ୟାସ ପଢ଼ିବା ପ୍ରଭୃତି ଯାହା କି ଯୌନ ଉତ୍ତେଜନା ବୃଦ୍ଧି କରାଏ ସେ ସବୁରୁ ଦୂରେଇ ରହିବା କିଶୋରୀମାନଙ୍କ ପକ୍ଷେ ଆବଶ୍ୟକ । ଚାହା, କଫି, ମଦ୍ୟପାନ ପ୍ରଭୃତି ଏହି ବୟସରେ ନିଷିଦ୍ଧ ଖାଦ୍ୟ ରୂପେ ବିବେଚିତ ହେବା ଦରକାର ।

ଖାଦ୍ୟ ଉପରେ କୁମାରୀମାନଙ୍କର ଉତ୍ତେଜନା ବିଶେଷ ନିର୍ଭର କରେ । ଉଚିତ ଓ ନିୟମିତ ରୂପେ ଖାଦ୍ୟ ଖାଇବା ଦ୍ୱାରା ଉତ୍ତେଜନା ବିଶେଷ ଭାବେ କମିଯାଏ । ଯୌନବିତ୍ ରୁସୋ (Rousseau) କହିଛନ୍ତି ଯେ କିଶୋରୀ ବା ପ୍ରଥମ ଯୌବନ ବୟସରେ ବାଳିକାମାନଙ୍କୁ ସ୍ୱାଧୀନ

ଭାବେ କାର୍ଯ୍ୟ କରିବାକୁ ଛାଡ଼ିବା ଉଚିତ ନୁହେ । ଅଧିକ ସ୍ୱାଧୀନତା ପାଇଲେ କୁମାରୀମାନେ ନିଜର ସତୀତ୍ୱ ରକ୍ଷା କରିବାରେ ଅସୁବିଧା ସୃଷ୍ଟି ହୁଏ । ଅଧିକ ସ୍ୱାଧୀନତା କୁମାରୀମାନଙ୍କ ସତୀତ୍ୱ ରକ୍ଷା କରିବାରେ ପ୍ରତିବନ୍ଧକ ହୋଇ ଠିଆ ହୋଇ ପାରେ ।

ସରଳ ଖାଦ୍ୟ ଓ ସରଳ ଜୀବନ ଯାପନ କରିବା ସେମାନଙ୍କ ସତୀତ୍ୱ ରକ୍ଷା କରିବାରେ ବହୁତ ସାହାଯ୍ୟ କରିଥାଏ । ବୁଦ୍ଧିମତୀ ମା' ଓ ସଙ୍ଗୀର ସାହାଯ୍ୟ ଏବଂ ସହଯୋଗ ଏହି ବୟସରେ ବହୁତ ସାହାଯ୍ୟ କରେ । ଠିକ ଭାବେ ଲୁଗା ପିନ୍ଧିବା, ଶୋଇବା ଏବଂ ହାଲିଆ ହେବା ପର୍ଯ୍ୟନ୍ତ ପରିଶ୍ରମ କରିବା ଶରୀର ପକ୍ଷେ ଉପକାରୀ । ହାଲିଆ ହେବା ପର୍ଯ୍ୟନ୍ତ ଶାରୀରିକ ପରିଶ୍ରମ କରିବା ଶରୀର ପକ୍ଷେ ଉପକାରୀ କାରଣ ଏହା ଫଳରେ ଅନ୍ୟ କୌଣସି ଭାବନା ନ ଆସି ଶୀଘ୍ର ନିଦ ଆସିଯାଏ ।

ଏହି ବୟସରେ ବାଳିକାମାନଙ୍କୁ କ୍ରମେ ଯୌନ ଶିକ୍ଷା ଦିଆଯିବା ଉଚିତ । ଷ୍ଟିହଲ (Estiehl) ନାମକ ଜଣେ ମହିଳା ତାହାଙ୍କ 'ମା'ର କର୍ତ୍ତବ୍ୟ' ନାମକ ବହିରେ ଲେଖିଛନ୍ତି ଯେ ମା'ମାନେ ସେମାନଙ୍କ ଝିଅମାନଙ୍କୁ ଯୌନଶିକ୍ଷା ଦେବା ଉଚିତ । ସେମାନଙ୍କୁ ହଠାତ୍ ସେପରି କିଛି ନ କହି କ୍ରମେ କ୍ରମେ ଶିକ୍ଷା ଦେବା ଉଚିତ । ପ୍ରଥମେ ଗଛ କଥା ବତେଇ, ତାପରେ ପଶୁପକ୍ଷୀମାନଙ୍କର କୁଟୁମ୍ବ ଜୀବନ ମାଧ୍ୟମରେ ଯୌନ ଶିକ୍ଷା ଦେବା ସୁବିଧା ହୁଏ ଯାହା କି କିଶୋରୀ ସହଜରେ ବୁଝି ପାରେ ।



୮—

# ମାସିକ ରଜଃସ୍ରାବ

ପ୍ରଥମ ରଜଃସ୍ରାବ ପ୍ରାୟ ତିନି ଦିନ ଠାରୁ ଛଦିନ ପର୍ଯ୍ୟନ୍ତ ରହେ । ରଜଃସ୍ରାବ ଆରମ୍ଭ ହେବା ପୂର୍ବରୁ କେତେକ ସୂଚନା ବାଳିକାମାନେ ସାଧାରଣତଃ ଅନୁଭବ କରିଥାନ୍ତି । ଅସ୍ୱସ୍ତିବୋଧ, ତଳିପେଟରେ ବ୍ୟଥା, କିମ୍ବା ସ୍ତନ ଟାଣି ହେବା ପରି ବ୍ୟଥା ଲାଗିବା ସାଧାରଣତଃ ହୁଏ । ଏହାପରେ ରଜଃସ୍ରାବ ଆରମ୍ଭ ହୁଏ । ପ୍ରଥମେ ସ୍ରାବ କମ୍ ହୁଏ । ଏହା ମାଟିଆ ରଙ୍ଗର ଓ ବିଶେଷ ଭାବେ ଲାଲ ମିଶ୍ରିତ । ଦ୍ୱିତୀୟ ବା ତୃତୀୟ ଦିନରେ ସ୍ରାବରେ ରକ୍ତ ଆସେ । ରଜଃସ୍ରାବ ରକ୍ତ ଘା'ରୁ ବୋହିବା ରକ୍ତ ଠାରୁ ପୃଥକ୍ । ଏହା ପାତଳା ଏବଂ ଶୀଘ୍ର ଜମାଟ ବାନ୍ଧେ ନାହିଁ । ଏହି ରକ୍ତର ଗନ୍ଧ ଭିନ୍ନ ରକମର । ଚତୁର୍ଥ ଦିନ ରକ୍ତର ମାତ୍ରା ବହୁତ କମି-ଯାଏ ଏବଂ ସ୍ରାବର ରଙ୍ଗ ହଳଦିଆମିଶ୍ରିତ ଲାଲ ପରି ଦିଶେ । ପଞ୍ଚମ ଦିନରେ କେତେକ ଟୋପା ମାତ୍ର ସ୍ରାବରେ ଆସିପାରେ କିମ୍ବା ସ୍ରାବ ପୂରାପୂରି ବନ୍ଦ ହୋଇଯାଏ ।

ସାଧାରଣତଃ ସ୍ୱାସ୍ଥ୍ୟବତୀ ଯୁବତୀମାନଙ୍କର ଚାରି ସପ୍ତାହରେ ଥରେ ମାସିକ ରଜଃସ୍ରାବ ହେବା ଉଚିତ । କିନ୍ତୁ ବହୁକ୍ଷେତ୍ରରେ ଏହାର ବ୍ୟତିକ୍ରମ ଦେଖାଯାଇଛି । କେତେକ ଯୁବତୀଙ୍କର ଛବିଶ ଦିନ ଅନ୍ତରରେ ରଜଃସ୍ରାବ ଆରମ୍ଭ ହେବା ବେଳେ ଆଉ କେତେକ ଯୁବତୀଙ୍କର ତେତିଶ ଦିନ ଅନ୍ତରରେ ହୋଇଥାଏ । ପ୍ରାୟ ଶତକଡ଼ା ସତୁରି ଜଣ ନାରୀଙ୍କର ଅଠେଇଶ ଦିନ ବ୍ୟବଧାନରେ ମାସିକ ରଜଃସ୍ରାବ ହୁଏ । ଏହା ପରେ ତିରିଶ ଦିନ ବ୍ୟବଧାନରେ ଅଧିକାଂଶ ନାରୀଙ୍କର ମାସିକ ସ୍ରାବ ହୁଏ ଏବଂ କମ୍ ସଂଖ୍ୟକ ନାରୀମାନଙ୍କର ଏକୋଇଶ ଦିନ ବ୍ୟବଧାନରେ ହୁଏ ।

ସାଧାରଣତଃ ମାସରେ ଥରେ ରଜଃସ୍ରାବ ହେବା ଯୋଗୁଁ ଏହାକୁ 'ମାସିକ ଋତୁ' ବା 'ମାସିକ' କହନ୍ତି । ଏହି ଅବସ୍ଥାରେ ନାରୀମାନଙ୍କୁ 'ଋତୁମତୀ ନାରୀ' ବା 'ରଜସ୍ୱଳା ନାରୀ' ବୋଲି କହନ୍ତି ।

ଅନେକ ନାରୀ ସେମାନଙ୍କ ରଜଃସ୍ରାବର ଦିନ ବା ତାରିଖ ମନେ ରଖନ୍ତି ନାହିଁ । ସେହେତୁ ସେମାନଙ୍କର ରଜଃସ୍ରାବ ନିୟମିତ ଭାବେ

ହେଉଛି କି ନାହିଁ ତାହା ଜାଣିବା କଷ୍ଟକର । ସେହେତୁ ସେମାନଙ୍କର ଯଦି ଗର୍ଭସଞ୍ଚାର ହୁଏ ତାହା ହେଲେ ଗର୍ଭସଞ୍ଚାରର ସଠିକ୍ ଦିବସ ନିରୂପଣ କରିବା କଷ୍ଟସାଧ୍ୟ ।

ସାଧାରଣତଃ ନାରୀମାନଙ୍କର ରଜଃସ୍ରାବ ଚାରି ଦିନ ଠାରୁ ଛ'ଦିନ ପର୍ଯ୍ୟନ୍ତ ରହିବା ଦେଖାଯାଇଛି । ଅଧିକାଂଶ ନାରୀମାନଙ୍କର ଚାରି ବା ପାଞ୍ଚ ଦିନ ପର୍ଯ୍ୟନ୍ତ ରହେ । କେତେକ କ୍ଷେତ୍ରରେ କେବଳ ଦୁଇ ଦିନ ରଜଃସ୍ରାବ ହୁଏ । ଆଉ କେତେକଙ୍କର ସ୍ୱାସ୍ଥ୍ୟରେ କୌଣସି ହାନି ନ ହୋଇ ଆଠ ଦିନ ଠାରୁ ଦଶ ଦିନ ପର୍ଯ୍ୟନ୍ତ ରଜଃସ୍ରାବ ହେଉଥିବାର ମଧ୍ୟ ଦେଖାଯାଇଛି । ଏହି ରଜଃସ୍ରାବ ପ୍ରତ୍ୟେକଙ୍କର ଶରୀର ଗଠନ ଉପରେ ନିର୍ଭର କରେ । ଦୁଇ ଦିନ୍ ଠାରୁ କମ୍ବା ତିନି ଦିନ ଠାରୁ ଆଠ ଦିନ ପର୍ଯ୍ୟନ୍ତ ରଜଃସ୍ରାବ ହେଲେ ଏହା ଅସ୍ୱାଭାବିକ ବା ଅନିୟମିତ ବୋଲି ଭାବିବା ଉଚିତ । ଆଠ ଦିନ ପରେ ମଧ୍ୟ ରଜଃସ୍ରାବ ହେଉଥିଲେ ଏହା ଅସାଧାରଣ ବୋଲି ଭାବିବା ଉଚିତ ।

ସ୍ୱାସ୍ଥ୍ୟବତୀ ଯୁବତୀମାନଙ୍କର ମାସିକ ରଜଃସ୍ରାବ ସମୟରେ ତିନି ଠାରୁ ଆଠ ଆଉନ୍ସ ପର୍ଯ୍ୟନ୍ତ ସ୍ରାବ ହୁଏ । କିନ୍ତୁ ଗ୍ରୀଷ୍ମ ଜଳବାୟୁର ଯୁବତୀମାନଙ୍କ ହାରାହାରି କୋଡ଼ିଏ ଆଉନ୍ସ ପର୍ଯ୍ୟନ୍ତ ସ୍ରାବ ହୋଇଥାଏ । ନାରୀର ଶାରୀରିକ ଗଠନ, ଜୀବନନିର୍ବାହ ପ୍ରଣାଳୀ ଓ ପ୍ରକୃତି ଉପରେ ରଜଃସ୍ରାବର ପରିମାଣ ନିର୍ଭର କରେ ।

ଗୋରୀବର୍ଣ୍ଣ, ପାତଳା ଚର୍ମ, କୋମଳ ଲୋମ ଥିବା ନାରୀମାନଙ୍କ ସ୍ରାବର ପରିମାଣ କୃଷ୍ଣ ବର୍ଣ୍ଣ, ଘନ କେଶ ଓ ବହଳା ଚର୍ମ ଥିବା ନାରୀମାନଙ୍କ ଅପେକ୍ଷା କମ୍ ହୁଏ । ଗ୍ରୀଷ୍ମ ଜଳବାୟୁର ନାରୀମାନଙ୍କର ଶୀତ ଜଳବାୟୁର ନାରୀମାନଙ୍କ ଅପେକ୍ଷା ଅଧିକ ପରିମାଣରେ ରଜଃସ୍ରାବ ହୁଏ । ସହରରେ ବାସ କରୁଥିବା ନାରୀମାନଙ୍କର ମଫସଲରେ ବାସ କରୁଥିବା ନାରୀମାନଙ୍କ ଅପେକ୍ଷା ଅଧିକ ପରିମାଣରେ ସ୍ରାବ ହୁଏ । ଶାରୀରିକ ପରିଶ୍ରମ କରୁଥିବା ନାରୀମାନଙ୍କର ସହଜ ଓ ସରଳ ଜୀବନ-ଯାତ୍ରା କରୁଥିବା ନାରୀମାନଙ୍କ ଅପେକ୍ଷା ଅଧିକ ସ୍ରାବ ହୁଏ ।

ସବଳ ଓ ସ୍ୱାସ୍ଥ୍ୟବତୀ, ପରିଶ୍ରମୀ, ମଫସଲି ଏବଂ ନିୟମିତ ରୂପେ କାର୍ଯ୍ୟ କରୁଥିବା ଗରିବ ପରିବାରର ନାରୀମାନଙ୍କ ଅପେକ୍ଷା ଦୁର୍ବଳ,

ଶକ୍ତିହୀନ, ଶାରୀରିକ ପରିଶ୍ରମ ନ କରୁଥିବା ବା ସହଜ ଜୀବନ ଯାପନ କରୁଥିବା, ଉତ୍ତେଜକ ଖାଦ୍ୟ ଖାଉଥିବା, ଆଳସ୍ୟପରିପୂର୍ଣ୍ଣ ଜୀବନ ଯାପନ କରୁଥିବା ନାରୀମାନଙ୍କର ଅଧିକ ପରିମାଣରେ ରଜଃସ୍ରାବ ହୁଏ । ଏହି-ପରି ନାରୀମାନଙ୍କ ପ୍ରଥମେ ଅଧିକ ପରିମାଣରେ ରଜଃସ୍ରାବ ହେଲେ ମଧ୍ୟ ପରିମାଣର ମାତ୍ରା ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ଶୀଘ୍ର କମି ଆସେ । ଶୀତ ଅଞ୍ଚଳରେ ବାସ କରୁଥିବା ନାରୀମାନଙ୍କର କମ୍ ପରିମାଣରେ ରଜଃ-ସ୍ରାବ ହୁଏ । ଏପରି କି ବରଫାବୃତ ଉତ୍ତର ଅଞ୍ଚଳରେ ସମାଯୁଦ ବା ଏସ୍କିମୋ ନାରୀମାନଙ୍କର କେବଳ ଗ୍ରୀଷ୍ମମାସମାନଙ୍କରେ ମାସିକ ରଜଃସ୍ରାବ ହୋଇଥାଏ ।

ସାଧାରଣତଃ ସ୍ୱାସ୍ଥ୍ୟବତୀ ଯୁବତୀମାନଙ୍କର ତିରିଶ ଠାରୁ ଅଶୀ ଆଉନ୍ସ ପର୍ଯ୍ୟନ୍ତ ଗୋଟିଏ ସ୍ରାବକାଳରେ ରକ୍ତପ୍ରବାହ ହୁଏ ବୋଲି ଡାକ୍ତରମାନେ ଅନୁମାନ କରନ୍ତି । ସ୍ୱାସ୍ଥ୍ୟହୀନା ଦୁର୍ବଳ ନାରୀମାନଙ୍କ ଅପେକ୍ଷା ସ୍ୱାସ୍ଥ୍ୟବତୀ ନାରୀମାନଙ୍କର ରଜଃସ୍ରାବ କମ୍ ପରିମାଣରେ ହୋଇଥାଏ । ସହରରେ ସୁଖସ୍ୱାଚ୍ଛନ୍ଦ୍ୟରେ ରହୁଥିବା ନାରୀମାନଙ୍କର ମଫସଲର ନାରୀମାନଙ୍କ ଅପେକ୍ଷା ଅଧିକ ରଜଃସ୍ରାବ ହୁଏ ।

ରଜଃସ୍ରାବ ସମୟରେ ନାରୀମାନେ ଜରାୟୁ ଓ ଅଣ୍ଡାଶୟରେ ସାମାନ୍ୟ ବ୍ୟଥା ଅନୁଭବ କରିଥାନ୍ତି । ଋତୁକାଳରେ ସେମାନଙ୍କ ଦେହ ଭାରି ଭାରି ଲାଗେ । ସମସ୍ତ ଶରୀର ଗରମ ବୋଧହୁଏ । ସ୍ତନ ଟକ ଟକ ହୁଏ ଓ ଦେହ ସାରା ଏକରକମର ଝୋଲାବନ୍ଧା କରେ । ବୈଦ୍ୟ-ଶାସ୍ତ୍ର ମତରେ ଋତୁମତୀ ନାରୀର ଲକ୍ଷଣ ହେଉଛି, ମୁହଁ ସାମାନ୍ୟ ଫୁଲିବା, ପାଟିରେ ବେଶି ଲାଳ ବାହାରିବା, ବାହୁ, ସ୍ତନ, ନିତମ୍ବ, ନାଭି, ଉରୁ, ଜଙ୍ଘ ଓ କଟିଦେଶ ଥରିବା । ଏହି ସମୟରେ ଯୋନିରେ କଣ୍ଡୁ ବୃଦ୍ଧି ପାଇବା ଯୋଗୁଁ ସେ ପ୍ରିୟଭାଷିଣୀ, ହର୍ଷମୁଖୀ ଓ ପୁରୁଷ ସଙ୍ଗ ଇଚ୍ଛା କରେ ।

ରଜଃସ୍ରାବ ସମୟର ରକ୍ତ ସାଧାରଣ ରକ୍ତ ଅପେକ୍ଷା ଅଧିକ ଗାଢ଼ ବା କାଳିଆ ଲାଲବର୍ଣ୍ଣ । ଏହା ଶରୀରର ରକ୍ତଠାରୁ ଭିନ୍ନ । ଇତିହାସରେ ଲେଖା ଅଛି ଯେ ପର୍ସିଆ ଦେଶର ରାଜମାତା ବିଭିନ୍ନ ରକମର ଷାଠିଏ ରକମ ରକ୍ତ ରଖିଥିଲେ ଓ ସେଥିମଧ୍ୟରୁ 'ରବା'

(ବୈଦ୍ୟ) ରଜଃସ୍ରାବ ରକ୍ତକୁ ଚିହ୍ନଟ କରି ପାରିଥିଲେ । କେତେକ ଯୁବତୀଙ୍କର ପ୍ରଥମ ଦିନ ରଜଃସ୍ରାବ ସାମାନ୍ୟ ଲାଲ ହୋଇ ଦ୍ୱିତୀୟ ଦିନ ଗାଢ଼ ଲାଲରଙ୍ଗ ହୁଏ ଏବଂ ଶେଷ ଦିନ କଳରା ହୋଇଥାଏ । ଶରୀରର କୌଣସି ଅଂଶରେ କ୍ଷତ ହୋଇ ରକ୍ତ ବାହାରିବା ମାତ୍ରେ ସାଧାରଣତଃ ଜମାଟ ବାନ୍ଧିଥାଏ । ରଜଃସ୍ରାବର ଦିନେ ବା ଦୁଇ ଦିନ ପୂର୍ବରୁ ଗର୍ଭାଶୟ (Uterus) ଓ ଯୋନିନାଳୀରୁ ଏକ ରକମ ତରଳ ପଦାର୍ଥ ବାହାରେ । ଏହା ପରେ ଯେଉଁ ରଜଃସ୍ରାବ ହୁଏ ତାହା ଏହି ତରଳ ପଦାର୍ଥରେ ମିଶିବା ଯୋଗୁଁ ଆଉ ଜମାଟ ବାନ୍ଧି ପାରେ ନାହିଁ । ଯେହେତୁ ଏହି ସମୟରେ ରଜଃସ୍ରାବ ବେଳେ ଯୋନିନାଳୀରେ ବନ୍ଦ ହୋଇ ବାଧା ଦିଏ ନାହିଁ । ଏହି କାରଣରୁ ରଜଃସ୍ରାବ ସମୟର ରକ୍ତ କେତେକ ପରିମାଣରେ ଦୁର୍ଗନ୍ଧ ହୁଏ ।

ରଜଃସ୍ରାବ ସମୟରେ ନାରୀର ଜନନେନ୍ଦ୍ରିୟ ବା ଉତ୍ପାଦନ ଅଙ୍ଗରେ କେତେକ ପରିବର୍ତ୍ତନ ହୁଏ । ଡିମ୍ବକୋଷରୁ ନିୟମିତ ଭାବେ ଏକ ମାସ ବ୍ୟବଧାନରେ ଗୋଟିଏ ଡିମ୍ବାଣୁ ବର୍ଦ୍ଧିତ ହୋଇ ଗର୍ଭାଶୟରେ ପହଞ୍ଚେ । ଡିମ୍ବାଣୁ ପହଞ୍ଚିବାବେଳେ ଗର୍ଭାଶୟ ଓ ସେଥିଭିତରେ ଥିବା କେତେକ ତନ୍ତୁରୁ (Tissue) ରସ ନିଃସୃତ ହୁଏ । ତନ୍ତୁଗୁଡ଼ିକରୁ ନିଃସୃତ ରସ ଡିମ୍ବାଣୁର ଗ୍ରହଣପଟେ ରହିଯାଏ । ଗର୍ଭାଶୟରୁ ଯାହା ବାହାରେ ତାହା ରଜଃସ୍ରାବ ରୂପେ ପଦାକୁ ବାହାରି ଆସେ । ଡିମ୍ବକୋଷରୁ ଡିମ୍ବାଣୁଟି ସାଧାରଣତଃ ଦୁଇଟି ମାସିକ ରଜଃସ୍ରାବର ମଧ୍ୟ ସମୟରେ ଗର୍ଭାଶୟରେ ପହଞ୍ଚିବା ଅନୁମାନ କରନ୍ତି । ଡିମ୍ବାଣୁଟି ଗର୍ଭାଶୟ ନାଳୀ ( Fallopian tube) ଦେଇ ଗର୍ଭାଶୟରେ ପହଞ୍ଚେ । ସେତିକବେଳେ ଡିମ୍ବକୋଷରୁ ମଧ୍ୟ କିଛି ତରଳ ପଦାର୍ଥ ବାହାରି ଗର୍ଭାଶୟରେ ପହଞ୍ଚେ । ଏହି ତରଳ ପଦାର୍ଥ ଗର୍ଭାଶୟରେ ପହଞ୍ଚିବା ଫଳରେ ସେଠାରେ କେତେକ ପରିବର୍ତ୍ତନ ହୁଏ । ଗର୍ଭାଶୟ ବାଡ଼ର ଭିତର ପଟ ଝିଲ୍ଲି ପରି ନରମ ହୋଇ ଫୁଲି ଉଠନ୍ତି । ଏହା ଫଳରେ ଗର୍ଭସଞ୍ଚାର ହେଲେ ଭ୍ରୂଣର ସୁବିଧା ହୁଏ । ଯଦି ଗର୍ଭସଞ୍ଚାର ନ ହୁଏ ତାହା ହେଲେ ଡିମ୍ବକୋଷର କାର୍ଯ୍ୟ ବଦଳି ଯାଏ । ସେଥିରୁ ଆଉ ରସ ନିଃସୃତ ହୁଏ ନାହିଁ । ଫଳରେ ଗର୍ଭାଶୟର ଝିଲ୍ଲିପରି ମୋଟା ଓ ନରମ ତନ୍ତୁ ଭାଙ୍ଗିପଡ଼ି କେତେକ ପରିମାଣର ରକ୍ତ

ସହିତ ପଦାକୁ ବାହାର ଆସେ । ଏହି ଯେଉଁ ରକ୍ତ ଇତ୍ୟାଦି ପଦାକୁ ବାହାର ଆସେ ତାହାକୁ-ରଜଃସ୍ରାବ କୁହାଯାଏ ।

ଗର୍ଭସଞ୍ଚାର ହେଲେ ଡିମ୍ବକୋଷର ଗତି ବଦଳେ । ଗର୍ଭାଶୟରୁ ପରିପକ୍ୱ ଡିମ୍ବାଣୁ (ପରିପକ୍ୱ ଡିମ୍ବାଣୁ ଦଶମାସରେ ଯାହା ଛୁଆର ଆକାର ଧାରଣ କରେ) ପଦାକୁ ବାହାର ନ ଆସିଲା ପର୍ଯ୍ୟନ୍ତ ଡିମ୍ବକୋଷରୁ ବର୍ଦ୍ଧିତ ଡିମ୍ବାଣୁ ବାହାରେ ନାହିଁ କିମ୍ବା ତା ସାଥିରେ ନିଃସୃତ ହେଉଥିବା ରସ ନିଃସୃତ ହୁଏ ନାହିଁ । ଗର୍ଭସଞ୍ଚାର ହେଲେ ଡିମ୍ବାଣୁଟି ଗର୍ଭାଶୟର ଗୋଟିଏ କଡ଼କୁ ଲାଗିରହେ । ରକ୍ତପ୍ରବାହ ଗ୍ରନ୍ଥିଆଡ଼େ ବିସ୍ତାର କରେଯିବା ଫଳରେ ରଜଃସ୍ରାବ ଆଉ ହୁଏ ନାହିଁ । ଏହି କାରଣରୁ ଗର୍ଭାବସ୍ଥାର ଶେଷ ପର୍ଯ୍ୟନ୍ତ ରଜଃସ୍ରାବ ହୁଏ ନାହିଁ ।

ଗର୍ଭସଞ୍ଚାର ହେଲେ ନାରୀର ସାଧାରଣ ସ୍ୱାସ୍ଥ୍ୟରେ ବିଶେଷ ପରିବର୍ତ୍ତନ ଘଟେ । ଆଳସ୍ୟ, କ୍ଳାନ୍ତି, ହୃତ୍କମ୍ପନ, ଅରୁଚି, ବାନ୍ତି, ଦୁର୍ବଳତା, ଅସ୍ଥିରତା ପ୍ରଭୃତି ସାଧାରଣ ଲକ୍ଷଣମାନ ଦେଖାଯାଏ । ଏହି ସମୟରେ କେତେକ ନାରୀ ଖାଦ୍ୟ ପଦାର୍ଥ ଖାଇବା ପାଇଁ ମୋଟେ ଭଲ ପାଆନ୍ତି ନାହିଁ । କେତେକ ନାରୀ କଟିଦେଶରେ ବ୍ୟଥା, ମାଡ଼ା ଓ ଭାରୀ ଅନୁଭବ କରିଥାନ୍ତି । କେତେକ ନାରୀଙ୍କର କୋଷ୍ଠକାଠିନ୍ୟ, ସ୍ତନବୃଦ୍ଧି ଓ ପୀଡ଼ା, ସ୍ତନମୁଣ୍ଡି ସ୍ପଷ୍ଟ ହୋଇ ଉଠିବା (Sensative) ହେବା ଦେଖାଯାଏ । ପୁଣି କେତେକ ନାରୀଙ୍କର ମୁଣ୍ଡବ୍ୟଥା ଓ ଶଙ୍କ-ଶଙ୍କିଆ ପ୍ରଭୃତି ବୃଦ୍ଧି ପାଏ । ପ୍ରାୟ ପ୍ରତ୍ୟେକ ନାରୀର ଗର୍ଭସଞ୍ଚାର ଠାରୁ ପ୍ରସବ ପର୍ଯ୍ୟନ୍ତ ଏହିପରି କିଛି ନା କିଛି ଅସୁବିଧା ରହେ । ଏହାକୁ ସାଧାରଣ ନିୟମ ଓ ଅବସ୍ଥା-ଗତ-ପ୍ରବୃତ୍ତି ବୋଲି ଧରିନେବା ଉଚିତ । ଗର୍ଭିଣୀ ନାରୀଙ୍କ ପକ୍ଷେ ଏଥିରୁ ବ୍ୟତିକ୍ରମ ଦେଖିବା କ୍ୱଚିତ୍ ମିଳେ । କିନ୍ତୁ ଏଥିରୁ କୌଣସିଟି ବୃଦ୍ଧି ପାଇଲେ ଡାକ୍ତରଙ୍କ ପରାମର୍ଶ କରିବା ଉଚିତ । ସେହିପରି ନାରୀମାନଙ୍କର ନିୟମିତ ରଜଃସ୍ରାବ ନ ହେଲେ କିମ୍ବା ଗର୍ଭସଞ୍ଚାର ନ ହୋଇ ରଜଃସ୍ରାବ ବନ୍ଦ ହୋଇଗଲେ ଡାକ୍ତରଙ୍କ ପରାମର୍ଶ ନେବା ଶ୍ରେୟସ୍କର ।

ମାସିକ ରଜଃସ୍ରାବ ସମୟରେ କେତେକ ନାରୀ ବିଷଣ୍ଣ ରହନ୍ତି ଓ ଦୁର୍ବଳତା ଅନୁଭବ କରନ୍ତି । କେତେକ ନାରୀଙ୍କର ଏହି ସମୟରେ ମାନସିକ ଉତ୍ତେଜନା ରହିବାରୁ ଭାବନାର ସଂଯମ ରହେ ନାହିଁ କିମ୍ବା

ନିଜେ ନିଜର ଆୟତ୍ତରେ ରହି ପାରନ୍ତି ନାହିଁ । ଗବେଷଣାରୁ ଜଣାଯାଇଛି ଯେ ପ୍ରତ୍ୟେକ ଶହେଜଣ ଜଣ ଆତ୍ମହତ୍ୟା କରିଥିବା ନାରୀମାନଙ୍କ ମଧ୍ୟରୁ ପଇଁତିରିଶ ଜଣ ଏହି ମାସିକ ରଜଃସ୍ରାବ ସମୟରେ ଏହିପରି କାଣ୍ଡ କରିଥାନ୍ତି ।

ସାଧାରଣତଃ ସ୍ୱାସ୍ଥ୍ୟବତୀ ନାରୀମାନଙ୍କର ଗର୍ଭସମୟକୁ ଛାଡ଼ିଦେଲେ ଅନ୍ୟ ସମୟରେ ଯୌନ ଜୀବନର ଅବସାନ ପର୍ଯ୍ୟନ୍ତ ନିୟମିତ ଭାବେ ରଜଃସ୍ରାବ ହୋଇଥାଏ । କେତେକ ସ୍ଥାନରେ ତୀକ୍ଷଣ ମାନସିକ ଯନ୍ତ୍ରଣା ବା ଭୟ ଯୋଗୁଁ ରଜଃସ୍ରାବ ହୁଏ ନାହିଁ । ଏହା ଭ୍ରମଗର୍ଭ (False pregnancy) ର ଆକାର ନିଏ । ନାରୀ ନିଜର ଭ୍ରମ ବୁଝି ପାରିଲେ ପୁଣି ନିୟମିତ ଭାବେ ରଜଃସ୍ରାବ ଆରମ୍ଭ ହୁଏ । ଅନେକ ସମୟରେ ଉପଯୁକ୍ତ ଖାଦ୍ୟର ଅଭାବ ଯୋଗୁଁ ରଜଃସ୍ରାବ ଦୀର୍ଘଦିନ ପର୍ଯ୍ୟନ୍ତ ବନ୍ଦ ହୋଇଯିବାର ମଧ୍ୟ ଲକ୍ଷ୍ୟ କରାଯାଇଛି । ଗତ ବିଶ୍ୱଯୁଦ୍ଧ ପରେ ୟୁରୋପ ମହାଦେଶରେ ଏହା ବହୁଳ ଭାବେ ଲକ୍ଷ୍ୟ କରାଯାଇଥିଲା । ଉପଯୁକ୍ତ ଖାଦ୍ୟ ଅର୍ଥାତ୍ ଜୀବସାର (Protein), ଚର୍ବି ଓ ଅନ୍ୟାନ୍ୟ ଜିନିଷ ଖାଇବା ପରେ ନିୟମିତ ଭାବେ ରଜଃସ୍ରାବ ଆରମ୍ଭ ହୋଇଥିଲା ।

ରଜଃସ୍ରାବ ସମୟରେ ନାରୀ ନିଜର ସ୍ୱାସ୍ଥ୍ୟ ପ୍ରତି ବିଶେଷ ଜାଗ୍ରତ ରହିବା ନିତାନ୍ତ ଦରକାର । କାରଣ ଏହା ନାରୀର ମାନସିକ ଓ ଶାରୀରିକ ସ୍ୱାସ୍ଥ୍ୟ ଉପରେ ବିଶେଷ ପ୍ରଭାବ ପକାଇଥାଏ । ଏହି ସମୟରେ ନାରୀମାନେ ଶାରୀରିକ ବା ମାନସିକ ପରିଶ୍ରମ କରିବା ଉଚିତ ନୁହେଁ । ସେହେତୁ ସମସ୍ତଙ୍କର ସୁବିଧା କରିବା ନିମନ୍ତେ ରଜଃସ୍ରାବ ଆରମ୍ଭରୁ ହିନ୍ଦୁ ନାରୀମାନେ ତିନିଦିନ ଅଛୁଆଁ ରହନ୍ତି । ସେହି ସମୟରେ ସେମାନଙ୍କ ଖାଦ୍ୟ ଉପରେ ପ୍ରଥା ଅନୁଯାୟୀ କେତେକ କଟକଣା ରହେ । ତିନିଦିନ ପରେ ସେମାନେ ନିୟମିତ ରୂପେ ଗାଧୋଇ ଘରର ଅନ୍ୟାନ୍ୟ ଲୋକଙ୍କ ସହିତ ମିଳାମିଶା କରିଥାନ୍ତି । ରଜଃସ୍ରାବ ସମୟରେ ସାଧାରଣତଃ ତଳପେଟ ଓ ଗୁହ୍ୟରେ ଥଣ୍ଡା ପବନ ବାଜିବା ସ୍ୱାସ୍ଥ୍ୟପକ୍ଷେ କ୍ଷତିକାରକ । ଅଧିକ ଶ୍ୱେତସାର ଖାଦ୍ୟ (Starch) ଅର୍ଥାତ୍ ଚାଉଳ, ଆଳୁ ପ୍ରଭୃତି ଖାଦ୍ୟ ବା ବହୁତ ମସଲା ଦିଆଯାଇଥିବା ଖାଦ୍ୟ, କମ୍ଳା ଗୁହା, କଫି ବା ଉତ୍ତେଜକ ଖାଦ୍ୟ ବା ମଦ ପ୍ରଭୃତି ଉତ୍ତେଜକ ପାନୀୟ

ବ୍ୟବହାର କରିବା ନିଷେଧ । ଏହି ସମୟରେ ନିଜକୁ ପରିଷ୍କାର ରଖିବା ଉଚିତ । ତୁଳାରେ ଅଳ୍ପ ଉଷୁମ ପାଣି ଦେଇ ଉପସ୍ଥ ଓ ଯୋନିନାଳୀ ପରିଷ୍କାର ରଖିଲେ ଉପକାର ହୁଏ । ଏହିପରି ପ୍ରତିଦିନ ଦୁଇ ବା ତିନି ଥର ସଫା କରିବା ଦରକାର । ସଫା କରିବା ନିମନ୍ତେ ଥଣ୍ଡା ପାଣି ବ୍ୟବହାର କରିବା ଅନୁଚିତ । କାରଣ ଏହା ଦ୍ୱାରା ଥଣ୍ଡା ବା ସର୍ଦ୍ଦି ଆକ୍ରମଣ କରିପାରେ ।

ନାରୀମାନଙ୍କର ଋତୁ ସମ୍ବନ୍ଧୀୟ ରୋଗମାନଙ୍କରେ ଅତିରଜଃ, ସ୍ୱଳ୍ପରଜଃ ଓ କଷ୍ଟରଜଃ ସାଧାରଣତଃ ଦେଖା ଦେଇଥାଏ । ସ୍ୱାସ୍ଥ୍ୟହାନି ବା ରକ୍ତହୀନତା ଯୋଗୁଁ ସ୍ୱଳ୍ପରଜଃ ଦେଖାଦିଏ । ମାନସିକ ଦୁଶ୍ଚିନ୍ତା ଯୋଗୁଁ ମଧ୍ୟ ଏହା ଦେଖା ଦେଇଥାଏ । ପୁଷ୍ଟିକର ଖାଦ୍ୟ ଖାଇ ସ୍ୱାସ୍ଥ୍ୟର ଉନ୍ନତି କଲେ ଏହା ଭଲ ହୋଇଯାଏ । ଅତି ରଜଃସ୍ରାବରେ ବିଶ୍ରାମ ନିତାନ୍ତ ପ୍ରୟୋଜନ । ସମସ୍ତ ପ୍ରକାରର ମାନସିକ ଓ ଶାରୀରିକ ଉତ୍ତେଜନା ବନ୍ଦ କରିବା ଦରକାର । ମାଂସ କିମ୍ବା ଗରମମସଲା ପ୍ରଭୃତି ଖାଦ୍ୟରେ ଖାଇବା ଅନୁଚିତ । କଷ୍ଟରଜଃକୁ 'ବାଧକ' କହନ୍ତି । ମାନସିକ ଉଦ୍‌ବେଗ, ଉତ୍ତେଜନା ଓ ଅତ୍ୟଧିକ ମୈଥୁନ ଇଚ୍ଛା ଯୋଗୁଁ ଏହି ରୋଗ ଜନ୍ମିପାରେ କିମ୍ବା ଜରାୟୁ ସମ୍ମୁଖକୁ ଝୁଲିପଡ଼ିଲେ ବା ସ୍ଥାନଚ୍ୟୁତ ହେଲେ ଏହି ରୋଗ ହୋଇପାରେ । ଏଥିରେ ଋତୁ ସମୟରେ ତଳପେଟରେ ଯନ୍ତ୍ରଣା ହୁଏ ଓ ଋତୁସ୍ରାବ ଆରମ୍ଭ ହେଲେ ଯନ୍ତ୍ରଣା କମିଯାଏ । ମାନସିକ ପ୍ରଫୁଲ୍ଲତା, କୋଷ୍ଠ ପରିଷ୍କାର, ଉଚିତ ଖାଦ୍ୟ ଦ୍ୱାରା ଏ ସବୁ କମିଯାଏ । ତଥାପି ଏପରି ଅବସ୍ଥାରେ ଉପଯୁକ୍ତ ଡାକ୍ତରଙ୍କ ପରାମର୍ଶ ନେଇ କାର୍ଯ୍ୟ କରିବା ଉଚିତ ।

ମଫସଲ ଓ ସହରରେ ଆଜିକାଲି ମଧ୍ୟ ଅନେକ ନାରୀ ରଜଃସ୍ରାବ ସମୟରେ 'କନା' (ମଇଳା ଚିରା ଲୁଗାଖଣ୍ଡ) ସ୍ରାବର ରକ୍ତ ଟାଣିନେବା ପାଇଁ ଉପସ୍ଥ ଉପରେ ବ୍ୟବହାର କରିଥାନ୍ତି । ସେଗୁଡ଼ିକ କେତେକ ସମୟ ପରେ ବାହାର କରି ଥଣ୍ଡା ପାଣିରେ ଧୋଇ ଶୁଖାଇ ଦିଅନ୍ତି ଓ ଶୁଖିଗଲେ ତାକୁ ପୁଣି ବ୍ୟବହାର କରନ୍ତି । ଏହି କନାଗୁଡ଼ିକ ସଫା ଓ ପରିଷ୍କାର ରହିବା ଉଚିତ । ନଚେତ୍ ଶରୀରରେ ଏହା ଅନେକ କ୍ଷତି କରେ ।

ଆଜିକାଲି ବଜାରରେ ରଜଃସ୍ରାବ ସମୟରେ ବ୍ୟବହାର କରିବା ପାଇଁ କମ୍ ଦାମର ଏକ ପ୍ରକାରର କନା (Sanitary Towels) ମିଳେ ।

ଏହା ଭଗରନ୍ଧ୍ରକୁ ଘୋଡ଼ାଇ ରଖେ । ରଜଃସ୍ରାବ ସମୟରେ ଯେଉଁସବୁ ରକ୍ତ ବାହାରେ ତାହାକୁ ଏହି କନା ଭିତରେ ଥିବା ତୂଳା ଶୋଷିନିଏ ବା ଟାଣିନିଏ । କେତେକ ସମୟ ପରେ ଏହି କନାଟିକୁ ବାହାର କରିଦେଇ ଅନ୍ୟ କନାଟିଏ ପିନ୍ଧିବାକୁ ପଡ଼େ । ଏହିପରି ବ୍ୟବହାର ହେଉଥିବା କନାଗୁଡ଼ିକୁ ଏକାଠି କରି ପୋତି ଦିଅନ୍ତୁ ବା ପୋଡ଼ି ଦିଅନ୍ତୁ ।

ଡାକ୍ତରଖାନାର ତୂଳା କମ୍ ଦାମରେ ମିଳେ । ଏହି ତୂଳା ଲମ୍ବ ଭାବେ ପରସ୍ତ ପରସ୍ତ ହୋଇ ରହେ । ଏହାକୁ କାଟି ସଫା କନାରେ ଦେଇ ବ୍ୟବହାର କଲେ ଅନେକ ସୁବିଧା ହୁଏ । ଘା'ଉପରେ ତୂଳା ଦେଇ ଯେପରି ପଟି ଭିଡ଼ାଯାଏ ବା ବ୍ୟାଣ୍ଡେଜ କରାଯାଏ, ସେହିପରି ଭଗରନ୍ଧ୍ର ଉପରେ ଲମ୍ବା ଓ ବହଳା ତୂଳାକୁ ଦରକାର ଅନୁଯାୟୀ କାଟି ସଫା କନାରେ ତାକୁ ବ୍ୟାଣ୍ଡେଜ ପରି ଭିଡ଼ିବା ବ୍ୟବସ୍ଥା କଲେ ସୁବିଧା ହୁଏ ।

ରଜଃସ୍ରାବ ଅନେକ ସମୟରେ ଚାରି ବା ପାଞ୍ଚ ଦିନ ପର୍ଯ୍ୟନ୍ତ ରହେ । ସ୍ରାବ ସମୟରେ ଖୁବ୍ ଗରମ ବା ଖୁବ୍ ଥଣ୍ଡା ପାଣିରେ ଗାଧୋଇବା ଅନୁଚିତ । ଆରମ୍ଭରୁ କୁହାଯାଇଛି ଯେ ପ୍ରଥମ ଯୌବନରୁ ହିଁ ରଜଃସ୍ରାବ ଆରମ୍ଭ ହୁଏ । ସେହି ସମୟରୁ କିଶୋରୀର ମନ ଓ ଶରୀରରେ ବିଶେଷ ପରିବର୍ତ୍ତନ ହେବା ଆରମ୍ଭ ହୁଏ । ଏହି ସମୟରୁ ହିଁ ଯୌନଗ୍ରନ୍ଥିଗୁଡ଼ିକ ବିଶେଷଭାବେ କାର୍ଯ୍ୟ ଆରମ୍ଭ କରେ । ସ୍ତନଯୁଗଳ ବର୍ଦ୍ଧିତ ହୋଇ-ଆସେ । ସ୍ୱରର ପରିବର୍ତ୍ତନ ହୁଏ ଓ କାଖରେ ଲୋମ ଗଜୁରି ଉଠେ । ଶରୀରର ବିଭିନ୍ନ ଅଂଶର ଅନୁପାତ ଠିକ୍ ହୋଇଆସେ । କିଶୋରୀ ଅବସ୍ଥାରେ ଶରୀରଗଠନ ପୂର୍ଣ୍ଣ ହୋଇ ଆସିବା ଯୋଗୁଁ ଶରୀର ସୁନ୍ଦର ଦିଶେ ।

ପ୍ରଥମ ଯୌବନର ଆରମ୍ଭରୁ ଅର୍ଥାତ୍ ପ୍ରଥମ ରଜଃସ୍ରାବ ସମୟଠାରୁ କିମ୍ବା ତାର କିଛି ଦିନ ପୂର୍ବରୁ କିଶୋରୀମାନଙ୍କ ମନରେ ପ୍ରେମାଙ୍କୁର ଜନ୍ମିଉଠେ । ପ୍ରେମଜଡ଼ିତ ଜିନିଷ ବା ବିଷୟ କିମ୍ବା ସଳାପ ସେମାନଙ୍କ ମନକୁ ଆକୃଷ୍ଟ କରେ । ସେମାନଙ୍କ ନିକଟରେ ପ୍ରେମ ଓ ସ୍ନେହର କୌଣସି ନିର୍ଦ୍ଦିଷ୍ଟ ଲକ୍ଷ୍ୟ ନ ରହି ତାହା ଦିନ ଦିନ ବଦଳେ । ସାଧାରଣତଃ ପ୍ରତ୍ୟେକ ନାରୀ ଏହି ଅବସ୍ଥା ଦେଇ ଗତି କରିଥାନ୍ତି । କିନ୍ତୁ ସଂଯମୀ ନାରୀମାନେ ଏହି ନିୟମର ବ୍ୟତିକ୍ରମ କରିଥାନ୍ତି । ଯେପରି

ପ୍ରତ୍ୟେକ ଯୁବକର ଯୌବନରେ ପଦାର୍ପଣ କରିବା ମାତ୍ରେ-ସ୍ୱାଧୀନ ଭାବେ ଚିନ୍ତା କରିବା ଓ ପିତାମାତାଙ୍କର ଆଦେଶର ବିରୁଦ୍ଧାଚରଣ କରିବା ଦେଖାଦିଏ, ସେହିପରି ଯୁବତୀମାନଙ୍କର ସ୍ୱାଧୀନ ଚିନ୍ତା ଆଦେଶର ବିରୁଦ୍ଧାଚରଣ କରିବା ଦେଖାଦିଏ । ଏହି ସ୍ୱାଧୀନ ଚିନ୍ତା ଓ ବିରୁଦ୍ଧାଚରଣ ଭାବ ନିଜର ମା' ଓ ବଡ଼ ଭଉଣୀମାନଙ୍କ ପ୍ରତି ଈର୍ଷା ଜନ୍ମାଏ । ନିଜର ଯୌନ ଅବସ୍ଥା ପ୍ରତି ସେ ସଜାଗ ହୁଏ । ସେମାନଙ୍କ ଠାରୁ ସେ ଉଚିତ ବ୍ୟବହାର ଦାବି କରେ ।

ବିଭିନ୍ନ ଦେଶର ଆଦିବାସୀ ସମାଜରେ ଋତୁମତୀ ନାରୀଙ୍କୁ ପିଶାଚ ଲାଗେ ବୋଲି ଭାବନ୍ତି । ମାଓରିସ୍ (Maoris) ଆଦିବାସୀ ସମାଜରେ ଋତୁମତୀ ନାରୀ ରାନ୍ଧିଥିବା ଖାଦ୍ୟ ପୁରୁଷ ଖାଇବା ଦ୍ୱାରା ତାର ଦେହ ବିବର୍ଣ୍ଣ ହୁଏ ବୋଲି ବିଶ୍ୱାସ କରନ୍ତି । ଅଷ୍ଟ୍ରେଲିଆର କେତେକ ଆଦିବାସୀ ସମାଜରେ ପୁରୁଷମାନେ ବ୍ୟବହାର କରୁଥିବା ଜିନିଷକୁ ଋତୁମତୀ ନାରୀ ସ୍ପର୍ଶ କରିବା ମାତ୍ରେ ତାହାକୁ ପ୍ରାଣଦଣ୍ଡ ଦେବାର ପ୍ରଥା ରହିଛି, ଏପରିକି ପୁରୁଷମାନେ ଯିବା ଆସିବା ରାସ୍ତାରେ ସେମାନେ ଚାଲିବା ମାତ୍ରେ ଦଣ୍ଡ ଦିଆଯାଇଥାଏ । ଏହିପରି ସମାଜରେ ଜଣେ ପୁରୁଷର ଋତୁମତୀ ସ୍ତ୍ରୀ ତାହାର ଶେଯରେ ଶୋଇପଡ଼ିବାରୁ ସେ ସ୍ତ୍ରୀକୁ ହତ୍ୟା କରିଥିଲା ଓ ନିଜେ ବିବର୍ଣ୍ଣ ହେବା ଭୟ ତାହାର ଏତେ ଜୋର ହୋଇଥିଲା ଯେ ସେ ପନ୍ଦର ଦିନ ଭିତରେ ମରିଯାଇଥିଲା । ଅନେକ ଦେଶରେ ରଜଃସ୍ରାବ ସମୟରେ ନାରୀମାନଙ୍କୁ ଅନିର୍ମଳ ଓ ଅସ୍ପୃଶ୍ୟ ବୋଲି ଧରିଥାନ୍ତି । ପ୍ରାୟ ପ୍ରତ୍ୟେକ ଦେଶରେ ଋତୁମତୀ ନାରୀମାନଙ୍କର ଧର୍ମକାର୍ଯ୍ୟରେ ଅଂଶଗ୍ରହଣ କରିବା ମନା । କେଉଁଠାରେ କିପରି ନାରୀମାନେ ରଜଃସ୍ରାବ ସମୟର ଦିନଗୁଡ଼ିକ ପାଳନ କରିଥାନ୍ତି ତାହା ନିମ୍ନରେ ଦିଆଗଲା ।

୧ । ମୋଜେସ୍ କହିଛନ୍ତି ଯେ ଋତୁମତୀ ନାରୀମାନେ ଏକ ସପ୍ତାହ ବା ସାତଦିନ ପର୍ଯ୍ୟନ୍ତ ଅଶୁଦ୍ଧ । ସେମାନଙ୍କୁ ସାତ ଦିନ ପର୍ଯ୍ୟନ୍ତ ଛୁଇଁବା ନିଷେଧ । ସେମାନେ ଯେଉଁଠାରେ ବସନ୍ତି ବା ଶୁଅନ୍ତି ସେହି ସ୍ଥାନ ମଧ୍ୟ ଅଶୁଦ୍ଧ । କୌଣସି ଲୋକ ସେମାନଙ୍କୁ ସ୍ପର୍ଶ କରିବା ମାତ୍ରେ କିମ୍ବା ସେମାନେ ବ୍ୟବହାର କରୁଥିବା ଜିନିଷ ଛୁଇଁବା ମାତ୍ରେ ପିନ୍ଧିଥିବା ଲୁଗା ଧୋଇ ଏବଂ ନିଜେ ଗାଧୋଇବା ପରେ ଶୁଚି ହେବ । କୌଣସି ପୁରୁଷ ସେମାନଙ୍କ

ନକକଟରେ ଶୋଇବା ମାତ୍ରେ ପୁରୁଷ ମଧ୍ୟ ଏକ ସପ୍ତାହ ପର୍ଯ୍ୟନ୍ତ ଅସ୍ପୃଶ୍ୟ ରହିବ ।

୨ । ମୋଜେସ୍ କହିବା ପରି ମୁସଲମାନ୍‌ମାନଙ୍କ ଧର୍ମଗ୍ରନ୍ଥ କୋରାନ୍‌ରେ ଲେଖାଅଛି ଯେ ଋତୁମତୀ ନାରୀମାନଙ୍କୁ ସେମାନେ ଶୁଚି ହେବା ପର୍ଯ୍ୟନ୍ତ ସ୍ପର୍ଶ କରିବ ନାହିଁ । ମୁସଲମାନ୍ ସମାଜରେ ନିମ୍ନ-ଶ୍ରେଣୀର ଲୋକମାନେ ଏହି ନିୟମ କଠୋର ଭାବେ ପାଳନ କରନ୍ତି । ପର୍ସିଆ ଦେଶରେ ଏହା ଆହୁରି କଠୋର । ରଜଃସ୍ରାବ ଆରମ୍ଭ ହେବା ମାତ୍ରେ ଲୋକ ରହିବା ବାସଗୃହ ଠାରୁ ବହୁତ ଦୂରକୁ ଚାଲିଯାଇ ଋତୁମତୀ ନାରୀମାନେ ସ୍ରାବ ବନ୍ଦ ହେବା ପର୍ଯ୍ୟନ୍ତ ସେଠାରେ ରହୁଥିଲେ । ସ୍ରାବ ବନ୍ଦ ହେବା ପରେ ଗାଧୋଇ ସ୍ନାନ ପୂଜାପୂଜି କରିବା ପରେ ସେମାନେ ଶୁଦ୍ଧ ହୋଇ ଘରକୁ ଫେରି ସମସ୍ତଙ୍କ ସହିତ ମିଳାମିଶା କରୁଥିଲେ ।

୩ । ଖ୍ରୀଷ୍ଟଧର୍ମରେ ରଜସ୍ୱଳା ନାରୀକୁ ଅନିର୍ମଳ ବା ଅସ୍ପୃଶ୍ୟ ବୋଲି ମନେ କରିଥାନ୍ତି । ସେହେତୁ ପୁଣ୍ୟ ବା ପୂଜା କାର୍ଯ୍ୟରେ ସେମାନେ ଯୋଗଦେବା ମନା ବୋଲି ସେମାନଙ୍କର Old Testament କହେ । ଜୋରାଷ୍ଟରଙ୍କ ନିୟମ ଅନୁସାରୀ ପାର୍ସିମାନେ ରଜସ୍ୱଳା ନାରୀକୁ ଅଶୁଚି ବୋଲି ମନେ କରନ୍ତି । ପାର୍ସିମାନେ ସାଧାରଣତଃ ଧର୍ମର କଠୋର ନିୟମ ଯୋଗୁଁ ପ୍ରତିଦିନ ଶରୀରକୁ ନିର୍ମଳ ରଖନ୍ତି । ଜେନ୍ଦାଭେସ୍ତାରେ ଲେଖାଅଛି ଯେ ରଜଃସ୍ରାବ ସମୟରେ ନାରୀମାନଙ୍କୁ ପିଶାଚ ଆକ୍ରମଣ କରେ । ରଜସ୍ୱଳା ନାରୀ ଓ ତାହାର ପାରିପାର୍ଶ୍ୱିକ ବେଷ୍ଟନୀରେ ସେଥିର ପ୍ରଭାବ ରହେ । ସେହେତୁ ରଜସ୍ୱଳା ନାରୀ ଯାହା ସ୍ପର୍ଶ କରେ, ସେଗୁଡ଼ିକ ଅପବିତ୍ର ହୁଏ । ରଜଃସ୍ରାବ ଆରମ୍ଭ ହେବା ମାତ୍ରେ ଗାଁର ଗୋଟିଏ ଉଚ୍ଚ ଜାଗାରେ ରଜସ୍ୱଳା ନାରୀକୁ ନେଇ ରଖନ୍ତି ଯାହା ଫଳରେ ସେମାନଙ୍କ ଦୃଷ୍ଟି ଯେପରି କୌଣସି ଘର ଭିତରେ ପଡ଼ି ସେହି ଘରକୁ ଅଛୁଆଁ କରିବ ନାହିଁ । ଏହି ସ୍ଥାନର ଆଠ ବା ଦଶ ଫୁଟ ଅନ୍ତର ପର୍ଯ୍ୟନ୍ତ ପୁରୁଷ ଓ ଅନ୍ୟାନ୍ୟ ଶୁଚି ନାରୀମାନେ ଆସି ପାରନ୍ତି । ନିଆଁ, ପାଣି, ଦୈନନ୍ଦିନ ବ୍ୟବହାର କରିବା ଥାଳି ଓ ଗିନା, ଧର୍ମ କାର୍ଯ୍ୟରେ ବ୍ୟବହୃତ ହେଉଥିବା ପାତ୍ର ଏହି ସ୍ଥାନରୁ ଦୂରରେ ରହେ । ଏହି ସ୍ଥାନରେ ବାଲି ବା ମାଟି ବିଛାଇ ଦିଆଯାଏ ଯାହା ଫଳରେ ଘାସ ବା ଅନ୍ୟ କୌଣସି ବୃକ୍ଷଲତା

ରଜସ୍ୱଳା ନାରୀର ସ୍ପର୍ଶରେ ଆସି ସେପରି ଅଶୁଦ୍ଧ ନ ହୁଏ। ରଜଃସ୍ରାବ ନ'ଦିନ ପର୍ଯ୍ୟନ୍ତ ହୁଏ ବୋଲି ସେଠାର ଲୋକେ ବିଶ୍ୱାସ କରନ୍ତି। ସେହେତୁ ରଜସ୍ୱଳା ନାରୀ ନ'ଦିନ ପରେ ସେହି ସ୍ଥାନ ତ୍ୟାଗ କରେ। ତା ପରେ ଗାଧୋଇ ସାରି ଘରେ ପ୍ରବେଶ କରେ। ଋତୁମତୀ ନାରୀ ସହିତ ସହବାସ କରିବା ପୁରୁଷମାନଙ୍କ ପକ୍ଷେ ନିଷେଧ ଏବଂ ଯେଉଁମାନେ ଏହି ନିୟମକୁ ଅମାନ୍ୟ କରନ୍ତି ସେମାନଙ୍କୁ କଠୋର ଦଣ୍ଡ ଦିଆଯାଏ।

୪। ଭାରତୀୟ ହିନ୍ଦୁମାନଙ୍କ ସମାଜରେ ଋତୁମତୀ ନାରୀମାନଙ୍କୁ ଅସ୍ପୃଶ୍ୟା ମନେ କରନ୍ତି। ଦାକ୍ଷିଣାତ୍ୟ ହିନ୍ଦୁ ସମାଜରେ ଋତୁମତୀ ନାରୀମାନେ ଗୋଟିଏ ଅଲଗା କୋଠରୀରେ ରହନ୍ତି। କିନ୍ତୁ ଅନ୍ୟାନ୍ୟ ହିନ୍ଦୁସମାଜରେ ରଜସ୍ୱଳା ନାରୀମାନଙ୍କୁ ଅଲଗା ରଖାଯାଏ। ତିନିଦିନ ପର୍ଯ୍ୟନ୍ତ ସେମାନଙ୍କୁ ସ୍ପର୍ଶ କରାଯାଏ ନାହିଁ। ଚତୁର୍ଥ ଦିନ ସ୍ନାନ କରିସାରି ବିଧି ପାଳନ କରିବା ପରେ ସେ ସମସ୍ତଙ୍କ ସହିତ ମିଳାମିଶା କରେ। ରଜଃସ୍ରାବ ହେଉଥିବା ଦିନଗୁଡ଼ିକରେ ଗାଧୋଇବା ଓ ଦିବାନିଦ୍ରା କରିବା ମନା। ରଜସ୍ୱଳା ନାରୀପକ୍ଷେ ଉଚ୍ଚ ସ୍ଥାନକୁ ଆରୋହଣ କରିବା, ଘୋଡ଼ା ବା ହାତୀରେ ଚଢ଼ିବା, ପାଲିଙ୍କିରେ ବସିବା, ପୁରୁଷଙ୍କୁ ଦେଖାଦେବା, ତେଲ ଲଗାଇବା, ଧାଇଁବା, ମାଟି ଖୋଳିବା, ଘଷାମୋଡ଼ା ବା ମାଲିସ ହେବା, ଖେଳ ଖେଳିବା, ରନ୍ଧନକାର୍ଯ୍ୟ କରିବା ବା ଯେଉଁଥିରେ ଶାରୀରିକ ପରିଶ୍ରମ ଦରକାର ହୁଏ ସେପରି କାର୍ଯ୍ୟ କରିବା ମନା। ଏହା ବାଦେ ସୁଗନ୍ଧି ବା ଅତର ବ୍ୟବହାର କରିବା, ଶେଯରେ ଶୋଇବା, ଦିନରେ ଶୋଇବା ମଧ୍ୟ ମନା। ରଜସ୍ୱଳା ନାରୀମାନେ କାନ୍ଦିବା, ଜୋର୍‌ରେ କଥା କହିବା, ଜୋରରେ ହସିବା, ରାଗ ବା ହିଂସା କରିବା, ପବନ ବା ଖରାରେ ଠିଆ ହେବା, ଅଞ୍ଜନ ଲଗାଇବା ବା ନଖ କାଟିବା ମନା। ଏହି ଦିନମାନଙ୍କରେ ରଜସ୍ୱଳା ନାରୀ ବୟସ୍କ ଲୋକମାନଙ୍କୁ ପ୍ରଣାମ କରିବା ମଧ୍ୟ ନିଷେଧ। ଉଚ୍ଚ ଜାତିର ରଜସ୍ୱଳା ନାରୀ ନୀଚ ଜାତିର ରଜସ୍ୱଳା ନାରୀକୁ ସ୍ପର୍ଶ କରିବା ନିଷେଧ। ଏପରିକି ସେହି ଦିନଠାରେ ନାରୀ ନିଜର ଛୁଆପିଲାଙ୍କୁ ମଧ୍ୟ ଛୁଇଁବା ବା ସେମାନଙ୍କ ସହିତ ଖେଳିବା ନିଷେଧ।

ଏହିପରି ତିନିଦିନ ରହିବା ପରେ ଚତୁର୍ଥ ଦିନ ସକାଳେ ଗାଧୋଇବା ଦରକାର ହୁଏ । ଏହାକୁ ଋତୁସ୍ନାନ କହନ୍ତି । ଏଥିରେ ନାରୀକୁ ବାରଥର କୁଳୁକୁଞ୍ଚା କରି ପାଟି ସଫା କରିବାକୁ ହୁଏ ଓ ବାରଥର ବୁଡ଼ ଗାଧୋଇବାକୁ ହୁଏ । ଗାଧୋଇବାବେଳେ ମୁଣ୍ଡବାଳ ମଧ୍ୟ ଧୋଇଥାନ୍ତି । କେତେକ ଅଞ୍ଚଳର ନାରୀମାନେ ଋତୁସ୍ନାନ ବେଳେ ଶରୀରଶୁଦ୍ଧି ନିମନ୍ତେ ଗୋବର ଓ ହଳଦିର ବ୍ୟବହାର କରନ୍ତି । ଗାଧୋଇ ସାରିବା ପରେ ପିନ୍ଧିଥିବା ଲୁଗା ସଙ୍ଗେ ସଙ୍ଗେ ଧୋବାକୁ ଦେବାପାଇଁ ଅଲଗା ରହେ ଓ କେହି ତାକୁ ସ୍ପର୍ଶ କରନ୍ତି ନାହିଁ । ଗାଧୋଇ ସାରି ସଧବା ନାରୀ ନିଜ କପାଳରେ କୁଙ୍କୁମ ବ୍ୟବହାର କରେ । ଘରେ ପ୍ରବେଶ କଲାବେଳେ ତାହାର ଦୃଷ୍ଟି ଯେପରି ପିଲାମାନଙ୍କ ଉପରେ ନ ପଡ଼େ ସେଥିପାଇଁ ସମସ୍ତେ ସଜାଗ ରହନ୍ତି, ଏପରି କି ନିଜର ସନ୍ତାନ ଉପରେ ମଧ୍ୟ ଦୃଷ୍ଟି ପଡ଼ିବା ଉଚିତ ନୁହେଁ ବୋଲି ବିଚାର କରନ୍ତି । ଏହା ଦ୍ୱାରା ଶିଶୁର ଖରାପ ବା ଅମଙ୍ଗଳ ହୁଏ ବୋଲି ଭାବନ୍ତି । ଶୁଦ୍ଧିବିଧି ସରିବା ପରେ ସେ ଗୃହାରେ ପ୍ରବେଶ କରେ ବା ଅନ୍ୟମାନଙ୍କୁ ସ୍ପର୍ଶ କରେ ।

୫ । ନିଗ୍ରୋ ସମାଜରେ ମଧ୍ୟ ରଜସ୍ୱଳା ନାରୀମାନଙ୍କୁ ଅସ୍ପୃଶ୍ୟା ବୋଲି ମନେ କରି ଅଲଗା କରି ରଖାଯାଏ । ଏଥିନିମନ୍ତେ ଅଲଗା କୁଡ଼ିଆରେ ରଜସ୍ୱଳା ନାରୀମାନେ ସେହି ଦିନତକ ରହନ୍ତି । ସେମାନଙ୍କ ମତରେ ଏହା ଗୋଟିଏ ସଂକ୍ରାମକ ବ୍ୟାଧି ଯାହା କି ଦୃଷ୍ଟି ପଡ଼ିବା ମାତ୍ରେ ସଂକ୍ରମଣ କରିପାରେ । ରଜସ୍ୱଳା ନାରୀମାନେ ଏହି କୁଡ଼ିଆକୁ ଗଲାବେଳେ ସମସ୍ତଙ୍କୁ ଆଡ଼େଇ ହୋଇ ଯାଇଥାନ୍ତି । ଯଦି କେହି ଭୁଲବଶତଃ ସେମାନଙ୍କ ନିକଟକୁ ଆସିଯାଏ, ତାହାହେଲେ ସେମାନେ 'ମୁଁ ଅସ୍ପୃଶ୍ୟା' ବୋଲି ପାଟି କରିଥାନ୍ତି ।

୬ । ଚୀନ ଓ ଜାପାନର ନାରୀମାନେ ନିଜକୁ ବେଶ ପରିଷ୍କାର ଓ ପରିଚ୍ଛନ୍ନ ରଖନ୍ତି । ଏହି ଦିଗରେ ଧନୀ ଓ ଗରିବ ଉଭୟ ଶ୍ରେଣୀର ନାରୀମାନେ ସମାନ । ନାରୀମାନଙ୍କ ନିର୍ମଳ ଓ ପରିଷ୍କାର ରହିବା ପ୍ରବୃତ୍ତି ଏତେ ବେଶି ଯେ ରଜସ୍ୱଳା ନାରୀର ଲୁଗା ସଫା କରିବା ନିମନ୍ତେ ଗୃହକର୍ତ୍ତ୍ରୀ ସୁଦ୍ଧା ରାଜି ହୁଏ ନାହିଁ । ସେହେତୁ ଚୀନ ଓ ଜାପାନର

ନାରୀମାନେ ରଜଃସ୍ରାବ ସମୟରେ ସ୍ରାବରକ୍ତକୁ ଟାଣି ନେବା ନିମନ୍ତେ ଏକ ରକମ କାଗଜ ବ୍ୟବହାର କରନ୍ତି । କାଗଜ ଯୋନିରନ୍ଧ୍ରରେ ଭରତି କରି ଦିଆଯାଏ ଓ ତାହା ଭିଜିଗଲେ ବାହାର କରି ପୋଡ଼ି ଦିଅନ୍ତି । ନାରୀ ଗୋଟିଏ ଦିନରେ ଯେତୋଟି କାଗଜ ବ୍ୟବହାର କରେ, ସେଥିରୁ ତାର ସ୍ରାବର ପରିମାଣ ଜଣାଯାଏ ।

ଡାକ୍ତର କିଷ୍ଟ କହନ୍ତି ଯେ ବହୁତ ଦୂର ପର୍ଯ୍ୟନ୍ତ ଏକା ଥରକେ ଚାଲିବା, ଗରମ ବା ଥଣ୍ଡା ପାଣିରେ ଗାଧୋଇବା, ଘୋଡ଼ାଚଢ଼ା, ରେଳରେ ଲମ୍ବାଯାତ୍ରା, କୁସ୍ତି କସରତ୍, ବ୍ୟାୟାମ ନିମନ୍ତେ ଦୌଡ଼ାଧାପଡ଼ ହେବା ରକମ ଖେଳ ଖେଳିବା, ଶାରୀରିକ ପରିଶ୍ରମ, ସାଇକେଲରେ ଚଢ଼ିବା, ନାଚିବା, ରଜଃସ୍ରାବ ସମୟରେ କିଶୋରୀମାନଙ୍କ ପକ୍ଷେ ନିଷେଧ । ଯୌନ ଉତ୍ତେଜନା, ଅନିଦ୍ରା ରହିବା, ଅମୁଁହା ଓ ରୁଦ୍ଧ କୋଠରିରେ ରହିବା, ପରିସ୍ରା ବନ୍ଦ କରି ରହିବା ଓ ଥଣ୍ଡା ଧରିବା ପ୍ରଭୃତି ଉଚିତ ନୁହେ । ରଜଃସ୍ରାବ ସମୟରେ ଗାନବାଜଣା ଅଭ୍ୟାସ କରିବା ଠିକ୍ ନୁହେ । ଏହା ଦ୍ୱାରା କଣ୍ଠସ୍ୱରରେ ଆଘାତ ଆସିପାରେ । ଶାରୀରିକ ଓ ମାନସିକ ପରିଶ୍ରମ ବିଶେଷଭାବେ କରିବା ଉଚିତ ନୁହେ । ଏହି ସମୟରେ ପୂର୍ଣ୍ଣମାତ୍ରାରେ ବିଶ୍ରାମ ନେବା ଆବଶ୍ୟକ । ସ୍ୱଳ୍ପରଜ ଅବସ୍ଥାରେ ଗରମ ପାଣିରେ ଗୋଡ଼ ଧୋଇବା ଭଲ ନୁହେ ।

ରଜଃସ୍ରାବ ସମୟରେ ଲଘୁଖାଦ୍ୟ ଖାଇବା ଭଲ । ଉତ୍ତେଜକ ଖାଦ୍ୟ ଖାଇବା ଅନୁଚିତ । ଅତିରଜରେ ଚାହା, କଫି ପ୍ରଭୃତି ଉତ୍ତେଜକ ପାନୀୟ ପିଇବା ନିଷେଧ । ସ୍ୱଳ୍ପରଜରେ ଚାହା, କଫିର ସାମାନ୍ୟ ବ୍ୟବହାର କରାଯାଇ ପାରେ ।

ପ୍ରାଚୀନ ଗ୍ରୀସ୍ ଓ ରୋମ୍ ରାଜ୍ୟରେ ମାସିକ ରଜଃସ୍ରାବକୁ ନାରୀ-ମାନଙ୍କ ଶରୀରର ଶୁଦ୍ଧି ସମୟ ବୋଲି ଭାବୁଥିଲେ । ସେତେବେଳେ ରଜଃସ୍ରାବକୁ ଘୃଣା କରୁଥିଲେ ମଧ୍ୟ ବାତ, ବାଳମୂଳିଆ ଘା ପ୍ରଭୃତି ରୋଗରେ ରଜଃସ୍ରାବ ରକ୍ତ ଶରୀରର ସେହି ଅଂଶରେ ଲଗାଇଲେ ଭଲ ହୋଇଯାଏ ବୋଲି କେତେକ ଲୋକ ବିଶ୍ୱାସ କରୁଥିଲେ ।

ପ୍ରାୟ ସମସ୍ତ ଦେଶରେ ରଜଃସ୍ରାବ ଆରମ୍ଭ ହେଲେ ବାଳିକା ଯୌବନରେ ପଦାର୍ପଣ କରେ ବୋଲି ଧରିଥାନ୍ତି ଏବଂ ରଜଃସ୍ରାବ ଏହାର

ବାହ୍ୟ ସୂଚନା ବୋଲି ମନେ କରନ୍ତି । କିନ୍ତୁ ପ୍ରକୃତରେ ଏହା ଠିକ୍ ନୁହେଁ । ରଜଃସ୍ରାବ ଆରମ୍ଭ ହେଲେ ମଧ୍ୟ ବାଳିକାର ଜ୍ଞାନ ଓ ମାନସିକ ବିକାଶ ଉନ୍ନତ ସ୍ତରକୁ ଆସି ନ ଥାଏ । ପ୍ରାୟ ପ୍ରତ୍ୟେକ ସମାଜରେ ବାଳିକାମାନଙ୍କର ରଜଃସ୍ରାବ ଆରମ୍ଭ ହେଲେ ଭୋଜିଭାତ ହୋଇ କେତେକ ପ୍ରଥା ଅନୁସୃତ ହୋଇଆସୁଛି । କେତେକ ସମାଜରେ ବାଳିକାମାନଙ୍କର ରଜଃସ୍ରାବ ଆରମ୍ଭ ହେବା ମାତ୍ରେ ସେମାନେ ବିବାହଯୋଗ୍ୟା ଓ ସନ୍ତାନ ଉତ୍ପାଦନକ୍ଷମ ବୋଲି ସ୍ୱୀକାର କରନ୍ତି । ବାଳିକାମାନଙ୍କର ରଜଃସ୍ରାବ ଆରମ୍ଭ ହେଲେ ସେମାନଙ୍କୁ ସମାଜରେ ଯୁବତୀର ସ୍ଥାନ ଦିଆଯାଏ । କେତେକ ଆଦିବାସୀ ସମାଜରେ ସେମାନଙ୍କ ଦେହରେ ଚିତା କୁଟାଇ ଯୁବତୀର ବାହ୍ୟ ଆକାର ଦିଆଯାଏ । ଅଷ୍ଟ୍ରେଲିଆର ଆଦିବାସୀ ସମାଜରେ ପ୍ରଥମ ରଜଃସ୍ରାବ ପରେ ବାଳିକା ଗୋଟିଏ ବୁଢ଼ୀର ଦୁଇ ଗୋଡ଼ ମଝିରେ ମୁଣ୍ଡ ରଖେ । ଗୋଟିଏ ମୁନିଆ ସଢ଼େଇ ବା ପଥର ସାହାଯ୍ୟରେ ବୁଢ଼ୀ ବାଳିକାର ପିଠିରେ କାନ୍ଧ ପର୍ଯ୍ୟନ୍ତ ଜୋରରେ ଦାଗ କରି କାଟିନିଏ । ବାଳିକା କାନ୍ଦିଲା ବେଳେ ପାଖରେ ଥିବା ବ୍ୟକ୍ତିମାନେ ଆନନ୍ଦରେ ପାଟିକରି ନାଚଉଠନ୍ତି । ପ୍ରତ୍ୟେକ ବାଳିକା ପ୍ରଥମ ରଜଃସ୍ରାବ ପରେ ଏହି ଦଣ୍ଡ ଭୋଗିଥାଏ । ସେମାନଙ୍କ ମତରେ ଦାଗୁଆ ପିଠି ଯୁବତୀମାନଙ୍କର ଶ୍ରେଷ୍ଠ ଅଳଙ୍କାର । ଏହା ତୁଳନାରେ ଗୁଞ୍ଜିଆ କଣ୍ଟା ସାହାଯ୍ୟରେ ମୁହଁ, ହାତ, ପିଠି, ପେଟ ପ୍ରଭୃତି ଅଙ୍ଗରେ ଚିତା କୁଟାଇବା ଅତି ସହଜ ଏବଂ ବାଳିକା ପକ୍ଷେ କଷ୍ଟପ୍ରଦ ନୁହେଁ ।

ଅଷ୍ଟ୍ରେଲିଆର ଆଉ ଗୋଟିଏ ଆଦିବାସୀ ସମାଜରେ ବାଳକ ଓ ବାଳିକାମାନେ ଯୌବନରେ ପଦାର୍ପଣ କରିବା ମାତ୍ରେ ସେମାନଙ୍କୁ ଜୋରରେ ଭିଡ଼ିଧରି ଆଗର ଦୁଇଟି ଦାନ୍ତ ଭାଙ୍ଗି ଦିଅନ୍ତି । ଏହା ଯୁବକ ଓ ଯୁବତୀମାନଙ୍କର ବାହ୍ୟ ଚିହ୍ନ ବୋଲି ଧରାଯାଏ । ଦାନ୍ତ ଭାଙ୍ଗିଲାବେଳେ ଦୁଇଟି ଗୋଳିଆ କାଠି ଖଣ୍ଡ ଦାନ୍ତର ଦୁଇ ପାଖରେ ପିଟି ପିଟି ଭରିଭି କରନ୍ତି । ତା ପରେ ଦାନ୍ତରେ ଗୋଟିଏ ଚମଡ଼ା ବାନ୍ଧି ଦିଅନ୍ତି । ଏହା ପରେ ଦୁଇ ହାତ ଲମ୍ବର କାଠିଖଣ୍ଡିଏ ଲଗାଇ ଗୋଟିଏ ଓଜନିଆ ପଥରରେ ପିଟି ଦିଅନ୍ତି । ଗୋଟିଏ ବା ଦୁଇଟି ମାଡ଼ରେ ଦାନ୍ତଟି ଉପୁଡ଼ି ଯାଏ । ଗୋଟିଏ ଦାନ୍ତ ଖସିଗଲା ପରେ ଆଉ ଗୋଟିଏ ଦାନ୍ତ ଏହିପରି ଖସାଇ ଦେଇଥାନ୍ତି ।

ପ୍ରାପ୍ତ ପ୍ରତ୍ୟେକ ସମାଜରେ ବାଳକ ଓ ବାଳିକାମାନେ ଯୌବନରେ ପଦାର୍ପଣ କଲାବେଳେ କେତେକ ପ୍ରାଚୀନ ପ୍ରଥା ଅନୁସରଣ କରି ଭୋଜଭାତ କରିବା ପ୍ରଥା ଦେଖାଯାଏ । କିନ୍ତୁ ଆଜିକାଲି ଏଥିରେ ବହୁତ ପରିବର୍ତ୍ତନ ଆସିଲାଣି । ସଭ୍ୟତା ଓ ଶିକ୍ଷାର ବୃଦ୍ଧି ସଙ୍ଗେ ସଙ୍ଗେ ଆର୍ଥିକ ପରିସ୍ଥିତିର ପ୍ରଭାବ ଯୋଗୁ ରୀତିନୀତିରେ ବହୁତ ପରିବର୍ତ୍ତନ ଦେଖା-ଯାଉଛି । ଗାଁ ଗହଳରେ ଗାଁର ଗୋଟିଏ ବାଳିକା ପ୍ରଥମ ଯୌବନରେ ପଦାର୍ପଣ କଲାବେଳେ ଭୋଜଭାତ ଯୋଗୁଁ ଗାଁଟିଯାକର ଲୋକେ ଜାଣି-ପାରୁଥିଲେ । କିନ୍ତୁ ସହରରେ ଏହି ସବୁ ରୀତିନୀତିରେ ପରିବର୍ତ୍ତନ ଯୋଗୁଁ ପଡ଼ୋଶୀ ଏବଂ ଘରର ଅନ୍ୟାନ୍ୟ ଲୋକେ ମଧ୍ୟ ଜାଣିବା କଷ୍ଟକର ହୋଇପଡ଼ୁଛି ।



୯—

## କୁମାରୀଚ୍ଛଦ

ଭଗରନ୍ଧ୍ରର ଆରମ୍ଭରେ (ଯୋନିନାଳୀର ମୁହଁରେ) ଗୋଟିଏ ପରଦା ରହେ । ଏହି ପରଦା ସାଧାରଣତଃ ଯୋନିନାଳୀକୁ ପୂରାପୂରି ଘୋଡ଼ାଇ ରଖେ ନାହିଁ । କିନ୍ତୁ କେତେକ ସ୍ଥାନରେ ଏହି ପରଦା ପୂରାପୂରି ଘୋଡ଼ାଇ ରହିବା ମଧ୍ୟ ଦେଖାଯାଇଛି । ଯୌନସଙ୍ଗମ ନ ହେବା ଯାଏଁ ପ୍ରାୟ ପ୍ରତ୍ୟେକ ଯୁବତୀର ଯୋନିରେ ଏହି ପରଦା ରହେ । ଏହି ପରଦାକୁ ସତୀଚ୍ଛଦ ବା କୁମାରୀଚ୍ଛଦ କହନ୍ତି ।

କୁମାରୀଚ୍ଛଦର ଆକାର ବା ପ୍ରକାର ଶାରୀରିକ ଗଠନ ଅନୁଯାୟୀ ଭିନ୍ନ ଭିନ୍ନ ରକମର ହୁଏ । ସମୟେ ସମୟେ କୌଣସି କାରଣରୁ ଏହା ପରିପକ୍ୱ ଅବସ୍ଥାରେ ପହଞ୍ଚି ପାରେ ନାହିଁ; ସେହେତୁ ଯୌନସଙ୍ଗମରେ ବାଧା ଦେଇଥାଏ । କେତେକ ଯୁବତୀଙ୍କର କୁମାରୀଚ୍ଛଦ ପୂରାମାତ୍ରାରେ ଯୋନିନାଳୀକୁ ଘୋଡ଼ାଇ ରଖେ ଏବଂ ଯୌନସଙ୍ଗମରେ ବାଧା ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଋତୁସ୍ରାବ ବନ୍ଦ କରି ସ୍ୱାସ୍ଥ୍ୟହାନି ଘଟାଏ ।

ଅଧିକାଂଶ ଯୁବତୀଙ୍କର କୁମାରୀଚ୍ଛଦ ଗୋଲାକୃତି ବା ଅର୍ଦ୍ଧଗୋଲାକୃତି ଆକାର ହୋଇ ତହିଁରେ ଗୋଟିଏ ଛୋଟିଆ ରନ୍ଧ୍ର ରହେ । କୁମାରୀଚ୍ଛଦକୁ ଆଘାତ ନ କରି ଏହି ଛୋଟିଆ ରନ୍ଧ୍ର ଦେଇ ଯୋନିନାଳୀରେ ଲିଙ୍ଗ ପ୍ରବେଶ କରିବା ସହଜ ହୁଏ ନାହିଁ । କେତେକ ନାରୀଙ୍କର କୁମାରୀଚ୍ଛଦର ରନ୍ଧ୍ର ଏତେ ବଡ଼ ରହେ ଯେ ତାହାକୁ ଆଘାତ ନ କରି ଯୌନ ସଂଯୋଗ ସୁବିଧାରେ ହୋଇପାରେ ।

କେତେକ ସ୍ଥାନରେ କୁମାରୀଚ୍ଛଦରେ ଦୁଇଟି ଛୋଟିଆ ଛୋଟିଆ ରନ୍ଧ୍ର ଥିବାର ଦେଖାଯାଇଛି । କୁମାରୀଚ୍ଛଦରେ ଚାଲୁଣି ପରି ଅନେକ ରନ୍ଧ୍ର ରହିଥିବାର କ୍ୱଚିତ୍ ଦେଖାଯାଇଛି । ଆଉ କେତେକ ନାରୀଙ୍କର ଦୁଇଟି କୁମାରୀଚ୍ଛଦ ଥିବାର ମଧ୍ୟ ଦେଖାଯାଇଛି ।

କୁମାରୀଚ୍ଛଦର ଅବସ୍ଥା ନେଇ ନାରୀର ସତୀତ୍ୱ ସମ୍ବନ୍ଧେ ଧାରଣା କରିନେବା ପୂରାପୂରି ଠିକ ନୁହେ । ସାଧାରଣତଃ ଯୌନସଂଯୋଗ ସମୟର ଆଘାତରେ କୁମାରୀଚ୍ଛଦର କ୍ଷତ ଘଟେ । କିନ୍ତୁ ଯେଉଁଠାରେ କୁମାରୀଚ୍ଛଦର

ରନ୍ଧ୍ର ବଡ଼ ଓ ନମନୀୟ ଆକାରର ଥିବାରୁ, ସେଠାରେ ଯୌନସଙ୍ଗମ ବେଳେ କୁମାରୀଚ୍ଛଦର କ୍ଷତ ଘଟେ ନାହିଁ । ପୁଣି ଯୌନସଙ୍ଗମ ବେଳେ ପୁରୁଷ ବୁଝିଆର ରନ୍ଧ୍ର କୁମାରୀଚ୍ଛଦକୁ ଆଘାତ ନ କରିପାରେ । କୁମାରୀଚ୍ଛଦର ମୁହଁରେ ଶୁକ୍ର ସ୍ଖଳନ ହେଲେ ସେଗୁଡ଼ିକ ଯୋନିନାଳୀ ଭିତରେ ପ୍ରବେଶ କରି ଯୁବତୀର ଗର୍ଭସଞ୍ଚାର କରିପାରନ୍ତି । ଏହି ଅବସ୍ଥାରେ ନାରୀର ଗର୍ଭସଞ୍ଚାର ହେଲେ ମଧ୍ୟ କୁମାରୀଚ୍ଛଦ ଠିକ୍ ରହିଥିବା ଦେଖାଯାଏ ।

ଆକସ୍ମିକ ଦୁର୍ଘଟଣାରେ ନାରୀମାନେ ଗୋଡ଼ ଓସାରି ହୋଇ ପଡ଼ିଯିବା ଦ୍ୱାରା କୁମାରୀଚ୍ଛଦରେ ଆଘାତ ଲାଗେ । ସମୟେ ସମୟେ ଅସତର୍କ ହୋଇ ଯୋନିନାଳୀ ସଫା କରିବା ସମୟରେ ମଧ୍ୟ ଆଘାତ ହୋଇପାରେ । ସେହେତୁ କୁମାରୀଚ୍ଛଦର ଅବସ୍ଥା ନେଇ ନାରୀର ପୂର୍ବାପର ସତୀତ୍ୱ ନିର୍ଦ୍ଧାରଣ କରିବା ଉଚିତ ନୁହେଁ । ଆଜିକାଲି ଡାକ୍ତରମାନେ ଅସ୍ତ୍ରୋପଚାର ଦ୍ୱାରା ଆଘାତପ୍ରାପ୍ତ ହୋଇଥିବା କୁମାରୀଚ୍ଛଦକୁ ତାହାର ପୂର୍ବାବସ୍ଥାକୁ ଫେରାଇ ଆଣିପାରୁଛନ୍ତି ।

ଆଜିକାଲି ବିବାହବେଳେ ଯୁବତୀର ସତୀତ୍ୱ ନେଇ ବିଶେଷ ଚର୍ଚ୍ଚା ହେଉଥିବା ଦେଖାଯାଉଛି । ଅବିବାହିତ ଯୁବତୀମାନଙ୍କର ସତୀତ୍ୱ ସାଧାରଣ ଲୋକଙ୍କ ମତରେ ତାହାର କୁମାରୀଚ୍ଛଦ ଉପରେ ନିର୍ଭର କରେ । କିନ୍ତୁ ସ୍ଥାନବିଶେଷ ନେଇ ଏହି ମତର ଅନେକ ପରିବର୍ତ୍ତନ ମଧ୍ୟ ଦେଖାଯାଏ । ନାରୀମାନଙ୍କ ସତୀତ୍ୱର ପରୀକ୍ଷା ଲାଗି ଯେପରି କୁମାରୀଚ୍ଛଦ ରହିଛି ପୁରୁଷମାନଙ୍କର ବ୍ରହ୍ମଚର୍ଯ୍ୟ ପରୀକ୍ଷା କରିବା ନିମନ୍ତେ ସେହିପରି କିଛି ସୁବିଧା ନାହିଁ । ସାଧାରଣତଃ ଆଦିବାସୀ ସମାଜମାନଙ୍କରେ ପୁରୁଷମାନଙ୍କ ବ୍ରହ୍ମଚର୍ଯ୍ୟ ପାଳନ ଉପରେ ବିଶେଷ ଜୋର ଦେଇ ନ ଥାନ୍ତି । ଭାରତ, ଆମେରିକାର ଲୋହିତ ଭାରତୀୟ ସମାଜରେ କୌଣସି ଯୁବତୀର ସତୀତ୍ୱକୁ ପ୍ରଶଂସା କରିବାକୁ ଯାଇ କହନ୍ତି ଯେ ସେ ବ୍ରହ୍ମଚାରୀର ଯୋଗ୍ୟ ।

ମାଲୟ, ମାଡାଗାସ୍କର, ଦକ୍ଷିଣ ଆଫ୍ରିକା ପ୍ରଭୃତି କେତେକ ଦେଶର ଆଦିବାସୀମାନେ ଅବିବାହିତ ଯୁବତୀର କୁମାରୀଚ୍ଛଦ ପ୍ରତି କୌଣସି ଗୁରୁତ୍ୱ ଦେଇ ନ ଥାନ୍ତି । କୋଲମ୍ବିଆର କେତେକ ଆଦିବାସୀ ସମାଜରେ କୁମାରୀଚ୍ଛଦ ଥିଲେ ଯୁବତୀ ଯୌନସଙ୍ଗମ ନିମନ୍ତେ ଅନୁପଯୁକ୍ତ ବୋଲି ବିଚାର କରନ୍ତି । ମାଡ଼ାଗାସ୍କରର ସାକାଲାଭ ସମାଜରେ ଯୁବତୀମାନେ

ଏହି କାରଣରୁ ଚେଷ୍ଟା କରି ନିଜର କୁମାରୀଚ୍ଛଦକୁ ଉଠାଇ ଦେଉଥିଲେ । ଅଷ୍ଟ୍ରେଲିଆର ଯୁବତୀମାନେ ସାମାଜିକ ପ୍ରଥା ଅନୁଯାୟୀ ଅସ୍ତ୍ରୋପଚାର ଦ୍ୱାରା ଏହି ପରଦାକୁ ନଷ୍ଟ କରିଥାନ୍ତି ।

କେତେକ ଦେଶରେ ଆଦିବାସୀ ସମାଜରେ ବିବାହ ପୂର୍ବରୁ ଯୁବତୀମାନେ ସ୍ୱାଧୀନ ଭାବେ ଯୌନ ଜୀବନ ଯାପନ କରୁଥିବା ଦେଖାଯାଏ । କେତେକ ଆଦିବାସୀ ସମାଜରେ ଯୁବତୀମାନଙ୍କ ପକ୍ଷେ ବିବାହ ପୂର୍ବରୁ ଯେ କୌଣସି ପୁରୁଷ ସହିତ ସହବାସ କରିବା ଏକ ସାମଜିକ ପ୍ରଥା ଏବଂ ତଦ୍ଦ୍ୱାରା ସେମାନଙ୍କ ସାମାଜିକ ସମ୍ମାନ ବୃଦ୍ଧି ହୁଏ ।

ଆଧୁନିକ ଶିକ୍ଷିତ ସମାଜରେ କୁମାରୀଚ୍ଛଦ ଉପରେ ବିଶେଷ ଗୁରୁତ୍ୱ ଦିଆଯାଉଛି । ଇଜିପ୍ଟ, ଆରବ ଓ ଗ୍ରୀସ୍ ଦେଶମାନଙ୍କରେ ପ୍ରାଚୀନ କାଳରୁ କୁମାରୀଚ୍ଛଦ ପ୍ରତି ଗୁରୁତ୍ୱ ରହିଛି । ସେଠାରେ କୁମାରୀଚ୍ଛଦ ହିଁ ଯୁବତୀ ପକ୍ଷେ ସତୀତ୍ୱର ଚିହ୍ନ । ମୁସଲମାନମାନେ ବିବାହ ପୂର୍ବରୁ ଯେଉଁ ଯୁବତୀମାନଙ୍କର କୁମାରୀଚ୍ଛଦ ନ ଥାଏ, ସେମାନଙ୍କୁ ଅସତୀ ବୋଲି ମାରିଦେଉଥିବା ଇତିହାସରୁ ଜଣାଯାଏ । ଇଜିପ୍ଟର ଆରବମାନେ ବିବାହ ପୂର୍ବରୁ କେତେକ ଲୋକଙ୍କ ଉପସ୍ଥିତିରେ ଯୁବତୀର ସତୀତ୍ୱ ପରୀକ୍ଷା କରିବା ପାଇଁ ତାର ଯୋନିରନ୍ଧ୍ରରେ ଆଙ୍ଗୁଳି ଭରତି କରି ସତୀଚ୍ଛଦର ଉପସ୍ଥିତି ତନଖି କରୁଥିଲେ । କେତେକ ଦେଶରେ କୁମାରୀଚ୍ଛଦ ଉପସ୍ଥିତିର ସଙ୍କେତ ପ୍ରଦର୍ଶନ କରି ଦେଖାଇ ଦିଆଯିବାର ପ୍ରଥା ଦକ୍ଷିଣ ଓ ପୂର୍ବ ୟୁରୋପରେ ପ୍ରଚଳନ ଥିଲା । ରୁଷିଆରେ ଏହି ସଙ୍କେତକୁ ଗୋଟିଏ ଲମ୍ବା ବାଉଁଶର ଅଗରେ ଲଗାଇ ଗାଁର ସାହିମାନଙ୍କରେ ବୁଲାଉଥିଲେ । ଗ୍ରୀସ୍ ଦେଶରେ ନବ-ବିବାହିତ ଯୁବତୀର ରକ୍ତପିନ୍ଧା ସଙ୍କେତକୁ ଘରର ବାହାର ଝରକାରେ କେତେଦିନ ପର୍ଯ୍ୟନ୍ତ ଝୁଲାଇ ରଖୁଥିଲେ । ସିସିଲି ଦ୍ୱୀପରେ ମଧ୍ୟ ଏହିପରି କରାଯାଉଥିଲା । ବର୍ତ୍ତମାନ ସୁଦ୍ଧା ନବ-ବିବାହିତ ଦମ୍ପତିଙ୍କର ମଧୁ-ରାତ୍ରର-ଶଯ୍ୟାରେ ଦିଆଯାଇଥିବା ଗୁଦରକୁ ବର ଓ କନ୍ୟାର ମା'ମାନେ ବା ସେମାନଙ୍କର ପ୍ରତିନିଧିମାନେ ଆସି ତନଖି କରିବାର ପ୍ରଥା ରହିଛି ।

ବେଦାଭ୍ୟା (Bedawai) ଆଦିବାସୀ ସମାଜରେ ମଧୁଶଯ୍ୟା ରାତିର ନବବିବାହିତା କନ୍ୟାର ସଙ୍କେତ ଲାଗିଥିବା ରକ୍ତପିନ୍ଧା ଗୋଟିଏ

ଭୂଷା ବା ଛେଳର ସ୍ତନରେ ବାନ୍ଧି ଗାଁ ଦାଣ୍ଡରେ କେତେଦିନ ପାଇଁ ରଖାଯାଉଥିଲା । ଫ୍ରେଞ୍ଚ ସୁଦାନର କୁଲଙ୍ଗୋନିଗ୍ରୋ ସମାଜରେ (Kulngo Negro) ମଧ୍ୟ ନବବିବାହିତା ଯୁବତୀର ସଙ୍କେତକୁ ସର୍ବସାଧାରଣରେ ଦେଖାଇବା ପ୍ରଥା ଅଛି । ଦକ୍ଷିଣ ସେଲିବସ୍ ଦ୍ୱୀପ ପୁଞ୍ଜରେ (Southern Celebes) ସଙ୍କେତ ଲାଗିଥିବା ନବବିବାହିତ ଯୁବତୀର ରକ୍ତପିନ୍ଧା ଲୁଗା ରୂପାଥାଳିରେ ରଖି କୁଣିଆମାନଙ୍କୁ ଦେଖାଇ ଦିଆ-ଯାଉଥିଲା । ବେଲୁଚିସ୍ଥାନର ବ୍ରାହୁ (Brahui) ସମାଜରେ କେତେକ ନାରୀ ନବ-ବିବାହିତା . ଯୁବତୀକୁ ତାହାର କୁମାରୀଚ୍ଛଦ ଓ ସତୀତ୍ୱ ନେଇ ପରୀକ୍ଷା କରୁଥିଲେ ।

ସ୍ପେନ୍ ଦେଶର ରାଜା ଫର୍ଦିନାଣ୍ଡ୍ ଇସାବେଲଙ୍କୁ ବିବାହ କରିବା ପରେ ଇସାବେଲଙ୍କ ମଧୁଶଯ୍ୟା ଚାଦର କୁମାରୀଚ୍ଛଦ-ଉପସ୍ଥିତିର ସଙ୍କେତକୁ ଉପସ୍ଥିତ ଭଦ୍ରମହିଳାମାନଙ୍କୁ ଦେଖାଇବା ନିମନ୍ତେ ଦିଆଯାଇଥିଲା । ଏଥିରୁ ଜଣାଯାଏ ଯେ ସ୍ପେନ୍ ଦେଶରେ ମଧ୍ୟ ଏହି ପ୍ରଥା ପ୍ରଚଳନ ଥିଲା ।



## ସତୀଚ୍ଛଦ ନେଇ କେତେକ ପ୍ରାଚୀନ ରୀତି

ଯୁବତୀମାନଙ୍କର କୁମାରୀଚ୍ଛଦ ନେଇ ଭିନ୍ନ ଭିନ୍ନ ଦେଶରେ ବିଭିନ୍ନ ରୀତି ପ୍ରଚଳନ ଥିବା ଦେଖାଯାଇଛି । ୟୁରୋପୀୟ ଦେଶମାନଙ୍କର ଉନ୍ନତ ଓ ଶିକ୍ଷିତ ସମାଜରୁ ଆରମ୍ଭ କରି ବିଭିନ୍ନ ଦେଶର ଆଦିବାସୀ ସମାଜ ପର୍ଯ୍ୟନ୍ତ ଏହି ଦିଗରେ ନାନା ରକମର ପ୍ରଥା ପ୍ରଚଳିତ ଥିବା ଲକ୍ଷ୍ୟ କରାଯାଇଛି ।

ପୂର୍ବେ ସ୍କଟଲ୍ୟାଣ୍ଡରେ ରାଜା, ମହାରାଜାମାନେ ପ୍ରଜାମାନଙ୍କ ନବ-ବିବାହିତା ଯୁବତୀଙ୍କୁ ପ୍ରଥମ ରାତିରେ ସମ୍ଭୋଗ କରିବା ପ୍ରଥା ପ୍ରଚଳିତ ଥିବାର ଜଣାଯାଏ । ଏହି ପ୍ରଥା ବହୁ ପ୍ରାଚୀନ କାଳରୁ ଚାଲିଆସିବା ପରେ ପ୍ରାୟ ବାର ଶହ ବର୍ଷ ପୂର୍ବେ ଆଇନରେ ପରିଣତ ହୋଇଥିଲା । ଗତ ହଜାରେ ବର୍ଷ ହେବ ଏହି ଆଇନକୁ ଉଠାଇ ଦିଆଯାଇ ଯୌନସଙ୍ଗମ ବଦଳରେ ସାମାନ୍ୟ ପରିମାଣରେ ଟିକସ ଦେବା ଧାର୍ଯ୍ୟ ହୋଇଥିଲା । ରାଜାମାନେ ଇଚ୍ଛା କଲେ ଯୌନସଙ୍ଗମ କରୁଥିଲେ ନଚେତ୍ ତାହା ବଦଳରେ ଟିକସ ନେଉଥିଲେ କିମ୍ବା ଅନ୍ୟ କାହାକୁ ଏହି ଅଧିକାର ଦେଇ ପାରୁଥିଲେ ।

ପ୍ରାଚୀନ ରୋମ୍‌ରାଜ୍ୟରେ ନବ-ବିବାହିତା ଯୁବତୀ ମନ୍ଦିରକୁ ଯାଇ ନିଜର କୁମାରୀତ୍ୱ ଦେବତାଙ୍କୁ ଉତ୍ସର୍ଗ କରୁଥିଲା । ଯୁବତୀ ନିଜର ବାପା ଓ ସ୍ୱାମୀଙ୍କ ସହିତ ମନ୍ଦିରକୁ ଯାଏ । ସେମାନଙ୍କୁ ବାହାରେ ଛାଡ଼ିଦେଇ ଏକାକୀ ମନ୍ଦିର ଭିତରେ ପ୍ରବେଶ କରେ । ମନ୍ଦିର ଭିତରେ ମାର୍ବଲ ନିର୍ମିତ ଗୋଟିଏ ନଗ୍ନ ପୁରୁଷ ମୂର୍ତ୍ତି ଉତ୍ତେଜିତ ଲିଙ୍ଗ ସହିତ ଥାଏ । ଯୁବତୀ ମନ୍ଦିର ଭିତରେ ପ୍ରବେଶ କରି ନଗ୍ନ ପୁରୁଷ ମୂର୍ତ୍ତିକୁ ଆଲିଙ୍ଗନ କଲାବେଳେ ଉତ୍ତେଜିତ ଲିଙ୍ଗ ଠିକ୍ ଭାବେ କାର୍ଯ୍ୟ କରେ । ଏହା ପରେ ମନ୍ଦିର ଭିତରୁ ଫେରିଆସି ବାପା ଓ ସ୍ୱାମୀଙ୍କ ସହିତ ଘରକୁ ଫେରିଆସେ ।

ସିଫୋଲୋନିଆ (Cephalonia) ଦ୍ୱୀପର ରାଜାମାନେ ମଧ୍ୟ ରାଜ୍ୟରେ ବିବାହ ପୂର୍ବରୁ ପ୍ରତ୍ୟେକ ଯୁବତୀ ସହିତ ପ୍ରଥମ ଯୌନସଙ୍ଗମ କରିବା ଅଧିକାର ବରାବର ଚଳାଇଥିବା ଇତିହାସରୁ ପ୍ରମାଣ ମିଳେ ।

କାମଚାଟ୍‌କା (Kamchatka) ର ଆଦିବାସୀ ସମାଜରେ ଅକ୍ଷତ-ଯୋନିର ଯୁବତୀକୁ ବିବାହ କରିବା ଉଚିତ ନୁହେଁ ବୋଲି ବିଶ୍ୱାସ କରନ୍ତି । ସେଥିପାଇଁ ବାଳିକାମାନେ ଯୌବନରେ ପ୍ରବେଶ କରିବା ପରେ ମା'ମାନେ ଯୁବତୀମାନଙ୍କ ଯୋନିରେ ଅଙ୍ଗୁଳି ପ୍ରବେଶ କରାଇ କୁମାରୀଚ୍ଛଦକୁ ନଷ୍ଟ କରି ଦେଇଥାନ୍ତି । ଉତ୍ତର ଅଷ୍ଟ୍ରେଲିଆରେ ମୋଟା କାଠି ସାହାଯ୍ୟରେ କୁମାରୀଚ୍ଛଦକୁ ନଷ୍ଟ କରାଯାଏ । ନିଉ ସାଉଥ ୱେଲ୍‌ସରେ ଏଥିନିମନ୍ତେ ସରୁକାଠିର ବ୍ୟବହାର ହୋଇଥାଏ । କେତେକ ସ୍ଥାନରେ ଲିଙ୍ଗପ୍ରତିମା ସାହାଯ୍ୟରେ କୁମାରୀଚ୍ଛଦକୁ ନଷ୍ଟ କରିବାର ପ୍ରଥା ମଧ୍ୟ ରହିଛି । ମଧ୍ୟ ଆଫ୍ରିକାର ଆଜିମ୍ବାଲ୍ୟାଣ୍ଡରେ (Azimbaland)ରେ ଶିଙ୍ଗ ବା ଶିଙ୍ଗର କାଠି ଜୋରରେ ଭର୍ତ୍ତି କରାଇ କୁମାରୀଚ୍ଛଦକୁ ନଷ୍ଟ କରିଥାନ୍ତି । ସାମୋଆରେ ଲୋକଙ୍କ ସମକ୍ଷରେ ଯୁବତୀର କୁମାରୀଚ୍ଛଦକୁ ନଷ୍ଟ କରାଯାଏ । ଏଠାରେ ଯୁବତୀକୁ ଗୋଟିଏ ପଟିରେ ଶୁଆଇ ଦେଇ କାଠି ସାହାଯ୍ୟରେ ତାହାର ସତୀଚ୍ଛଦକୁ ନଷ୍ଟ କରିଥାନ୍ତି । ଏହି ସମୟରେ ଗୋଟିଏ ମାଟି ହାଣ୍ଡିର ମୁହଁକୁ କଦଳୀପତ୍ର ବା ଅନ୍ୟ କୌଣସି ବଡ଼ ପତ୍ରରେ ଘୋଡ଼ାଇ ରଖନ୍ତି । ଏହି ପତ୍ରରେ ଗୋଟିଏ ଗ୍ରେଟିଆ କଣା କରାଯାଏ । ନବ ଯୁବତୀର ଆଖି ବନ୍ଧାଯାଇ ପତ୍ରର ଗ୍ରେଟିଆ କଣାଟିକୁ ବାହାର କରିବାକୁ କୁହାଯାଏ । ଅନ୍ଧୁଣୀ ଅବସ୍ଥାରେ ପତ୍ରର ଛିଦ୍ର ଖୋଜିଲାବେଳେ ହାଣ୍ଡିକୁ ଏପଟେ ସେପଟେ ବୁଲାଇ ପାଖରେ ଥିବା ଲୋକେ ଅସୁବିଧା କରୁଥାନ୍ତି । ଯୁବତୀ କଣାଟିକୁ ଧରିନେଲେ ଆନନ୍ଦ ଉତ୍ସବର ସୁଅ ଛୁଟେ । ଏହା ପରେ ଯୁବତୀ ଯାହା କରେ ସେଥିରେ କେହି କିଛି ବାଧା ଦିଅନ୍ତି ନାହିଁ ।

ଆରବ ରାଜ୍ୟମାନଙ୍କରେ ମଧ୍ୟ ପୂର୍ବେ ଏହି ପ୍ରଥା ପ୍ରଚଳନ ଥିବାର ସୂଚନା ମିଳେ । ସେମାନଙ୍କ ପ୍ରାଚୀନ ଗ୍ରନ୍ଥମାନଙ୍କରୁ ଜଣାଯାଏ ଯେ ଯୁବତୀ ରଜା ମହାରାଜାଙ୍କ ସହିତ ପ୍ରଥମ ଯୌନସଙ୍ଗମ କରିବା ପରେ ହିଁ ସମାଜରେ ସେ ଯୁବତୀର ମର୍ଯ୍ୟାଦା ପାଇଥାଏ । ୧୫୪୨ ମସିହା ପର୍ଯ୍ୟନ୍ତ କାନାରିଆ ଦ୍ୱୀପରେ ଯୁବତୀମାନଙ୍କର ରଜା ବା ମହାରାଜାଙ୍କ ସହିତ ଯୌନସଙ୍ଗମ ଘଟିବା ପରେ ହିଁ ଅନ୍ୟକୁ ବିବାହ କରି ପାରିବା ପ୍ରଥା ପ୍ରଚଳନ ଥିବା ଜଣାଯାଏ ।

କେତେକ ଆଦିବାସୀ ସମାଜରେ ଏହି ଅଧିକାର ବୈଧାନିକ ବ୍ୟଭିଚାରରେ ପରିଣତ ହେଲା । ଏହି ଅବସ୍ଥାରେ ଯୁବତୀ ଝିଅ ସହିତ ବାପା ପ୍ରଥମେ ଯୌନସଙ୍ଗମ କରୁଥିଲେ । ଓ୍ୱେଷ୍ଟରମାର୍କ (ଯୌନବିତ୍) କହନ୍ତି ଯେ ୭୦୦ ଶତାବ୍ଦୀରେ ବିବାହ ପୂର୍ବରୁ ବାପାମାନେ ଯୁବତୀ ଝିଅ ସହିତ ଯୌନସଙ୍ଗମ କରୁଥିବା ପ୍ରଥା ସିଂହଳୀ ସମାଜରେ ପ୍ରଚଳନ ଥିଲା । ମାଲୟରେ ମଧ୍ୟ ଏହି ରକମ ଗୋଟିଏ ପ୍ରଥା ଚଳୁଥିବା ଜଣାଯାଏ । ଓ୍ୱେଷ୍ଟରମାର୍କ ଆହୁରି କହିଛନ୍ତି ଯେ ନବ ଯୁବତୀ ସହିତ ଯୌନସଙ୍ଗମ କରିବା ନିମନ୍ତେ କେତେକ ସ୍ଥାନରେ ନିଲାମ ଡକାଯାଉଥିଲା । ଲିଙ୍ଗୋ-ସମୁଦ୍ର-ଉପକୂଳ ଅଞ୍ଚଳର ଆଦିବାସୀ ସମାଜରେ ବାଳିକା ଯୌବନରେ ପଦାର୍ପଣ କରିବା ପରେ ତାହାକୁ ବେଶଭୂଷା କରାଇ ଗ୍ରାମମାନଙ୍କରେ ବୁଲାଯାଉଥିଲା । ଯେଉଁ ବ୍ୟକ୍ତି ବହୁତ ଧନ ଦେଇ ନିଲାମ ଧରେ, ସେହି ବ୍ୟକ୍ତି ଯୁବତୀ ସହିତ ପ୍ରଥମ ଯୌନସଙ୍ଗମ କରିବା ଅଧିକାର ପାଉଥିଲା ।

ଅଷ୍ଟ୍ରେଲିଆର ଆଦିବାସୀମାନଙ୍କ ମଧ୍ୟରେ ଅକ୍ଷତ ଯୁବତୀମାନଙ୍କୁ ବିବାହ କାର୍ଯ୍ୟ ପୂର୍ବରୁ ଗୋଷ୍ଠୀର ଯୁବକମାନେ ଜୋରକରି ଯୌନସଙ୍ଗମ କରିବା ପ୍ରଥା ପ୍ରଚଳନ ଥିଲା । ସମୟେ ସମୟେ ଗୋଟିଏ ଯୁବତୀକୁ ଗୋଷ୍ଠୀର କେତେକ ଯୁବକ ବଳାତ୍କାର କରି ଜଙ୍ଗଲ ଭିତରକୁ ଟାଣିନେଇ ଯାଆନ୍ତି ଓ ଜୋର୍ କରି ତା ସହିତ ରତିକ୍ରିୟା କରିଥାନ୍ତି । ଏହି ଆଦିବାସୀ ସମାଜର ଲୋକେ ବିଶ୍ୱାସ କରନ୍ତି ଯେ, କୌଣସି ଯୁବତୀ ବିବାହ କରିବା ପୂର୍ବରୁ ଅନ୍ୟମାନଙ୍କ ସହିତ ଯୌନସଙ୍ଗମ କରି ନିଜର ଜନନେନ୍ଦ୍ରିୟକୁ ସରଳ କରାଇବା ଉଚିତ ।

ଫ୍ରାନ୍ସ ଦେଶରେ ନବ-ବିବାହିତ ଦମ୍ପତିଙ୍କର ମଧୁଶଯ୍ୟା ରାତିରେ ଯୁବତୀର କୁମାରୀଛଦ ଫାଟିଲାବେଳେ ଯୁବତୀ ଜୋରରେ ପାଟି କରିବାର ପ୍ରଥା ଥିଲା । ଯୁବତୀର ଏହି ପାଟି ଶୁଣିଲେ ଯୁବକ ଘରର ଲୋକେ କିଛି ଗରମ ପାନୀୟ ଆଣି ମଧୁଶଯ୍ୟା ବଖରାରେ ଯୁବତୀକୁ ପିଇବାକୁ ଦେଉଥିଲେ ।

ଚୀନ ଓ ଜାପାନର ବାଳିକାମାନେ କୁମାରୀଛଦ ବିଷୟ ଜାଣନ୍ତି ନାହିଁ । ସେଠାର ନାରୀମାନେ ନିଜକୁ ସଫାସୁତୁରା ରଖନ୍ତି । ଝିଅମାନଙ୍କୁ

ସେହିପରି ସଫାସୁତୁରା ରଖିବା ନିମନ୍ତେ ବାଳିକାମାନଙ୍କର ଜନନେନ୍ଦ୍ରିୟରେ ମଧ୍ଯ ଅଙ୍ଗୁଳି ଭର୍ତ୍ତି କରି ସଫା କରିଥାନ୍ତି । ଏହା ଫଳରେ ବାଲ୍ୟାବସ୍ଥାରୁ ହିଁ ବାଳିକାମାନଙ୍କର କୁମାରୀଚ୍ଛଦ ନଷ୍ଟ ହୋଇଯାଏ ବୋଲି ଅନୁମାନ କରାଯାଏ ।

ସାଧାରଣତଃ ମନ୍ଦିରମାନଙ୍କରେ ଜାପାନୀ ଯୁବତୀମାନେ ନିଜର ସତୀତ୍ୱକୁ ଉତ୍ସର୍ଗ କରିଥାନ୍ତି । କେତେକ ଉତ୍ସବ ସମୟରେ ଜାପାନର ଯୁବତୀମାନେ ମନ୍ଦିରକୁ ଯାଇ ମନ୍ଦିରର ପୂଜକ ବା ଯେ କୌଣସି ପୁରୁଷ ନିକଟରେ ନିଜର ସତୀତ୍ୱ ଉତ୍ସର୍ଗ କରିଥାନ୍ତି । ଏହି ପ୍ରଥା ଏସିଆ, ଆଫ୍ରିକା, ଗ୍ରୀସ୍ ପ୍ରଭୃତି ଦେଶମାନଙ୍କରେ ଏବଂ ଭାରତର କେତେକ ଅଞ୍ଚଳରେ ପ୍ରଚଳନ ଥିଲା । ପ୍ରାଚୀନ କାଳରେ ବେବିଲୋନିଆରେ ଦେଶର ପ୍ରତ୍ୟେକ ନାରୀ ଧନୀ ଗରିବ ବାଛ ବିଚାର ନ କରି ଜୀବନରେ ଥରେ ମନ୍ଦିରକୁ ଯାଇ ଅଜଣା ଅଶୁଣା ପୁରୁଷ ନିକଟରେ ନିଜର ସତୀତ୍ୱ ଉତ୍ସର୍ଗ କରି ପୁଣ୍ୟ ଅର୍ଜନ କରିବା ପ୍ରଥା ପ୍ରଚଳନ ଥିଲା ।

ଆମେରିକାର ରେଡ଼ ଇଣ୍ଡିଆନ୍, ଏସ୍କିମୋ ପ୍ରଭୃତି ସମାଜ ମାନଙ୍କରେ ଯୌନ ସଙ୍ଗମ ବଦଳରେ ରାଜା ବା ଦଳପତିଙ୍କୁ ଏକ ରକମ ଖଜଣା ଦେବାପ୍ରଥା ବର୍ତ୍ତମାନ ସୁଦ୍ଧା ପ୍ରଚଳନ ଥିବା ଲକ୍ଷ୍ୟ କରାଯାଇଛି ।

ଏହି ପ୍ରଥା ଗୋଷ୍ଠୀର ପୁରୋହିତ ବା ଧର୍ମଯାଜକମାନଙ୍କ ଠାରୁ ଆରମ୍ଭ ହୋଇଥିବା ଅନୁମାନ କରାଯାଉଛି । ବିବାହବେଳେ ଦେଓ-ଦେବତାଙ୍କ ବିବାହବେଦିକୁ ନିମନ୍ତ୍ରଣ କରି ସେମାନଙ୍କ ସାମନାରେ ବିବାହ ହୁଏ । ତେଣୁ ଯୁବତୀମାନେ ପ୍ରଥମ ଯୌନସଙ୍ଗମ ଦେବତାଙ୍କ ସହିତ ଇଚ୍ଛା କରୁଥିବା ଏଥିରୁ ଅନୁମାନ ହୁଏ । ଭାରତର କେତେକ ଅଞ୍ଚଳରେ ଦେବଦାସୀ ପ୍ରଥା ବର୍ତ୍ତମାନ ସୁଦ୍ଧା ପ୍ରଚଳନ ଅଛି । ଏହି ପ୍ରଥା ଅନୁଯାୟୀ ମନ୍ଦିରରେ ଯୁବତୀର ଦେବତା ସହିତ-ବିବାହ ହୁଏ । ଆଦିବାସୀମାନେ ପୁରୋହିତମାନଙ୍କୁ ଦେବତାମାନଙ୍କ ପ୍ରତିନିଧି ସ୍ୱରୂପ ଜ୍ଞାନ କରିବା ସ୍ୱାଭାବିକ । ଯେଉଁ ଗୋଷ୍ଠୀରେ ନବ ବିବାହିତା ଯୁବତୀର ଦେବତାଙ୍କ ସହିତ ପ୍ରଥମ ଯୌନସଙ୍ଗମ କରିବା ପ୍ରଥା ରହେ, ସେଠାରେ ଦେବତାଙ୍କ ବଦଳରେ ପୁରୋହିତ ପ୍ରତିନିଧି ସ୍ୱରୂପ ସହଜରେ କାର୍ଯ୍ୟ

ସମ୍ପାଦନ କରିବା ସ୍ୱାଭାବିକ । ଏହା ପରେ ଯେତେବେଳେ ଗୋଷ୍ଠୀର ଦଳପତି ବା ରାଜା ମହାରାଜାମାନେ ପୁରୋହିତ ବା ଧର୍ମଯାଜକର ଅଧିକାର କମାଇ ଦେଇ ସେ ସମସ୍ତ ଅଧିକାର ନିଜ ହାତକୁ ନେଲେ, ସେତେବେଳେ ଏହି ଅଧିକାର ମଧ୍ୟ ସେମାନଙ୍କ ହାତକୁ ଚାଲିଯାଇଥିବା ଯୌନବିତ୍‌ମାନେ ଅନୁମାନ କରନ୍ତି ।

କେତେକ ଆଦିବାସୀ ସମାଜରେ ବିଶ୍ୱାସ କରନ୍ତି ଯେ ଅକ୍ଷତ ଯୁବତୀ ସହିତ ଯୌନସଙ୍ଗମ କରିବା ଦ୍ୱାରା ବିବାହ କରିଥିବା ପୁରୁଷ ପ୍ରତି ବିପଦ ଆସେ । ପୁଣି ଅକ୍ଷତ ଯୋନିରୁ ପ୍ରଥମ ଯୌନସଙ୍ଗମରେ ଯେଉଁ ରକ୍ତ ବାହାରେ, ତାହା ପୁରୁଷ ପକ୍ଷେ ବିଷାକ୍ତ ବୋଲି କେତେକ ଆଦିବାସୀ ବିଶ୍ୱାସ କରନ୍ତି । ତେଣୁ ପୁରୋହିତ, ରାଜା, ଦଳପତି ବା ଧାର୍ମିକ-ଲୋକଙ୍କର ଅକ୍ଷତ ନାରୀମାନଙ୍କ ସହିତ ସଙ୍ଗମ କରିବା ଦ୍ୱାରା କିଛି କ୍ଷତି ହୋଇପାରେ ନାହିଁ ବୋଲି ସେମାନେ ବିଶ୍ୱାସ କରନ୍ତି ।



## ଯୌବନର ଆରମ୍ଭ

**ଯୌବନପଥେ ଯୁବକ—** ଆଗରୁ କୁହାଯାଇଛି ଯେ ଯୌବନର ଆରମ୍ଭରେ ଯୁବକ ପକ୍ଷେ ଆଶାର ସୀମା ବଢ଼ିଯାଏ, ମନରେ ଚଞ୍ଚଳତା ଓ ଅସ୍ଥିରତା ଦେଖାଦିଏ । ଯୌନସମ୍ବନ୍ଧୀୟ ବିଷୟ-ମାନଙ୍କରେ ଓ ପ୍ରେମାଳାପରେ ତାହାର ଆଗ୍ରହ ବଢ଼େ । ଏହି ସମୟରେ କିଶୋର ବା ବାଳକର ମାନସିକ ଓ ଶାରୀରିକ ଅବସ୍ଥାରେ ବିଶେଷ ପରିବର୍ତ୍ତନ ଆସେ ଏବଂ ଭାବନାଶକ୍ତି ବୃଦ୍ଧି ହୁଏ । ତାହାର ଯୌନଯନ୍ତ୍ର-ଗୁଡ଼ିକ ବର୍ଦ୍ଧିତ ହୁଅନ୍ତି । ସ୍ୱରର ସ୍ୱର ଭାଙ୍ଗିଯାଇ ଗମ୍ଭୀର ହୁଏ । ମୁହଁ, କାଖ ଓ ଲିଙ୍ଗମଣ୍ଡଳରେ ଲୋମ ଉଠିବା ଆରମ୍ଭ ହୁଏ । ନିଶ ଗଜୁରି ଉଠେ ଓ ଶରୀରରେ ମଧ୍ୟ ଲୋମ ଉଠିବା ଆରମ୍ଭ ହୁଏ । ଯୌନଯନ୍ତ୍ରଗୁଡ଼ିକ ବର୍ଦ୍ଧିତ ହେବା ଯୋଗୁଁ ଯୌନତୃପ୍ତି ବେଳେ ଲିଙ୍ଗରୁ ରସ ନିଃସୃତ ହୁଏ । ଯୌନଯନ୍ତ୍ରଗୁଡ଼ିକ କ୍ରିୟାଶୀଳ ହେବା ଯୋଗୁଁ ଯୌନ ପ୍ରବୃତ୍ତି ବୃଦ୍ଧି ହୁଏ ଓ ଏହା ଯୁବକର ଶାରୀରିକ ଓ ମାନସିକ କ୍ଷେତ୍ରରେ ପ୍ରଭାବ ବିସ୍ତାର କରେ ।

ଏହି ବୟସରେ ଯୁବକ ଓ ଯୁବତୀମାନେ ଚିନ୍ତା ନ ପଡ଼ିଲେ ମଧ୍ୟ ନିଜ ଭିତରେ ଦଗ୍ଧ ହୋଇ ରହନ୍ତି । ଏହି ସମୟରେ ହିଁ ସେମାନଙ୍କର ଚିତ୍ର ଆଙ୍କିବା ବା କବିତା ଲେଖିବା ଆରମ୍ଭ ହୁଏ । ସେମାନଙ୍କ ଚେଷ୍ଟା ଓ ସେଥିରେ ବିଫଳ ହେବା ଏଥି ସକାଶେ ବିଷୟବସ୍ତୁ ବା ଇନ୍ଧନ ଯୋଗାଇ ଦିଏ ।

ଯୌନଗ୍ରନ୍ଥିଗୁଡ଼ିକ କ୍ରିୟାଶୀଳ ହେବା ପରେ ସେଗୁଡ଼ିକରୁ ବିଭିନ୍ନ ରକମ ରସ ନିର୍ଗତ ହୁଏ । ଏଥିରୁ କେତେକ ରକମ ରସ (Hormone) ରକ୍ତରେ ମିଶି ଦେହର ଶିରାପ୍ରଶିରାରେ ବହିଯାନ୍ତି । ରସମିଶ୍ରିତ ରକ୍ତ ମସ୍ତିଷ୍କରେ ପ୍ରବାହିତ ହେବା ଦ୍ୱାରା ଯୁବକର ମନ ରସ ଓ ରଙ୍ଗ ପ୍ରତି ଆକୃଷ୍ଟ ହୁଏ । ମସ୍ତିଷ୍କରୁ ମେରୁଦଣ୍ଡ ଦେଇ ( Spinal Cord ) ଆଦେଶଗୁଡ଼ିକ ଶରୀରର ନିର୍ଦ୍ଦିଷ୍ଟ ଅଙ୍ଗରେ ପହଞ୍ଚିଯାଏ । ଫଳରେ ରକ୍ତ ଜୋରରେ ସଞ୍ଚାଳିତ ହୁଏ ଓ ମାଂସପେଶୀଗୁଡ଼ିକ ସକ୍ରିୟ ହୋଇଉଠନ୍ତି;

ତେଣୁ ଲିଙ୍ଗ ଶକ୍ତ ହୋଇଉଠେ । ଏହି ସମସ୍ତ ମଧ୍ୟରେ ଶରୀରରେ ଅନେକ କିଛି ଘଟିଥାଏ । କିନ୍ତୁ ସାଧାରଣରେ ବୁଝିବା ପାଇଁ ଏହା ସଂକ୍ଷେପରେ ଦିଆଗଲା । ଏଥିରୁ ଜଣାଗଲା ଯେ କେବଳ ବାହ୍ୟ ଉତ୍ତେଜକ ଏହି ସବୁ କାର୍ଯ୍ୟ କରାଏ । ଯୁବକ ପକ୍ଷେ କୌଣସି ସୁନ୍ଦରୀ ନାରୀକୁ ଦେଖିବା ବା କୌଣସି ସୁନ୍ଦରୀ ନାରୀର ସଂସ୍ପର୍ଶରେ ଆସିବା ଦ୍ୱାରା ଏହିପରି ହୁଏ ।

ଯୌବନର ଆରମ୍ଭରେ ଯୌନଶକ୍ତିର ବ୍ୟବହାର ନ ହୋଇ ସଞ୍ଚିତ ହୋଇରହିଥିବାରୁ ଯେ କୌଣସି ସାଧାରଣ ଓ ଆନୁଷଙ୍ଗିକ ଯୌନ ସମ୍ବନ୍ଧୀୟ ଘଟଣାରେ ମଧ୍ୟ ଲିଙ୍ଗ ଶକ୍ତ ହୋଇଉଠେ । ଏହି ବୟସରେ ଯୁବକମାନଙ୍କର ସ୍ୱପ୍ନାବସ୍ଥାରେ ସ୍ଖଳନ ହୁଏ, ଯାହାକୁ ସ୍ୱପ୍ନଦୋଷ କହନ୍ତି । ସ୍ୱପ୍ନାବସ୍ଥାରେ ସ୍ୱପ୍ନ ଦେଖି ଯୁବକମାନେ ଯୌନତୃପ୍ତିରେ ପହଞ୍ଚିପାରନ୍ତି ଓ ସେମାନଙ୍କର ସ୍ଖଳନ ମଧ୍ୟ ହୁଏ । ସ୍ୱପ୍ନାବସ୍ଥାରେ ସ୍ଖଳନ ହେବା ବିଶେଷ କ୍ଷତିକାରକ ନୁହେଁ, କାରଣ ଏହା ଦ୍ୱାରା ଶରୀରରେ ସଞ୍ଚିତ ହୋଇଥିବା ବଳକା ରସର ନିର୍ଗମ ହୁଏ । ସମୟେ ସମୟେ ଯୁବକମାନଙ୍କର ସପ୍ତାହରେ ଦୁଇ ବା ତିନି ଥର ସ୍ୱପ୍ନଦୋଷ ହେଉଥିବାର ଦେଖାଯାଇଛି ।

ନାରୀମାନଙ୍କର ଯେପରି ମାସିକ ରଜଃସ୍ରାବ ହୁଏ ସେହିପରି ପୁରୁଷମାନଙ୍କର ମାସିକ ହୁଏ କି ନାହିଁ ବୋଲି ପ୍ରଶ୍ନ ଉଠେ । ଯୌନବିତ୍-ମାନେ କହନ୍ତି ଯେ ପୁରୁଷମାନଙ୍କର ସେପରି କିଛି ନିର୍ଦ୍ଦିଷ୍ଟ ଭାବେ ଜଣା ନ ଗଲେ ମଧ୍ୟ କେତେକ ଋତୁରେ ପୁଣି ବସନ୍ତ ଋତୁରେ କାମୋତ୍ତେଜନା ବୃଦ୍ଧି ପାଇବା ଲକ୍ଷ୍ୟ କରାଯାଇଛି ।

ପ୍ରଥମ ଯୌବନର ଆରମ୍ଭରୁ ଯୌବନପ୍ରାପ୍ତି ପର୍ଯ୍ୟନ୍ତ ଯୁବକ ଓ ଯୁବତୀମାନଙ୍କର ଯୌନଶକ୍ତିର ଅବସ୍ଥା ଶାରୀରିକ ଗଠନ, ଜଳବାୟୁ, ବଂଶପରମ୍ପରା ଉପରେ ବିଶେଷଭାବେ ନିର୍ଭର କରେ । ଆଦିବାସୀମାନଙ୍କ ପକ୍ଷେ ଯୌନକ୍ରିୟାରେ ସେପରି କିଛି ସାମାଜିକ ପ୍ରତିବନ୍ଧକ ରହେ ନାହିଁ । ଯୁବକମାନେ ଯୌନକ୍ଷମ ହେବା ସଙ୍ଗେ ସଙ୍ଗେ ନିଜର ସଙ୍ଗିନୀ ବାଛି ନେଇଥାନ୍ତି । କିନ୍ତୁ ସଭ୍ୟ ଜଗତରେ ଏହି ରକମ ସରଳତା ସହଜ ନୁହେଁ । ପ୍ରେମ ଓ ସ୍ନେହର ସମାଜରେ ସ୍ଥାନ ରହେ । ପ୍ରଥମ ଯୌବନରେ ପ୍ରେମ ଓ ସ୍ନେହ ଅନୁଭବ କରିବା ସକାଶେ 'ମାନସିକ ଅବସ୍ଥାର ଉନ୍ନତି ହୋଇ ନ ଥାଏ । ଲିଙ୍ଗ ଶକ୍ତ ହୋଇ ଫୁଲି ଉଠିବା, ଶୁକ୍ର ନିର୍ଗମ

ହେବା ବା ମୈଥୁନରେ ରତ ହେବା ପ୍ରଭୃତି ପୂର୍ଣ୍ଣ ଯୌବନପ୍ରାପ୍ତି କିମ୍ବା ଉନ୍ନତ ମାନସିକ ଅବସ୍ଥାର ଲକ୍ଷଣ ନୁହେଁ, ଯେଉଁ ଅବସ୍ଥାରେ ସ୍ନେହ ଓ ପ୍ରେମ ଯୁବକ ଅନୁଭବ କରିପାରିବ । ସମାଜ ସ୍ନେହ ଓ ପ୍ରେମକୁ ଉଚ୍ଚ ଆସନ ଦିଏ । ଏହା ଫଳରେ ଅନେକ ଦିନ ପର୍ଯ୍ୟନ୍ତ ଯୁବକମାନେ ଅବିବାହିତ ରହିବାକୁ ବାଧ୍ୟ ହୁଅନ୍ତି । ଦୀର୍ଘଦିନ ପର୍ଯ୍ୟନ୍ତ କାମୋତ୍ତେଜନାକୁ ଦାବି ରଖିବା ଦ୍ୱାରା ସମୟେ ସମୟେ ଉତ୍ତେଜନା ଏପରି ବୃଦ୍ଧି ହୁଏ ଯେ ତାହା ଶାରୀରିକ ଓ ମାନସିକ ସ୍ୱାସ୍ଥ୍ୟରେ ବାଧା ଦିଏ ।

**ଯୌବନପଥେ କିଶୋରୀ**—ସାଧାରଣ ମତରେ ବାଳିକା ପ୍ରଥମ ରଜଃସ୍ରାବ ଠାରୁ ଯୌବନରେ ପଦାର୍ପଣ କରେ ବୋଲି ବିଚାର କରନ୍ତି । ସେହି ଦିନଠାରୁ ଜୀବନର ଗତିପରିବର୍ତ୍ତନ ହୁଏ । ଶରୀର ଭିତରେ ଯୌନଗ୍ରନ୍ଥିଗୁଡ଼ିକ ପୂର୍ଣ୍ଣମାତ୍ରାରେ କାମ ଆରମ୍ଭ କରନ୍ତି । ଅଙ୍ଗ-ପ୍ରତ୍ୟଙ୍ଗ ପୂର୍ଣ୍ଣମାତ୍ରାରେ ବର୍ଦ୍ଧିତ ହେବା ପର୍ଯ୍ୟନ୍ତ ଧାରାବାହିକ ଭାବେ ତାହାର ଶରୀର ଭିତରେ ପରିବର୍ତ୍ତନ ଚାଲେ । ଯେଉଁ ବାଳିକାର ଶରୀରରେ ବାଳକ ଶରୀର ଠାରୁ ପୂର୍ବେ ବିଶେଷ ପାର୍ଥକ୍ୟ ଦେଖାଯାଉ ନ ଥିଲା, ତେର ବର୍ଷ ବୟସ କିମ୍ବା ପ୍ରଥମ ରଜଃସ୍ରାବ ବେଳକୁ ତାହାର ବାହ୍ୟ ଶରୀରରେ ବହୁତ ପରିବର୍ତ୍ତନ ଲକ୍ଷ୍ୟ କରାଯାଏ । ବାଳକମାନଙ୍କ ଠାରୁ ସେ ସମ୍ପୂର୍ଣ୍ଣ ରୂପେ ପୃଥକ୍ ହୋଇ ବାହାରି ପଡ଼େ । ତାହାର ବଳ ଓ ଶକ୍ତି ବର୍ଦ୍ଧିତ ହୋଇ ଶରୀର ବୃଦ୍ଧି ପାଉଥିବା ବେଳେ ସୌଷ୍ଠବ ଓ ଲାଳିତ୍ୟ, ଯାହା କି ନାରୀମାନଙ୍କ ଲକ୍ଷଣ, ତାହା ପ୍ରତ୍ୟେକ ଅଙ୍ଗରେ ଫୁଟିଉଠେ । ଏହି ସମୟରେ କଣ୍ଠସ୍ୱର ବଦଳି କୋମଳ ହୋଇଆସେ । ଯୋନିମଣ୍ଡଳରେ ଚର୍ବି ଜମିଆସେ ବା ଚର୍ବିପଟିର ଆରମ୍ଭ ହୁଏ ।

କୈଶୋର ଅବସ୍ଥା ପ୍ରାୟ ବାରବର୍ଷରେ ଆରମ୍ଭ ହୋଇ ବାଇଶି ବର୍ଷ ବେଳକୁ ଯୁବାବସ୍ଥା ପହଞ୍ଚେ । କିନ୍ତୁ ବାଳିକାମାନଙ୍କ ପକ୍ଷେ ଯୁବାବସ୍ଥା ପ୍ରାୟ ଷୋଳ ବର୍ଷ ବୟସ ବେଳକୁ ପହଞ୍ଚିଯାଏ । କିଶୋର ଓ କିଶୋରୀ ଅବସ୍ଥାରେ ଯୌନ ଅଙ୍ଗଗୁଡ଼ିକ ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ଯୌନ ପ୍ରବୃତ୍ତି ଓ ଯୌନ ଭାବନା ଆରମ୍ଭ ହୁଏ । ପୁଣି ଆତ୍ମମର୍ଯ୍ୟାଦା, ଆତ୍ମନିର୍ଭରଶୀଳତା ଓ ଗର୍ବ ମନରେ ଆସେ । ଯେଉଁ ବାଳିକାଟି ପୂର୍ବରେ ସମବୟସର ବାଳକମାନଙ୍କ ସହିତ ଏକାଠି ବସି ଖେଳ ଖେଳୁଥିଲା, ଏହି ବୟସରେ

ପଦାର୍ପଣ କରିବା ପରେ ତାହାର ଲଜ୍ଜା ପ୍ରଭୃତି ସ୍ୱଭାବ ବୃଦ୍ଧି ପାଇବା ଯୋଗୁଁ ସେ କିଶୋରମାନଙ୍କ ଠାରୁ ଦୂରେଇ ରହେ । ସେହିପରି କିଶୋର ମଧ୍ୟ କିଶୋରୀ ଠାରୁ ଦୂରେଇ ରହେ । ବାହାରେ ଉଭୟେ ପରସ୍ପର ଠାରୁ ଦୂରେଇ ରହିଲେ ସୁଦ୍ଧା ମନରେ ଉଭୟେ ପରସ୍ପରର ସଙ୍ଗ ଇଚ୍ଛା କରିଥାନ୍ତି । ଗର୍ବ ଓ ଲଜ୍ଜା ଏହି ବୟସରେ ବୃଦ୍ଧି ହୁଏ ଏବଂ ସାମାନ୍ୟ କଥାରେ ସେମାନେ ଉତ୍ତେଜିତ ହୋଇପଡ଼ନ୍ତି । କଳ୍ପନା, ସ୍ୱପ୍ନ, ଉତ୍ସାହ, ସାହସ ପ୍ରଭୃତି ଗୁଣ ସେମାନଙ୍କର ଆରମ୍ଭ ହୁଏ ।

ଯୌବନରେ ପଦାର୍ପଣ କରିବାର କେତେକ ଦିନ ପୂର୍ବରୁ ଜଣେ ଅନ୍ୟ ଲିଙ୍ଗର ସଙ୍ଗୀ ଖୋଜେ । ଯୌନ ପ୍ରବୃତ୍ତିରେ ଯୁବକ ହୃଦୟରେ ଶକ୍ତିର ପ୍ରୟୋଗ ଓ ଯୁବତୀ ହୃଦୟରେ ନମ୍ରତା ଅନୁଭୂତ । ଯୌନତୃପ୍ତି ନିମନ୍ତେ ଯୌନ ସଙ୍ଗମରେ ଇଚ୍ଛା ରହେ । ଶରୀରର ଅନ୍ୟାନ୍ୟ ଉତ୍ତେଜନା କେନ୍ଦ୍ର-ଗୁଡ଼ିକ ଯୌନତୃପ୍ତି ନ ଦେଇ ଏହି ବୟସ ପରେ ଉତ୍ତେଜନା କେନ୍ଦ୍ର ହିସାବରେ ସାହାଯ୍ୟ କରନ୍ତି ।

ବାହ୍ୟ ଜନନେନ୍ଦ୍ରିୟ ବର୍ଦ୍ଧିତ ହେବା, ନିତମ୍ବ ଚୌଡ଼ା ହୋଇ ବୃଦ୍ଧି ପାଇବା, ଜନନେନ୍ଦ୍ରିୟରେ ଲୋମ ଗଜୁରି ଉଠିବା, ବକ୍ଷରେ ସ୍ତନ ଉଚ୍ଚ ହୋଇ ଆସିବା, ଶରୀରରେ ଲାବଣ୍ୟ ଓ ଗୃଳରେ ମାଧୁର୍ଯ୍ୟ ବଢ଼େ । ଏହି ସମସ୍ତ ବୃଦ୍ଧି ହୋଇ ବାଳିକାକୁ ଯୁବତୀରେ ପରିଣତ କରେ । ଯୁବତୀ ଭବିଷ୍ୟତରେ ଯେପରି ମା ଓ ସ୍ତ୍ରୀ ରୂପରେ କାର୍ଯ୍ୟ କରିବାକୁ କ୍ଷମ ହେବ, ସେହି ଲକ୍ଷ୍ୟ ଦେଇ ପ୍ରକୃତି ତାହାକୁ ଗଢ଼ିନିଏ । ପୂର୍ବର କଣ୍ଠସ୍ୱର ବଦଳି-ଯାଇ ସେଥିରେ ଲାଳିତ୍ୟ ଆସେ ।

ପ୍ରଥମ ଯୌବନର ଆରମ୍ଭ ଠାରୁ ଅର୍ଥାତ୍ ପ୍ରଥମ ରଜଃସ୍ରାବ ପରଠାରୁ ପୂର୍ଣ୍ଣ ଯୌବନର ପ୍ରାପ୍ତି ସମୟ ପର୍ଯ୍ୟନ୍ତ ଶାରୀରିକ ସମୃଦ୍ଧି ଉପରେ ଗଠନ, ବଂଶପରମ୍ପରା, ଜଳବାୟୁ ପ୍ରଭୃତିର ବିଶେଷ ପ୍ରଭାବ ରହେ । ଏହି ସମୟ ଠାରୁ ବିବାହ ପର୍ଯ୍ୟନ୍ତ ନାରୀମାନଙ୍କର ଜୀବନ ଅତୃପ୍ତିକର । ସେମାନଙ୍କ ଚିନ୍ତାଧାରା ବଦଳିବାବେଳେ ସଙ୍ଗୀତ, ଥିଏଟର, ନାଚ, ଉପନ୍ୟାସ, ଛବି ପ୍ରଭୃତି ପ୍ରତି ଆକୃଷ୍ଟ ହୋଇଥାନ୍ତି ଏବଂ ଏହିଗୁଡ଼ିକ ସେମାନଙ୍କ ଜୀବନକୁ ସରସ କରିଥାଏ । ଏହା ଫଳରେ ସେମାନଙ୍କ ମନରେ ଯୌନମିଳନର ଆକାଙ୍କ୍ଷା ବଢ଼େ । କିନ୍ତୁ ସମାଜ ଏଥିରେ ବାଧା

ସୃଷ୍ଟି କରେ ଓ ସମାଜର ପୁରୁଖା ଲୋକେ କହନ୍ତି ଯେ—"ବିବାହ ପୂର୍ବରୁ ଯୌନମିଳନ ଉଚିତ ନୁହେଁ ।" ସେହେତୁ ଏହି ବୟସ ଓ ସମୟରେ ନାରୀ ଭୋଗ ବିଳାସ, ଆମୋଦ ପ୍ରମୋଦରେ ମାତିବା, କୋମଳ ଶେଯରେ ଶୋଇବା ଉଚିତ ନୁହେଁ । ଠିକ୍‌ଭାବେ ଶାରୀରିକ ପରିଶ୍ରମ କରିବା ଉଚିତ ଯାହାଫଳରେ ରାତିରେ ଶୋଇବାବେଳେ ଦୁଶ୍ଚିନ୍ତା ନ ରହି ଶୀଘ୍ର ନିଦ ଆସିବ । ଏହି ବୟସର ଝିଅମାନଙ୍କୁ ବାପମା'ମାନେ ନିଜ ପାଖରେ ନ ଶୁଆଇ ଦୂରରେ ରହି ନଜର ରଖିବା ଉଚିତ ।

ସାଧାରଣତଃ ପନ୍ଦର ଠାରୁ ଅଠର ବା କୋଡ଼ିଏ ବର୍ଷ ବୟସ ମଧ୍ୟରେ ନାରୀମାନେ ଯୌବନପ୍ରାପ୍ତ ହୁଅନ୍ତି । ଏହା ପରେ ସେମାନେ ଯୌନସଙ୍ଗମ, ମାତୃତ୍ୱ ପ୍ରଭୃତି କାର୍ଯ୍ୟ ନିମନ୍ତେ ଯୋଗ୍ୟ ହୋଇଥାନ୍ତି । ଏହି ବୟସରେ ସେମାନଙ୍କ ଶାରୀରିକ ସୌନ୍ଦର୍ଯ୍ୟ ଓ ଶକ୍ତି ପୂର୍ଣ୍ଣ ଭାବରେ ବୃଦ୍ଧି ହୋଇ ସେମାନଙ୍କ ଯୌନ ଯୋଗ୍ୟତା ଦର୍ଶାଇଦିଏ ।

ଏହି ସମୟରେ ନାରୀର ସ୍ୱାସ୍ଥ୍ୟ ଓ ସୌନ୍ଦର୍ଯ୍ୟ ଉତ୍ପାଦନ ଯନ୍ତ୍ରଗୁଡ଼ିକର କାର୍ଯ୍ୟକାରିତା ଯୋଗୁଁ ବାଧା ପାଇବାର ସମ୍ଭାବନା ବେଶି । ପ୍ରଥମ ଯୌନସଙ୍ଗମ ଯାହା କି ପ୍ରତ୍ୟେକ ଯୁବତୀ ପକ୍ଷେ କଷ୍ଟଦାୟକ ଓ ଆଘାତ ଦିଏ, ସେଥିରୁ କେତେକ ଯୁବତୀ ଜୀବନସାରା ମୁକ୍ତି ପାଆନ୍ତି ନାହିଁ । ଯୌନ ଉତ୍ତେଜନା ଯୋଗୁଁ ବାଛ ବିଚାର ନ ରହି ଯୌନସଙ୍ଗମ କରିବା ଯୋଗୁଁ ରତିରୋଗ ଜନ୍ମମଣିର ଭୟ ରହେ । ଗର୍ଭସ୍ଥିର ହେଲେ ନାନା ରକମ ଅସୁବିଧା ଓ ଅସ୍ୱସ୍ତି ଆଣେ । ଏହି ବୟସରେ ଜୀବନ ନିର୍ବାହ ପନ୍ଥା ମଧ୍ୟ ପ୍ରତ୍ୟେକ ଯୁବତୀ ପକ୍ଷେ ସହଜ ହୁଏ ନାହିଁ । ଏହା ପରେ ସ୍ୱାମୀ ପ୍ରତି କର୍ତ୍ତବ୍ୟ, ଛୁଆପିଲାଙ୍କ ଜଞ୍ଜାଳ ପ୍ରଭୃତି ଅନେକ ରକମର ଶାରୀରିକ ଓ ମାନସିକ ପରିବର୍ତ୍ତନ ଆସେ । କେତେକ ଯୁବତୀଙ୍କର ଏହି ସମୟରେ ଏତେ ଜୋର ଯୌନ ଉତ୍ତେଜନା ବୃଦ୍ଧି ହୁଏ ଯେ ସେମାନେ ଘର, ସ୍ୱାମୀ, ଛୁଆପିଲା ପ୍ରଭୃତିଙ୍କୁ ଭୁଲିଯାଇ ଯୌନ ତୃପ୍ତି ନିମନ୍ତେ ଉପାୟ ଖୋଜି ବସନ୍ତି ।

ବାଳିକାମାନଙ୍କର ରୂପାନ୍ତରିତ ହେବାର ଏହି ସମୟ ସମସ୍ତଙ୍କ ପକ୍ଷେ ସମାନ ନୁହେଁ । କେତେକ ବାଳିକା ଅଳ୍ପ କେତେ ମାସ ଭିତରେ ଯୌବନପ୍ରାପ୍ତ ହେବାବେଳେ ଆଉ କେତେକ ବାଳିକାଙ୍କୁ କେତେ ବର୍ଷ

ଲାଗିଯାଏ । କିନ୍ତୁ ଏହି ରୂପାନ୍ତରିତ ସମସ୍ତ ଶେଷରେ ବାଳିକା ପ୍ରଭ ଯୌବନରେ ପଦାର୍ପଣ କରେ ଓ ଯୁବତୀ ସ୍ୱଭାବରେ ପରିଚିତ ହୁଏ । ଏହା ପରେ ଯୁବତୀର ଜୀବନରେ ସେତେ ପରିବର୍ତ୍ତନ ଆସେ ନାହିଁ । କିନ୍ତୁ ପୂର୍ବର ଯେଉଁ କେତେକ ଅଳିଆ ଦାଗ ମନରେ ରହିଥାଏ, ସେହିଗୁଡ଼ିକ ତାର ଭବିଷ୍ୟତ ଜୀବନରେ ପ୍ରଭାବ ପକାଇଥାନ୍ତି ।

ଯୌବନପ୍ରାପ୍ତି ପରେ ଦୀର୍ଘକାଳ ଅବିବାହିତ ରହିବା ଯୁବତୀମାନଙ୍କ ପକ୍ଷେ ଅନୁଚିତ । ଦୀର୍ଘ ଦିନ ଅବିବାହିତ ହୋଇ ରହିବା ଦ୍ୱାରା ସେମାନେ ବିବାହସୁଖ ଓ ମାତୃତ୍ୱରୁ ବଞ୍ଚିତ ହୁଅନ୍ତି । ଏହା ଫଳରେ ସେମାନଙ୍କର ବାସ୍ତବ ଓ କଳ୍ପନା ଭିତରେ ସାମଞ୍ଜସ୍ୟ ରହେ ନାହିଁ । ଏହି ଅବସ୍ଥାରେ ଯୁବତୀମାନେ ଯୁବକମାନଙ୍କୁ ସ୍ନେହ କରିବା ସ୍ୱାଭାବିକ । କିନ୍ତୁ ଏହି ସୁଖ ଓ ସ୍ନେହରୁ ବଞ୍ଚିତ ହେବା ଯୋଗୁଁ କେତେକ ଯୁବତୀଙ୍କ ସ୍ନେହ ବିଶେଷତଃ ପଶୁ, ପକ୍ଷୀ ଓ ପିଲାମାନଙ୍କ ପ୍ରତି ଗତି କରେ ଓ ସେଥିର ସୁବିଧା ପାଇଲେ ସେମାନେ ସମସ୍ତ ସ୍ନେହ ଢାଳି ଦେଇଥାନ୍ତି । ଏହିପରି ଅବିବାହିତା ଯୁବତୀମାନଙ୍କୁ 'ବୃଦ୍ଧା କୁମାରୀ' (Old maid) କୁହାଯାଏ ।

ଅବିବାହିତା ଯୁବତୀମାନଙ୍କ ଯୌନମିଳନର ଅଭାବ ଯୋଗୁଁ ଯେଉଁ ମାନସିକ ଓ କାମୋତ୍ତେଜନା ସୃଷ୍ଟି ହୁଏ ସେଥିର ନିୟନ୍ତ୍ରଣ କରିବା ଲାଗି ଅନେକ ରକମ ସାମାଜିକ ପନ୍ଥା ରହିଛି । ଯଥା—ନାଚ, ଗାନ, ପୂଜା, ଉପାସନା, ଖେଳ ପ୍ରଭୃତି । ଏହି ପନ୍ଥାଗୁଡ଼ିକ ଉତ୍ତେଜନାକୁ ନିୟନ୍ତ୍ରଣ କରିଥାନ୍ତି । କିନ୍ତୁ ଯେଉଁ ଯୁବତୀମାନଙ୍କର ଉତ୍ତେଜନାକୁ ପ୍ରତିରୋଧ କରିବା ଶକ୍ତି କମ୍, ସେମାନଙ୍କଠାରେ ଏହି ସାମାଜିକ ବାଧା ଦ୍ୱନ୍ଦ୍ୱ ସୃଷ୍ଟି କରି ମାନସିକ ବିକାର ଆଣେ । ମାନସିକ ବିକାର ଯୋଗୁଁ କେତେକ ଅବିବାହିତ ଯୁବତୀଙ୍କ ଠାରେ ଅରୁଚି, ମୁଣ୍ଡବ୍ୟଥା, ଉନ୍ମାଦ ପ୍ରଭୃତି ରୋଗ ଦେଖାଦିଏ । ଆଉ କେତେକ ଯୁବତୀଙ୍କ ଠାରେ ଯୌନସଙ୍ଗମ ନିମନ୍ତେ ବିମୁଖତା ବା ଭୟ ବା ଅତୃପ୍ତି ରହିବା ମଧ୍ୟ ଦେଖାଦିଏ ।

କେତେକ କାରଣରୁ ଯୁବତୀମାନେ ଯୌନସଙ୍ଗମ ନିମନ୍ତେ ଭୟ କରିଥାନ୍ତି । ସେଥିରୁ (୧) ଯୌନସଙ୍ଗମ ବେଳେ କୁମାରୀଚ୍ଛଦର ପ୍ରତିରୋଧ ଯୋଗୁଁ ଯୌନସଙ୍ଗମରେ କଷ୍ଟ, (୨) ପୁରୁଷର ପାଶବିକତା ବା ଦୁର୍ଦ୍ଧାନ୍ତ

ଶରୀର, (୩) ଲିଙ୍ଗର ଅସାମଞ୍ଜସ୍ୟ, (୪) ଗର୍ଭସଞ୍ଚାରର ଯୋଗୁଁ ସାମାଜିକ ଭୟ, (୫) ଯୌନ ବା ରତିରୋଗର ଭୟ ପ୍ରଧାନ । ଏହି ରକମ ଭୟ ରହିବାଯାଏ ସେମାନେ ଯୌନସଙ୍ଗମରେ ତୃପ୍ତିଲାଭ କରନ୍ତି ନାହିଁ । କିନ୍ତୁ ଉପଯୁକ୍ତ ପୁରୁଷର ସମ୍ପର୍କରେ ଆସିବା ଦ୍ୱାରା ସେମାନଙ୍କର ଏହି ଭୟ ଦୂର ହୁଏ ଓ ଜୀବନ ସୁଖମୟ ହୋଇଉଠେ ।

କିଶୋରମାନଙ୍କ ଅପେକ୍ଷା କିଶୋରୀମାନେ ଶୀଘ୍ର ଯୌବନରେ ପଦାର୍ପିଲେ ମଧ୍ୟ ସେମାନଙ୍କର ଯୌନ-ଉତ୍ତେଜନା-ନିରୋଧ-ଶକ୍ତି ବେଶି । ସେହେତୁ କିଶୋରୀ ପ୍ରଥମ ଅବସ୍ଥାରେ ଯୌନକ୍ରିୟା ନିମନ୍ତେ ଅନିଚ୍ଛା ଭାବ ପ୍ରକାଶ କରେ । ଦଶବର୍ଷ ଠାରୁ ଚଉଦ ବର୍ଷ ବୟସର ବାଳକମାନେ ଯେପରି ସମବୟସର ବାଳକମାନଙ୍କୁ ସଙ୍ଗୀ ଭାବେ ପାଇବା ପାଇଁ ଇଚ୍ଛା କରିଥାନ୍ତି, ସେହିପରି କିଶୋରୀମାନେ ସମବୟସର କିଶୋରୀମାନଙ୍କ ସଙ୍ଗ ଇଚ୍ଛା କରିଥାନ୍ତି । କିନ୍ତୁ ଚଉଦ ବର୍ଷ ବୟସ ଠାରୁ ଷୋଳ ବର୍ଷ ବୟସ ପର୍ଯ୍ୟନ୍ତ ଯୌନବିତ୍ ଷ୍ଟିକଲ (Stekel) ଙ୍କ ମତରେ ସେମାନଙ୍କ ଯୌନ ଉତ୍ତେଜନା ବୃଦ୍ଧି ପାଏ । ସେହେତୁ ଏହି ବୟସରେ ସେମାନେ ଯୁବକ ସହିତ ଘରୁ ଲୁଚି ଚାଲିଯିବା ଅନେକ ସମୟରେ ଦେଖାଯାଏ ।



## ଜନନେନ୍ଦ୍ରିୟ

ମନୁଷ୍ୟ ଶରୀରର ଯୌନଯନ୍ତ୍ରଗୁଡ଼ିକ ଅନ୍ୟାନ୍ୟ ଯନ୍ତ୍ରଗୁଡ଼ିକ ଠାରୁ ଉଦ୍ଦେଶ୍ୟ ଓ କାର୍ଯ୍ୟକ୍ରମ ନେଇ ସମ୍ପୂର୍ଣ୍ଣ ଭିନ୍ନ । ଅନ୍ୟାନ୍ୟ ଯନ୍ତ୍ରଗୁଡ଼ିକ ଶରୀରର ସମୃଦ୍ଧି ଲାଗି କାର୍ଯ୍ୟ କରୁଥିବା ବେଳେ ଯୌନଯନ୍ତ୍ରଗୁଡ଼ିକ କେବଳ ବଂଶବୃଦ୍ଧି ଲାଗି ବ୍ୟବହୃତ ହୁଅନ୍ତି । ଯୌନ ଓ ଉତ୍ପାଦନ ଯନ୍ତ୍ରଗୁଡ଼ିକ ଶରୀରର ଅନ୍ୟାନ୍ୟ ଯନ୍ତ୍ରଗୁଡ଼ିକ ସହିତ ବରାବର ସମ୍ବନ୍ଧ ରଖି ସେଗୁଡ଼ିକ ଉପରେ ପ୍ରଭାବ ପକାଇଥାନ୍ତି । ଶିଶୁ ଜନ୍ମ ହେବାବେଳେ ମାତୃସ୍ତନରୁ କ୍ଷୀର ବାହାରିବା, ଅଣ୍ଡକୋଷର କ୍ଷତ ଘଟିଲେ ପୁରୁଷର ସ୍ୱଭାବ ବଦଳିବା ପ୍ରଭୃତି ଏହି ପ୍ରଭାବର ଦୃଷ୍ଟାନ୍ତ ମାତ୍ର ।

ସାଧାରଣରେ ଜାଣିବା ନିମନ୍ତେ ସମସ୍ତ ଯୌନ ଉତ୍ପାଦନ ଯନ୍ତ୍ରଗୁଡ଼ିକୁ ତିନି ଭାଗରେ ବିଭକ୍ତ କରାଯାଇ ପାରେ, ଯଥା—

୧ । **ଯୌନଗ୍ରନ୍ଥି ବା କୋଷ**—ଯେଉଁଗୁଡ଼ିକରୁ ପୁରୁଷପକ୍ଷେ ଶୁକ୍ରାଣୁ ଓ ନାରୀପକ୍ଷେ ଡିମ୍ବାଣୁ ଜାତ ହୁଏ ।

୨ । **ନାଳୀ**—ଯେଉଁ ରାସ୍ତା ଦେଇ ଶୁକ୍ରାଣୁ ବା ଡିମ୍ବାଣୁ ଉତ୍ପାଦନ ସକାଶେ ବାହାରକୁ ଆସନ୍ତି ।

୩ । **ବାହ୍ୟ ଜନନେନ୍ଦ୍ରିୟ**—ପୁରୁଷର ଲିଙ୍ଗ ନାରୀର ଯୋନି ଯାହାର ସାହାଯ୍ୟରେ ଶୁକ୍ରାଣୁ ଓ ଡିମ୍ବାଣୁ ଉତ୍ପାଦନ ସକାଶେ ମିଳିତ ହୁଅନ୍ତି । ଗର୍ଭକୋଷ କେବଳ ଶୁକ୍ର ଓ ଡିମ୍ବ ଏକାଠି ହୋଇ ସୁବିଧାରେ କେତେଦୂର ପର୍ଯ୍ୟନ୍ତ ବୃଦ୍ଧି ପାଇବା ନିମନ୍ତେ ରକ୍ଷା କରିଥାଏ ।

## ପୁରୁଷର ଜନନେନ୍ଦ୍ରିୟ

ପୁରୁଷର ଜନନେନ୍ଦ୍ରିୟ ବା ଯୌନଯନ୍ତ୍ରକୁ ତିନି ଭାଗରେ ବିଭକ୍ତ କରାଯାଇପାରେ । ଯଥା—(କ) ଶୁକ୍ରକୋଷ ଓ ଶୁକ୍ରାଣୁ (Testicles and Spermatozoa) (ଖ) ଶୁକ୍ରନାଳୀ (Seminal ducts) (ଗ) ଲିଙ୍ଗ ।

(କ) **ଶୁକ୍ରକୋଷ ଓ ଶୁକ୍ରାଣୁ**—ପୁରୁଷର ଜନନେନ୍ଦ୍ରିୟମାନଙ୍କ ମଧ୍ୟରେ ଶୁକ୍ରକୋଷ ପ୍ରଧାନ। ଶୁକ୍ରକୋଷ ଗ୍ରନ୍ଥି ଦୁଇଟି ଆକାରରେ ଡିମ୍ବାକୃତି। ଏହା ଚର୍ମଦ୍ୱାରା ଆବୃତ ହୋଇ ଲିଙ୍ଗର ମୂଳ ଭାଗରେ ଓହଳି ରହିଛି। ସାଧାରଣତଃ ବାମ-କୋଷଟି ଡାହାଣ କୋଷ ଅପେକ୍ଷା ସାମାନ୍ୟ ବଡ଼। ଏହି କୋଷ ଦୁଇଟିରେ ଅସଂଖ୍ୟ ଶୁକ୍ରାଣୁ ଉତ୍ପାଦନ ହୁଅନ୍ତି। ଗୋଟିଏ ସ୍ଖଳନରେ ଲିଙ୍ଗରୁ ଯେଉଁ ସିଂଘାଣି ସଦୃଶ ରସ ନିର୍ଗତ ହୁଏ ସେଥିରେ ସାଧାରଣତଃ କୋଡ଼ିଏ କୋଟି ଠାରୁ ପଚିଶ କୋଟି ପର୍ଯ୍ୟନ୍ତ ଶୁକ୍ରକୀଟ ପଦାକୁ ବାହାରି ଆସନ୍ତି। ପ୍ରତ୍ୟେକ ସ୍ଖଳନରେ ଶୁକ୍ରାଣୁର ସଂଖ୍ୟା ଠିକ୍ ରହେ ନାହିଁ। ଏହା ପୁରୁଷର ଶାରୀରିକ ଗଠନ ଉପରେ ନିର୍ଭର କରେ। କେତେଦିନ ବା ସପ୍ତାହ ବ୍ୟବଧାନରେ ଯୌନ-ସଙ୍ଗମ କଲାବେଳେ ଏହାର ସଂଖ୍ୟା ଅଧିକ ରହେ ଏବଂ ଗୋଟିଏ ଦିନରେ ଯୌନସଙ୍ଗମର ପୁନରାବୃତ୍ତି କଲାବେଳେ ଏହି ସଂଖ୍ୟା ହ୍ରାସ ହୁଏ। ତଥାପି ପୁନରାବୃତ୍ତି ସଙ୍ଗମ ସମୟରେ ଯେଉଁ ସ୍ଖଳନ ହୁଏ, ସେଥିରେ ପ୍ରାୟ ଦଶ କୋଟି ପର୍ଯ୍ୟନ୍ତ ଶୁକ୍ରାଣୁ ପଦାକୁ ବାହାରି ଆସିଥାନ୍ତି।

ଶୁକ୍ରକୀଟର ଡିମ୍ବାକୃତି ମୁଣ୍ଡକୁ ଗୋଟିଏ ଲାଞ୍ଜ ଲାଗିରହେ। ଏହି ସିଂଘାଣି ସଦୃଶ ରସରେ ବା ଯୋନିନାଳୀ ରସରେ ଗର୍ଭାଶୟ ମଧ୍ୟରେ ଗତି କଲାବେଳେ ଲାଞ୍ଜକୁ ହଲାଇ ରସ ମଧ୍ୟରେ ଅଗ୍ରସର ହୁଏ। ଗର୍ଭାଶୟରେ ଥିବା ଡିମ୍ବ ନିକଟରେ ପହଞ୍ଚିବା ପ୍ରତ୍ୟେକ ଶୁକ୍ରାଣୁର ଲକ୍ଷ୍ୟ। କେବଳ ଶକ୍ତିଶାଳୀ ଶୁକ୍ରକୀଟ ଡିମ୍ବାଣୁ ନିକଟରେ ପହଞ୍ଚିବାକୁ ସକ୍ଷମ ହୁଏ।

ଡିମ୍ବାଣୁଟି ଶୁକ୍ରାଣୁ ଠାରୁ ଆକାରରେ ବଡ଼। ଶୁକ୍ରାଣୁ ଡିମ୍ବାଣୁ ନିକଟରେ ପହଞ୍ଚିବା ମାତ୍ରେ ମୁଣ୍ଡ ସାହାଯ୍ୟରେ ତାହାକୁ ଫୋଡ଼ି, ବିନ୍ଧି ତା ଭିତରେ ପ୍ରବେଶ କରିବାକୁ ଚେଷ୍ଟା କରେ। ଡିମ୍ବାଣୁର ମଧ୍ୟ ବାଞ୍ଛିବା ଶକ୍ତି ଥାଏ। ଶୁକ୍ରକୀଟମାନେ ତାହା ନିକଟରେ ପହଞ୍ଚିବାବେଳେ ଡିମ୍ବାଣୁ ଚାରିପଟେ ଗୋଟିଏ ରକମ ପରଦା ଦ୍ୱାରା ଆବୃତ୍ତ ହୋଇଥାଏ। ଏହି ପରଦା ଭେଦ କରି ଡିମ୍ବାଣୁ ଭିତରେ ଶୁକ୍ରାଣୁମାନଙ୍କୁ ପ୍ରବେଶ କରିବାକୁ ହୁଏ। ଯେହେତୁ କେବଳ ଶକ୍ତିଶାଳୀ ଏବଂ ଚଞ୍ଚଳ ଥିବା ଶୁକ୍ରାଣୁମାନେ ଏହି ପରଦାକୁ ଭେଦ କରି ଡିମ୍ବାଣୁ ଭିତରେ ପ୍ରବେଶ କରିପାରିଥାନ୍ତି। ଗୋଟିଏ ଡିମ୍ବାଣୁ ଭିତରେ ଗୋଟିଏ ଶୁକ୍ରାଣୁ ପ୍ରବେଶ କଲାପରେ ଅନ୍ୟ ଶୁକ୍ରାଣୁମାନେ ସହଜରେ ତା ଭିତରକୁ ଆଉ ପ୍ରବେଶ

କରିପାରନ୍ତି ନାହିଁ । ସାଧାରଣତଃ ଗୋଟିଏ ଡିମ୍ବାଣୁରେ ଗୋଟିଏ ଶୁକ୍ରକୀଟ ପ୍ରବେଶ କରିବାରେ ସଫଳ ହୁଏ । କେବେ କପରି ଦୁଇଟି ବା ତତୋଧିକ ଏକାବେଳକେ ପ୍ରବେଶ କରନ୍ତି । ସେହେତୁ ନାରୀମାନେ ଯାଆଁଳା ବା ତିନି ବା ଚାରୋଟି ଛୁଆ ଏକାଥରକେ ପ୍ରସବ କରିବାର ଦେଖାଯାଏ । ଶୁକ୍ରାଣୁ ଡିମ୍ବାଣୁ ଭିତରେ ପ୍ରବେଶ କଲାବେଳେ ତାହାର ମୁଣ୍ଡ ଅଂଶଟି ଡିମ୍ବାଣୁ ଭିତରକୁ ଚାଲିଯାଇ ଲାଞ୍ଜ ଅଂଶଟି ବାହାରେ ରହିଯାଏ ।

ପ୍ରତ୍ୟେକ ଶୁକ୍ରକୀଟର ମୁଣ୍ଡଭାଗରେ ଗୁଣସୂତ୍ର ବା ଲିଙ୍ଗସୂତ୍ର ରହେ । ଯେଉଁ ଶୁକ୍ରାଣୁ ଡିମ୍ବାଣୁ ଭିତରେ ପ୍ରବେଶ କରେ ସେଥିରେ ଥିବା ଗୁଣସୂତ୍ର ଉପରେ ଆଗାମି ସନ୍ତାନର ଗୁଣ ବା ସ୍ୱଭାବ ନିର୍ଭର କରେ ।

ଜନ୍ମରୁ ଶୁକ୍ରକୋଷ ନ ଥିଲେ କିମ୍ବା ଯୌବନରେ ପଦାର୍ପଣ ପୂର୍ବରୁ ତାହା କୌଣସି କାରଣରୁ ନଷ୍ଟ ହୋଇଗଲେ କିମ୍ବା ଶିଶୁ ଅବସ୍ଥାରୁ କୌଣସି କାରଣରୁ ତାହା ବୃଦ୍ଧି ନ ପାଇଲେ ଗୌଣ ଯୌନ ସ୍ୱଭାବଗୁଡିକ ଶରୀରରେ ଫୁଟି ଉଠେ ନାହିଁ । ଶିଶୁ ଅବସ୍ଥାରୁ ଶୁକ୍ରକୋଷ ବୃଦ୍ଧି ନ ପାଇବା ସାଧାରଣତଃ ପିତାମାତାଙ୍କ ଦୋଷରୁ ହୁଏ ବୋଲି ଯୌନବିତ୍ ଡକ୍ଟର ହେରସଫିଲଡ୍ (Hirschfeld) ମତ ଦିଅନ୍ତି । ସେ ଦେଖିଛନ୍ତି ଯେ ଏହିପରି କେତେକ ବାଳକ ଯୌବନରେ ପଦାର୍ପଣ କରନ୍ତି ନାହିଁ । ଅଣ୍ଡକୋଷର ଗୋଟିଏ ଚିହ୍ନ ସ୍ୱରୂପ ସେମାନଙ୍କର ଖଣ୍ଡିଏ ହୁଗୁଳା ଚର୍ମ ଝୁଲି ରହେ ଓ ସେଥିରେ ଶୁକ୍ରକୋଷ ନ ଥାଏ । ବାଲ୍ୟ-କାଳର ଲିଙ୍ଗ ସେମାନଙ୍କର ଆଉ ବୃଦ୍ଧି ହୁଏ ନାହିଁ । ସେମାନେ ହସ୍ତ-ମୈଥୁନ କରି କେବେ କପରି ଯୌନତୃପ୍ତି ମଧ୍ୟ ପାଆନ୍ତି, କିନ୍ତୁ ଯୌନତୃପ୍ତି ବେଳେ ସେମାନଙ୍କର ସ୍ଖଳନ ହୁଏ ନାହିଁ ।

ଆଉ କେତେକଙ୍କର ଶରୀର ସାଧାରଣ ରକମ ବୃଦ୍ଧି ହୁଏ, କିନ୍ତୁ ସ୍ତନ, ଅଣ୍ଟା, କାନ୍ଧ ପ୍ରଭୃତି ନାରୀମାନଙ୍କ ଅନୁପାତରେ ରହେ । ଶରୀରରେ ପୁରୁଷଙ୍କ ପରି ସେତେ ଲୋମ ଉଠେ ନାହିଁ । କେବଳ କାଖତଳ ଓ ଲିଙ୍ଗମଣ୍ଡଳରେ ସାମାନ୍ୟ ଲୋମ ଉଠେ । ନିଶଦାଢ଼ି ମଧ୍ୟ ଉଠେ ନାହିଁ । ମୁଣ୍ଡର ବାଳ ପୁରୁଷଙ୍କ ଅନୁପାତରେ ଅଧିକ ବୃଦ୍ଧି ହୁଏ । ମୁହଁର ସୌନ୍ଦର୍ଯ୍ୟ ଠିକ ରହେ ନାହିଁ ଓ ଚର୍ମ ମୋଡ଼ ମୋଡ଼ ହେ । ଶରୀରର

ଚର୍ମ ନାରୀମାନଙ୍କ ପରି ଚିକ୍କଣ ରହେ । ସ୍ତନ, ତଳପେଟ, ମୁହଁ, ଅଣ୍ଟା, ଜଙ୍ଘ ଓ ନିତମ୍ବ ପ୍ରଭୃତିରେ ନାରୀମାନଙ୍କ ପରି ଚର୍ବି ଜମିଯିବା ଯୋଗୁଁ ଶରୀରର ଆକାର ଗୋଲେଇ ହୋଇ ରହେ । ମାଂସପେଶି-ଗୁଡ଼ିକ ଶକ୍ତ ରହନ୍ତି ନାହିଁ କିମ୍ବା ଶକ୍ତିଶାଳୀ ହୁଅନ୍ତି ନାହିଁ । ସେହେତୁ ଶାରୀରିକ ପରିଶ୍ରମ ସେମାନେ ପୁରୁଷଙ୍କ ପରି କରିପାରନ୍ତି ନାହିଁ । ସେମାନଙ୍କ ଯୌନ ପ୍ରବୃତ୍ତି ସାଧାରଣ ରକମ ରହେ; କିନ୍ତୁ ଯୌନ ଉତ୍ତେଜନା ସାଧାରଣତଃ ରହେ ନାହିଁ । ଯୌନ ଉତ୍ତେଜନା ପାଇଲେ ମଧ୍ୟ ତାହା ବହୁତ ଦୁର୍ବଳ ରହେ । ଆଉ କେତେକଙ୍କର ଶରୀର ବୃଦ୍ଧି ନ ଏହାର ବାଳକ ଅବସ୍ଥାରେ ରହିଯାନ୍ତି ।

ଭେନସର ଯୌନବିତ୍ ଷ୍ଟେନସି ଏହି ବିଷୟରେ ଗବେଷଣା କରି ଦେଖିଥିଲେ ଯେ ତିନି ବା ଚାରି ସପ୍ତାହ ବୟସର ଅଣ୍ଡିରା ମୂଷାର ଅଣ୍ଡକୋଷକୁ ଅସ୍ତ୍ରୋପଚାର କରି ବାହାର କରିଦେବାରୁ ମୂଷା-ଗୁଡ଼ିକର ଶରୀର ଆଉ ବର୍ଦ୍ଧିତ ହେଲା ନାହିଁ । କିନ୍ତୁ ଅଣ୍ଡକୋଷକୁ ପୁଣି ପେଟ ଭିତରେ ଲଗାଇ ଦେବା ଫଳରେ ମୂଷାର ଶାରୀରିକ ଶକ୍ତି ଓ ପୁଂ-ସ୍ୱଭାବ ବୃଦ୍ଧି ପାଇଥିଲା ।

ଏହା ପରେ ଷ୍ଟେନସି ପ୍ରାପ୍ତବୟସ୍କ ଅଣ୍ଡିରା ମୂଷାର ଅଣ୍ଡକୋଷକୁ ଅସ୍ତ୍ରୋପଚାର ଦ୍ୱାରା ବାହାର କରି ମାଈମୂଷାର ଦେହରେ ଓ ମାଈମୂଷାର ଡିମ୍ବକୋଷକୁ ଅସ୍ତ୍ରୋପଚାର ଦ୍ୱାରା ବାହାର କରି ଅଣ୍ଡିରା ମୂଷାର ଦେହରେ ଲଗାଇଥିଲେ । ଏହି ରକମ ଅସ୍ତ୍ରୋପଚାର ପ୍ରାୟ ପନ୍ଦର ଦିନ ଭିତରେ ଶୁଖିଯାଇଥିଲା । ଯେଉଁ ଅଣ୍ଡିରା ମୂଷାଙ୍କର ତଳପେଟରେ ଡିମ୍ବକୋଷ ଲଗାଯାଇଥିଲା ସେମାନଙ୍କର ଜନନେନ୍ଦ୍ରିୟ ଆଉ ବୃଦ୍ଧି ହେଲା ନାହିଁ । ସେମାନଙ୍କର ପୁଂ-ସ୍ୱଭାବ ମଧ୍ୟ କମି ଆସିଲା । ସାଧାରଣତଃ ଶରୀର ଶୀଘ୍ର ବୃଦ୍ଧି ପାଇବା, ଶକ୍ତିପୂର୍ଣ୍ଣ ଦିଶିବା, ଶରୀର ଭିତରେ ଶକ୍ତିଶାଳୀ ହାଡ଼ର ଗଠନ ପୁରୁଷର ପ୍ରକୃତି । ଅଣ୍ଡିରା ମୂଷାଗୁଡ଼ିକର ମଧ୍ୟ ଏହି ପ୍ରକୃତି ରହେ । ଗୋଟିଏ ଅଣ୍ଡିରା ମୂଷା ସମବୟସ୍କ ମୂଷୀଠାରୁ ଓଜନରେ ପ୍ରାୟ ତେପନ ଗ୍ରାମ ଅଧିକ ରହେ ।

ଡିମ୍ବକୋଷ ଲଗାଯିବା ପରେ ଅଣ୍ଡିରା ମୂଷାଟି ସମବୟସ୍କ ମୂଷାଠାରୁ ପ୍ରାୟ ସତୁରି ଠାରୁ ଶହେ ଗ୍ରାମ ଓଜନରେ କମ ରହିଲା । କିନ୍ତୁ

ମୁଣ୍ଡ ଛେଦନ କରାଯାଇଥିବା ମୂଷାଗୁଡ଼ିକର ଓଜନ ଅନ୍ୟାନ୍ୟ ଅଣ୍ଡିରା ମୂଷାଙ୍କ ପରି ରହିଥିଲା । ଡିମ୍ବକୋଷ ଲଗାଯାଇଥିବା ମୂଷାଙ୍କ ମୁଣ୍ଡ ମାଈ ମୂଷାଙ୍କ ପରି ରହିଲା । ଶରୀର ଭିତରେ ହାଡ଼ର ଗଠନ ମାଈମୂଷାଙ୍କ ପରି ସରୁ ହେଲା । ସେମାନଙ୍କ ଦେହରେ ଚର୍ବି ଜମିଗଲା ଓ ଶରୀର ଲୋମ ଟାଆଁସା ନ ହୋଇ କୋମଳ ହେଲା । ଛାତିର ସ୍ତନ ଦୁଇଟି ମାଈମୂଷାଙ୍କ ପରି ବୃଦ୍ଧି ପାଇଲା ଓ ସେଥିରୁ ଦୁଧ ମଧ୍ୟ ବାହାରିଲା । ମାଈମୂଷାଙ୍କର ମଦକାଳରେ ସେମାନଙ୍କ ପଛରେ ଗୋଡ଼ାଇବା ସ୍ୱଭାବ ରହିଲା ନାହିଁ । ମାଈମୂଷାଙ୍କର ସ୍ୱାଭାବିକ ସ୍ୱଭାବ ମଧ୍ୟ ଏମାନଙ୍କ ଠାରେ ଦେଖାଗଲା । ପୁଂ-ଶକ୍ତି ଓ ଚଞ୍ଚଳତା ଏମାନଙ୍କ ଠାରେ ନ ରହି ବରଂ ଅଣ୍ଡିରାମୂଷାଙ୍କୁ ଆକୃଷ୍ଟ କରିବା ସ୍ୱଭାବ ଦେଖାଗଲା ।

ସେହିପରି ଯେଉଁ ମାଈମୂଷାଙ୍କ ଶରୀରରୁ ଡିମ୍ବକୋଷକୁ ବାହାର କରାଯାଇ ଶୁକ୍ରକୋଷ ଲଗାଯାଇଥିଲା ସେହି ମୂଷାଗୁଡ଼ିକର ପୂର୍ବ ସ୍ୱଭାବ ବଦଳି ଯାଇ ପୁଂ-ସ୍ୱଭାବ ଆରମ୍ଭ ହେଲା । ସେମାନଙ୍କ ଶରୀରର ସ୍ତନ, ଗର୍ଭାଶୟ, ଯୌନଯନ୍ତ୍ର ପ୍ରଭୃତି ଆଉ ବର୍ଦ୍ଧିତ ହେଲା ନାହିଁ । କେତେକ ସମୟ ପରେ ଶରୀରର ଏହି ସମସ୍ତ ଅଙ୍ଗ ଶୁଖିଆସିଲା । ଶରୀରର ଆକାର ଓ ପ୍ରକାରରେ ପୁଂ-ସ୍ୱଭାବ ଜାଗରିତ ହେଲା । ଶରୀରର ଲୋମ କୋମଳ ନ ହୋଇ ଟାଆଁସିଆ ହେଲା । ମୁଣ୍ଡର ଆକାର ଓ ପ୍ରକାର ଅଣ୍ଡିରା ମୂଷାଙ୍କ ପରି ହେଲା । ଏହି ମୂଷାଗୁଡ଼ିକ ମାଈ-ମୂଷାଙ୍କର ମଦକାଳ ଜାଣି ପାରିଲେ ସେମାନଙ୍କ ପଛରେ ଦୌଡ଼ି ଯୌନସଙ୍ଗମ ନିମନ୍ତେ ଚେଷ୍ଟା କଲେ ।

ଏହା ପରେ ଯୌନବିତ୍ ଷ୍ଟେନସି ପୁଂ-ମୂଷାର ଶରୀରରେ ଶୁକ୍ରକୋଷ ଥିବା ସମୟରେ ଡିମ୍ବକୋଷ ମଧ୍ୟ ଲଗାଇ ପରୀକ୍ଷା କରିଥିଲେ । ସେଥିରେ ମୂଷା କ୍ଳୀବତ୍ୱ ଅବସ୍ଥା ଗତିକଲା । ଶରୀରରେ ମଧ୍ୟ ପରିବର୍ତ୍ତନ ଆସିଥିଲା ।

ଶୁକ୍ରକୋଷରୁ କେତେକ ରକମର ରସ ନିଃସୃତ ହୁଏ ଯାହା କ ରକ୍ତରେ ମିଶିବା ଯୋଗୁଁ ମନୁଷ୍ୟଠାରେ ପୁରୁଷର ସ୍ୱଭାବ ଆସେ । ଅସ୍ତ୍ରୋପଚାର ବା ଅନ୍ୟ କୌଣସି ଆକସ୍ମିକ ଘଟଣାରେ ଶୁକ୍ରକୋଷ ଶରୀରରୁ ବାହାରିଗଲେ ପୁରୁଷର ମୂଳ ସ୍ୱଭାବରେ ପରିବର୍ତ୍ତନ ଆସେ ।

(ଖ) **ଶୁକ୍ରନାଳୀ** – ପ୍ରତ୍ୟେକ ଶୁକ୍ରକୋଷରୁ ଯେଉଁ ନାଳୀ ଦେଇ ମୂତ୍ରନାଳୀ ପର୍ଯ୍ୟନ୍ତ ଶୁକ୍ର ପ୍ରବାହିତ ହୁଏ ତାହାକୁ ଶୁକ୍ରନାଳୀ କହନ୍ତି । ଏହି ଶୁକ୍ରନାଳୀର ଭିନ୍ନ ଭିନ୍ନ ଅଂଶ ବିଭିନ୍ନ ନାମରେ ପରିଚିତ । ଶୁକ୍ରକୋଷରୁ ଅନେକ କ୍ଷୁଦ୍ର କ୍ଷୁଦ୍ର ନାଳୀ ବାହାରି ଗୋଟିଏ ଚେପଟାକୃତି ଗ୍ରନ୍ଥି ସହିତ ସଂଯୁକ୍ତ ହୋଇଥାନ୍ତି । ଏହି ଗ୍ରନ୍ଥିକୁ ଉପକୋଷ (Epididymis) କୁହାଯାଏ । ଏହା ପ୍ରଥମେ ଏକ ରକମ ଶୁକ୍ରାଶୟର କାର୍ଯ୍ୟ କରିଥାଏ । ଉପକୋଷରୁ ମୂତ୍ରନାଳୀ ପର୍ଯ୍ୟନ୍ତ ଯେଉଁ ପଥ ବା ନାଳୀ ଦେଇ ଶୁକ୍ର ପ୍ରବାହିତ ହୁଏ ତାହା ଶୁକ୍ରବାହିନୀ (Vas deferens) ନାମରେ ଅଭିହିତ । ଏହି ନାଳୀଟି ପ୍ରାୟ ଅଠର ଇଞ୍ଚ ଲମ୍ବା ଏବଂ ଉପକୋଷରୁ ବାହାରି ଶୁକ୍ରକୋଷର ପଛ ଦେଇ ଉପରକୁ ଉଠିଥାଏ । ନାଳୀର ଶେଷରେ ଶୁକ୍ରାଶୟ (Seminal Vesicles) ଅବସ୍ଥିତ । ଶୁକ୍ର-ବାହିନୀର ଆକୁଞ୍ଚନ-ସମ୍ପ୍ରସାରଣ ଶକ୍ତିଯୋଗୁଁ ସେ ଉପକୋଷରୁ ଶୁକ୍ରାଶୟକୁ ଶୁକ୍ର ପ୍ରେରଣ କରେ । ଏହିପରି ଦୁଇଟି ଶୁକ୍ରକୋଷର ଦୁଇଟି ରାସ୍ତା ଦେଇ ଶୁକ୍ରାଶୟରେ ଶୁକ୍ର ସଞ୍ଚିତ ହୁଏ ।

କାମୋତ୍ତେଜନା ବେଳେ ପ୍ରତ୍ୟେକ ଶୁକ୍ରାଶୟରୁ ପୁରସ୍ଥ-ଗ୍ରନ୍ଥିକୁ (Prostate Gland) ଶୁକ୍ର ପ୍ରବାହିତ ହୁଏ । ଶୁକ୍ରାଶୟ ଦୁଇଟି ମୂତ୍ରା-ଶୟର (Uninary Bladder) ଦୁଇ ପାଖରେ ଓ ପୁରସ୍ଥ ଗ୍ରନ୍ଥି ମୂତ୍ରା-ଶୟର ତଳେ ଅବସ୍ଥିତ । ମୂତ୍ରନାଳୀ ଏହି ପୁରସ୍ଥ ଗ୍ରନ୍ଥିର ଭିତର ଦେଇ ଆସିଥାଏ । ପୁରସ୍ଥ ଗ୍ରନ୍ଥିରୁ ଏକ ପ୍ରକାର ତରଳ ଓ ଅଠାଳିଆ ରସ ନିଃସୃତ ହୁଏ । କାମୋତ୍ତେଜନା ବେଳେ ପୁରସ୍ଥ ଗ୍ରନ୍ଥିରୁ ଏହି ରସ ମୂତ୍ରନାଳୀ ଦେଇ ପ୍ରଥମେ ପଦାକୁ ବାହାରେ । ଏହା ଶୁକ୍ର ସ୍ଖଳନ ପାଇଁ ମୂତ୍ରନାଳୀର ପଥ ସରଳ କରିବାରେ ସାହାଯ୍ୟ କରେ ।

ଶୁକ୍ରାଣୁଗୁଡ଼ିକ ଶୁକ୍ରାଶୟରୁ ବାହାରିବା ବେଳେ ଚଞ୍ଚଳ ବା ଗତିଶୀଳ ନ ଥାନ୍ତି । କାମୋତ୍ତେଜନା ବେଳେ ଶୁକ୍ରାଶୟ ଦୁଇଟି ସଙ୍କୁଚିତ ହୁଅନ୍ତି । ଯେହେତୁ ଶୁକ୍ରାଶୟରୁ ଶୁକ୍ର ପୁରସ୍ଥ ଗ୍ରନ୍ଥି ଦେଇ ମୂତ୍ରନାଳୀକୁ ପ୍ରବାହିତ ହୁଏ । ପୁରସ୍ଥ ଗ୍ରନ୍ଥିରେ ସେଠାର ରସ ଶୁକ୍ର ସହିତ ମିଶିଯାଏ । ଫଳରେ ଶୁକ୍ରାଣୁଗୁଡ଼ିକ ଚଞ୍ଚଳ ଓ ଗତିଶୀଳ ହୋଇପଡ଼ନ୍ତି । ପୁଣି ଶୁକ୍ର-ସ୍ଖଳନରେ ଯେଉଁ ଗନ୍ଧ ହୁଏ ତାହା ଏହି ପୁରସ୍ଥ ଗ୍ରନ୍ଥିରୁ ନିଃସୃତ ରସର ଗନ୍ଧ ।

ଶୁକ୍ରାଶୟ କୌଣସି କାରଣରୁ ରୁଗ୍‌ଣ ହେଲେ ଯୌନସଙ୍ଗମ ବେଳେ ଅତ୍ୟଧିକ ମାତ୍ରାରେ ଶୁକ୍ର ନିର୍ଗତ ହୁଏ । ପୁଣି ଯୌନ ଶକ୍ତିର ଅବସାନ ଘଟି ଅକାଳ ସ୍ଖଳନ (Premature ejaculation) ହୁଏ ।

କାମୋତ୍ତେଜନାବେଳେ ଶୁକ୍ରାଶୟ ଦୁଇଟି ସଙ୍କୁଚିତ ହୁଏ । ଏହା ଦ୍ୱାରା ଶୁକ୍ର ପ୍ରୋଷ୍ଟେଟଗ୍ରନ୍ଥି ଦେଇ ମୂତ୍ରନାଳୀକୁ ପ୍ରବାହିତ ହୁଏ । ମୂତ୍ରନାଳୀର ଆକୁଞ୍ଚନ ସମ୍ପ୍ରସାରଣ ଶକ୍ତିଯୋଗୁଁ ମୂତ୍ରନାଳୀ ଦେଇ ଶୁକ୍ର ପଦାକୁ ବାହାରିଯାଏ । ଏହି ସମୟରେ ମୂତ୍ରାଶୟର ରାସ୍ତା ଆପେ ଆପେ ବନ୍ଦ ହୋଇଯାଏ । ସେହେତୁ କାମୋତ୍ତେଜନାରେ ଯୌନତୃପ୍ତିର କେତେ ସମୟ ପୂର୍ବରୁ ଅର୍ଥାତ୍ ସ୍ଖଳନ ପୂର୍ବରୁ ପୁରୁଷ ପକ୍ଷେ ମୂତ୍ରତ୍ୟାଗ କରିବା ଅସମ୍ଭବ ନ ହେଲେ ମଧ୍ୟ କଷ୍ଟସାଧ୍ୟ ।

(ଗ) **ଲିଙ୍ଗ**—ପୂର୍ବ ଓ ଉଚିତ ଯୌନସଙ୍ଗମ ଓ ଗର୍ଭସଞ୍ଚାର ନିମନ୍ତେ ବର୍ଦ୍ଧିତ ଓ ଶକ୍ତ ଲିଙ୍ଗ ଆବଶ୍ୟକ । ଯେପରି କୌଣସି ଗର୍ତ୍ତଭିତରେ ପ୍ରବେଶ କରିବାକୁ ହେଲେ ଶକ୍ତ ଓ କଠିନ ଶରୀର ହେବା ଦରକାର, ସେପରି ଲିଙ୍ଗ ଶକ୍ତ ନ ହେଲେ ଯୋନି ମଧ୍ୟରେ ପ୍ରବେଶ କରିବା ସହଜ ନୁହେ । ବର୍ଦ୍ଧିତ ଓ ଶକ୍ତ ଲିଙ୍ଗ ଯୋନିନାଳୀର ଗଭୀରତମ ପ୍ରଦେଶରେ ପ୍ରବେଶ କରି ଗର୍ଭାଶୟ ନିକଟରେ ଶୁକ୍ର ନିକ୍ଷେପ କରେ । ଏହା ଫଳରେ ଶୁକ୍ରାଣୁ ସୁବିଧାରେ ଗର୍ଭାଶୟ ଭିତରେ ପ୍ରବେଶ କରିପାରେ । ଯୋନି-ନାଳୀର ବାହାର ପାଖରେ ବା ମୁହଁରେ ଶୁକ୍ରନିକ୍ଷେପ କରିବା ଦ୍ୱାରା ସହଜରେ ଗର୍ଭସଞ୍ଚାର ହୁଏ ନାହିଁ । ଯୌନସଙ୍ଗମ ବେଳେ ଲିଙ୍ଗ ଶକ୍ତ ରହି ଯୋନିନାଳୀର ଭିତର ପାଖରେ ଘଷିହେବା ଦ୍ୱାରା ନାରୀର କାମୋତ୍ତେଜନା ବୃଦ୍ଧି ପାଏ

ସାଧାରଣତଃ ପୁରୁଷର ଲିଙ୍ଗକୁ ତିନିଭାଗରେ ବିଭକ୍ତ କରାଯାଇ ପାରେ । ଯଥା—(କ) ଲିଙ୍ଗର ଅଗ୍ରଭାଗ ଯାହା କି ମଣି ବା ମୁଣ୍ଡି ନାମରେ ପରିଚିତ, (ଖ) ମଧ୍ୟଭାଗ, (ଗ) ମୂଳଭାଗ—ଯେଉଁ ଅଂଶଟି ବାହାରକୁ ଦିଶେ ନାହିଁ ।

ଲିଙ୍ଗଟି ଶୁକ୍ରକୋଷ ଉପରେ ଅବସ୍ଥିତ । ସାଧାରଣ ଅବସ୍ଥାରେ ଏହା ପ୍ରାୟ ସାଢ଼େ ତିନି ଇଞ୍ଚ ଠାରୁ ଚାରିଇଞ୍ଚ ପର୍ଯ୍ୟନ୍ତ ଲମ୍ବ । ଉତ୍ତେଜନା ସମୟରେ ଯେତେବେଳେ ପୂରା ଶକ୍ତ ହୋଇଉଠେ । ଏହାର ଲମ୍ବ ପ୍ରାୟ

ସାଢ଼େ ପାଞ୍ଚ ଇଞ୍ଚ ଠାରୁ ସାଢ଼େ ଛ ଇଞ୍ଚ ପର୍ଯ୍ୟନ୍ତ ହୋଇଯାଏ । ଲିଙ୍ଗର ଆକୁଞ୍ଚନ-ସମ୍ପ୍ରସାରଣ ଶକ୍ତି ଅଧିକ ।

ଲିଙ୍ଗର ଅଗ୍ରଭାଗ ବା ମଣି ଅନ୍ୟାନ୍ୟ ଅଂଶ ତୁଳନାରେ ଟିକିଏ ମୋଟା ଏବଂ ଆକାରରେ ଗୁଆ ପରି । ସେହେତୁ ମଣିକୁ ଗୁଆ ବୋଲି ମଧ୍ୟ କହିଥାନ୍ତି । ସେଥିମଧ୍ୟରେ ଗୋଟିଏ ସୂକ୍ଷ୍ମ ପଥ ରହିଛି ।' ଏହି ପଥ ଦେଇ ମୂତ୍ର ଓ ଶୁକ୍ର ନିର୍ଗତ ହୁଏ । ମଣି ଚତୁର୍ଦ୍ଦିଗରେ ଚର୍ମଦ୍ୱାରା ଘୋଡ଼ାଇ ରହେ । ଏହି ଚର୍ମକୁ ଅଗ୍ରଚର୍ମ ବା ମଣିଚର୍ମ କହନ୍ତି । କେତେକ ଏହାକୁ ମଣିଚର୍ମ ବା ମୁଣ୍ଡି ମଧ୍ୟ କହିଥାନ୍ତି । ଅଗ୍ରଚର୍ମର (Foreskin) ଶେଷଭାଗ ବା ମୁଖ ବଡ଼ ଥାଏ । ସେହେତୁ ଅଗ୍ରଚର୍ମକୁ ଲିଙ୍ଗର ମୂଳଆଡ଼େ ଠେଲି-ଦେଲେ ତାହା ସହଜରେ ମଣିର ମୂଳ ପର୍ଯ୍ୟନ୍ତ ଖୋଲିଯାଏ । ମଣିର ଉପରିଭାଗରେ ଯେଉଁ ପତଳା ଚର୍ମ ଦେଖାଯାଏ, ତାହା ଅଗ୍ରଚର୍ମ ସହିତ ସଂଲଗ୍ନ ।

ମଣିର ମାଂସପେଶୀଗୁଡ଼ିକ ଖୁବ୍ ନରମ ଓ ସେଥିରେ ଅନେକ କ୍ଷୁଦ୍ର ସ୍ନାୟୁଶେଷ ରହିଥାନ୍ତି । ଏହି କାରଣରୁ ସେଠାରେ ପ୍ରବଳ ଅନୁଭବ ଶକ୍ତି ରହେ । ଅଗ୍ରଚର୍ମକୁ ମଣିର ମୂଳଠାରୁ ଆହୁରି ପଛକୁ ଠେଲିଲେ ଯେଉଁ ପତଳା ଚର୍ମ ଦେଖିବାକୁ ମିଳେ ସେଥିରେ ମଣିର ଚର୍ମ ଅପେକ୍ଷା ଅଧିକ ଅନୁଭବ-ଶକ୍ତି ରହେ । ବାହାର ଆଘାତରୁ ରକ୍ଷା କରିବା ସକାଶେ ଅଗ୍ରଚର୍ମ ବିଶେଷ ସାହାଯ୍ୟ କରେ ।

ଲିଙ୍ଗର ଶରୀର ନରମ ଓ ରନ୍ଧ୍ରଯୁକ୍ତ ମାଂସପେଶୀରେ ତିଆରି । ତାର ଭିତରେ ଅନେକ ଶିରା-ପ୍ରଶିରା ଅଛି । ଉତ୍ତେଜନା ସମୟରେ ବହୁତ ରକ୍ତ ସଞ୍ଚାର ହେବା ଯୋଗୁଁ ଲିଙ୍ଗର ଆକାର ବୃଦ୍ଧି ହୋଇ ଶକ୍ତ ହୋଇଯାଏ । ଉତ୍ତେଜନା କମିଗଲେ ରକ୍ତର ସଞ୍ଚାର କମିଯାଇ ନରମ ହୋଇଯାଏ । ସାଧାରଣ ସମୟରେ ଲିଙ୍ଗ ନରମ ଅବସ୍ଥାରେ ରହେ । ଅନ୍ୟାନ୍ୟ କେତେକ ମାନସିକ କାରଣ ଯୋଗୁଁ ମଧ୍ୟ ଲିଙ୍ଗର ଉତ୍ତେଜିତ ଅବସ୍ଥା ଆସେ । ଯୌନସମ୍ବନ୍ଧୀୟ ମାନସିକ ଉତ୍ତେଜନା ହେଲେ ଲିଙ୍ଗରେ ରକ୍ତସଞ୍ଚାର ହୋଇ ଆକାର ବୃଦ୍ଧିପାଏ । ଏହି ମାନସିକ ଉତ୍ତେଜନା ସାଧାରଣତଃ ଇନ୍ଦ୍ରିୟମାନଙ୍କ ପ୍ରଭାବରେ ହୁଏ । ଯଥା—(୧) ରୂପବତୀ ଯୁବତୀ ଦେଖିବା, (୨) ପ୍ରେମସଙ୍ଗୀତ ଶୁଣିବା ବା ସଙ୍ଗୀତସ୍ୱର ସେହିପରି କିଛି ଘଟିଥିବା ଘଟଣା ସହିତ ସମ୍ପୃକ୍ତ ଥିଲେ, (୩) କୌଣସି ସୁଗନ୍ଧ ଦ୍ରବ୍ୟ

ବା ଯୁବତୀ ଶରୀରର ଗନ୍ଧର ଆଘ୍ରାଣରେ, (୪) କୌଣସି ଯୁବତୀର ଶାରୀରିକ ସ୍ପର୍ଶରେ । ଏହା ବ୍ୟତୀତ ଅନେକ ସମୟରେ ଭାବନା ଯୋଗୁଁ ଓ ଅନ୍ୟାନ୍ୟ କାରଣରୁ ମଧ୍ୟ ମାନସିକ ଯୌନ ଉତ୍ତେଜନା ହୁଏ । ଯୌନ ଉତ୍ତେଜନା ଜୋର ହେବା ପରେ କୌଣସି ଅସୁବିଧା ଯୋଗୁଁ ଯୌନତୃପ୍ତି ନ ପାଇ ଶୁକ୍ର ସ୍ଖଳନ ନ ହେଲେ ତାହା ଶୁକ୍ରାଶୟରେ ରହେ ଏବଂ ସ୍ୱପ୍ନରେ ସ୍ଖଳନ ହୋଇଥାଏ ।

ସାଧାରଣତଃ ମାନସିକ ଯୌନ ଉତ୍ତେଜନା ହେଲେ କିମ୍ବା ଶୁକ୍ର-କୋଷର ପ୍ରଭାବରୁ ରକ୍ତସଂଚାର ହେଲେ ଲିଙ୍ଗର ଆକାର ବୃଦ୍ଧିପାଇ ଶକ୍ତ ହୋଇଉଠେ । ଏହା ବ୍ୟତୀତ ଆଉ କେତେକ କାରଣ ଯୋଗୁଁ ଲିଙ୍ଗର ଉତ୍ତେଜିତ ଅବସ୍ଥା ଆସିଥାଏ । ଯଥା—(କ) ମୂତ୍ରାଶୟରେ ମୂତ୍ର ପୂର୍ଣ୍ଣ ହେଲେ ତାହା ଶୁକ୍ରାଶୟ ଉପରେ ଚାପ ଦିଏ । ଶୁକ୍ରାଶୟ ଚାପ ପାଇଲେ ଲିଙ୍ଗରେ ରକ୍ତସଂଚାର ହୋଇ ଆକାର ବୃଦ୍ଧି ହୁଏ । (ଖ) ନିଶା ବା ମାଦକ ଦ୍ରବ୍ୟ ବ୍ୟବହାର କଲେ, (ଗ) ଶୁକ୍ରାଶୟ ଶୁକ୍ରରେ ପୂର୍ଣ୍ଣ ହେଲେ ।

ସକାଳେ ନିଦରୁ ଉଠିଲାବେଳେ ଅନେକ ସମୟରେ ଲିଙ୍ଗ ଉତ୍ତେଜିତ ଅବସ୍ଥାରେ ଥାଏ । ଏହା ସାଧାରଣତଃ ପ୍ରଷ୍ଟେଟଗ୍ରନ୍ଥି ଉପରେ ମୂତ୍ରାଶୟ ବା ଅନ୍ତନାଳୀର ଚାପରେ ହୋଇଥାଏ । କିନ୍ତୁ ଏହି ଅବସ୍ଥାରେ ମାନସିକ ଯୌନଉତ୍ତେଜନା ପହଞ୍ଚିଲେ ତାହା କାମୋତ୍ତେଜନାରେ ପରିଣତ ହୁଏ । ସ୍ନାୟୁବିକ ବିକାର ଯୋଗୁଁ କେତେକ ପୁରୁଷଙ୍କର ଯୌନ ଉତ୍ତେଜନା ନ ଥିଲେ ସୁଦ୍ଧା ଲିଙ୍ଗ ବରାବର ଉତ୍ତେଜିତ ଅବସ୍ଥାରେ ରହେ । ଏହିପରି ଅବସ୍ଥାରେ ଡାକ୍ତରଙ୍କ ପରାମର୍ଶ ନେବା ଉଚିତ ଓ ନାରୀ ସହିତ ଯୌନସଙ୍ଗମ ବା ରତିକ୍ରିୟା କରିବା ଆଦୌ ଉଚିତ ନୁହେଁ; କାରଣ ରତିକ୍ରିୟାରେ କଷ୍ଟର ମାତ୍ରା ବୃଦ୍ଧିହୁଏ ।

## ନାରୀର ଜନନେନ୍ଦ୍ରିୟ

ପୁରୁଷର ଜନନେନ୍ଦ୍ରିୟ ଯେପରି ତିନି ଭାଗରେ ବିଭକ୍ତ କରାଯାଇଛି ସେହିପରି ନାରୀର ଜନନେନ୍ଦ୍ରିୟକୁ ତିନି ଭାଗରେ ବିଭକ୍ତ କରାଯାଇ ପାରେ । ଯଥା—(କ) ଡିମ୍ବକୋଷ ( Ovary ), (ଖ) ଡିମ୍ବବାହୀ ନାଳୀ (Fallopian Tube), (ଗ) ଗର୍ଭାଶୟ ଓ ଯୋନି । ଶରୀର ଭିତର ଯୌନଯନ୍ତ୍ର, ଗର୍ଭସଂଚାର ଓ ପ୍ରସବ ପ୍ରଭୃତି କାର୍ଯ୍ୟ କଲାବେଳେ ବାହ୍ୟ

ଅଂଶ 'ଯୋନି' କେବଳ ଯୌନସଙ୍ଗମ ବା ରକ୍ତନିସ୍ରା ନିମନ୍ତେ ଅର୍ଥାତ୍ ଗର୍ଭସଞ୍ଚାର ନିମନ୍ତେ ସୁବିଧା କରାଇଥାଏ ।

(କ) **ଡିମ୍ବକୋଷ** – ପୁରୁଷର ଶୁକ୍ରକୋଷ ପରି ନାରୀର ଡିମ୍ବକୋଷ ହେଉଛି ପ୍ରଧାନ ଉତ୍ପାଦନ ଯନ୍ତ୍ର । ପୁରୁଷର ଯେପରି ଦୁଇଟି ଶୁକ୍ରକୋଷ ଅଛି, ନାରୀର ମଧ୍ୟ ସେହିପରି ଦୁଇଟି ଡିମ୍ବକୋଷ ଅଛି । ଏହି ଦୁଇଟି ଡିମ୍ବକୋଷ ଗର୍ଭାଶୟର ଦୁଇ ପାଖରେ ଅବସ୍ଥିତ । ପ୍ରତ୍ୟେକ ଡିମ୍ବକୋଷରେ ପ୍ରାୟ ତିରିଶ ହଜାର ଠାରୁ ପଚିଶରଶ ହଜାର ଡିମ୍ବାଣୁ ରହିଥାନ୍ତି ।

ଡିମ୍ବାଣୁଗୁଡ଼ିକ ଶ୍ଵେତ ଓ ଗୋଲାକାର ଏବଂ ଶୁକ୍ରକୀଟ ଠାରୁ ଆକାରରେ ବଡ଼ । ପ୍ରତ୍ୟେକ ଡିମ୍ବାଣୁ ଗୋଟିଏ ଗୋଟିଏ କ୍ଷୁଦ୍ର ମୁଣି ଦ୍ଵାରା ଆବୃତ । ଏହି ମୁଣି ମଧ୍ୟରେ ଡିମ୍ବାଣୁର ଚାରିପଟେ ଏକ ରକମ ତରଳ ରସ ରହେ । ଡିମ୍ବାଣୁଗୁଡ଼ିକ ବାହାର ପରସ୍ତରେ ରହନ୍ତି । ଡିମ୍ବାଣୁ ପକ୍ଵ ହେଲେ ବା ପାଚିଲେ ଡିମ୍ବକୋଷର ବାହାର ପରସ୍ତ ଫୁଲି ଉଠେ । ପ୍ରାୟ ପ୍ରତ୍ୟେକ ଚତୁର୍ଥ ସପ୍ତାହରେ ଗୋଟିଏ ଲେଖାଏ ଡିମ୍ବାଣୁ ପକ୍ଵ ଅବସ୍ଥାକୁ ଆସେ । ଏହା ଫଳରେ ନାରୀର ଜନନେନ୍ଦ୍ରିୟରେ ପରିବର୍ତ୍ତନ ଘଟେ । ଡିମ୍ବାଣୁ ପାଚିଲା ଅବସ୍ଥାକୁ ଆସିଲେ ଡିମ୍ବକୋଷର ସଂକୋଚନ ହେବାଯୋଗୁଁ ଆବୃତ ମୁଣିଟି ଫାଟିଯାଇ ତରଳ ରସ ସହିତ ଡିମ୍ବାଣୁଟି ବାହାରିପଡ଼େ ।

ପ୍ରତ୍ୟେକ ଡିମ୍ବକୋଷରୁ ପାଳିକ୍ରମରେ ଡିମ୍ବାଣୁ ଜାତ ହୋଇଥାନ୍ତି । ଅର୍ଥାତ୍ ପ୍ରଥମ ଚାରି ସପ୍ତାହ ପରେ ଡାହାଣ ପାଖ ଡିମ୍ବକୋଷରୁ ଡିମ୍ବାଣୁ ଜାତ ହୋଇଥିଲେ ଦ୍ଵିତୀୟ ଚାରି ସପ୍ତାହ ଶେଷରେ ବାମ ଡିମ୍ବକୋଷରୁ ଡିମ୍ବାଣୁ ଜାତ ହୋଇଥାଏ । ଏହିପରି ପାଳିକ୍ରମରେ ପ୍ରତ୍ୟେକ ଡିମ୍ବକୋଷରୁ ଡିମ୍ବାଣୁ ଜାତ ହୋଇଥାନ୍ତି । ଶୁକ୍ରାଣୁ ପରି ଡିମ୍ବାଣୁ ଗତିଶୀଳ ନୁହେଁ । ଶୁକ୍ରାଣୁ ସହିତ ମିଳନ ନ ହେଲେ ଡିମ୍ବାଣୁଟି ମରିଯାଇ ଶରୀର ଭିତରୁ ବାହାରକୁ ଅଜାଣତରେ ଖସିଯାଏ ।

ଡିମ୍ବାଣୁ ବାହାରି ପଡ଼ିବା ପରେ ଡିମ୍ବକୋଷରେ ଏକ ରକମ ହଳଦିଆ ଜିନିଷ କଣ୍ଠିତ୍ ବଦଳରେ ଆରମ୍ଭ ହୁଏ । ଏହି ହଳଦିଆ ଜିନିଷ ଅନେକ ଦିନ ପର୍ଯ୍ୟନ୍ତ ଡିମ୍ବକୋଷରେ ରହେ । ହଳଦିଆ ଜିନିଷ ଡିମ୍ବ-

କୋଷରେ ରହିବା ସମୟରେ ସେଥିରୁ ରସ ନିଃସୃତ ହୋଇ ରକ୍ତରେ ମିଶେ । ଏହି ରସ ଗର୍ଭାଶୟରେ ପହଞ୍ଚିଲେ ଗର୍ଭାଶୟର ଭିତର ପାଖ କୋମଳ ହୋଇଯାଏ । ଏହା ଫଳରେ ଡିମ୍ବାଣୁର ନିଷେକ ହେଲେ ଗର୍ଭାଶୟର ରହିବା ପାଇଁ ସୁବିଧା ହୁଏ । ଯଦି ନାରୀର ପୁଣି ରଜଃସ୍ରାବ ହୁଏ, ସେଥିରୁ ଜଣାଯାଏ ଯେ ପୂର୍ବଥର ଡିମ୍ବାଣୁର ଶୁକ୍ରାଣୁ ସହିତ ମିଳନ ନ ହୋଇ ପାରିବା ଯୋଗୁଁ ଗର୍ଭସଞ୍ଚାର ହୋଇନାହିଁ; ସେହେତୁ ଡିମ୍ବାଣୁର ମୃତ୍ୟୁ ଘଟିଛି ।

ଡିମ୍ବକୋଷରୁ କେତେକ ରକମ ରସ ନିଃସୃତ ହୁଏ ଯାହା କି ରକ୍ତରେ ମିଶିବା ଯୋଗୁଁ ନାରୀଠାରେ ନାରୀର ସ୍ୱଭାବ ଦେଖାଦିଏ । ଅସ୍ତ୍ରୋପଚାର ବା ଅନ୍ୟ କୌଣସି କାରଣ ଯୋଗୁଁ ଶରୀରରୁ ଡିମ୍ବକୋଷଟି ବାହାର ହୋଇଗଲେ ନାରୀର ମୌଳିକ ସ୍ୱଭାବରେ ପରିବର୍ତ୍ତନ ଦେଖାଦିଏ ଓ ସମୟେ ସମୟେ ନାରୀର ମାସିକ ରଜଃସ୍ରାବ ବନ୍ଦ ହୋଇଯାଏ ।

କୌଣସି କାରଣରୁ ଡିମ୍ବକୋଷ ନଷ୍ଟ ହୋଇଗଲେ କିମ୍ବା ବାଲ୍ୟକାଳରୁ ବୃଦ୍ଧି ନ ପାଇଲେ ବାଳିକାମାନେ ଯୌବନରେ ନ ପହଞ୍ଚି ବାଳିକା ଅବସ୍ଥାରେ ରହିଯାନ୍ତି । ଗର୍ଭାଶୟ, ଯୋନିନାଳୀ ପ୍ରଭୃତି ଅଙ୍ଗ ଛୋଟିଆ ହୋଇ ରହେ । ଯୋନିମୁଖର ଭଗୌଷ୍ଠ ଦୁଇଟି ପିଲାଳିଆ ଚର୍ମପରି ରହେ । ଯୋନିମଣ୍ଡଳରେ ଲୋମ ଉଠେ ନାହିଁ । ସ୍ତନ, ନିତମ୍ବ ପ୍ରଭୃତିରେ ଚର୍ବି ନ ଜମିବା ଯୋଗୁଁ ସେସବୁ ଗୋଲେଇ ହେବା ପରି ଦିଶେ ନାହିଁ, ଯୌନ ଉତ୍ତେଜନା ଆଦୌ ରହେ ନାହିଁ କିମ୍ବା ସାମାନ୍ୟ ରହେ ।

(ଖ) **ଡିମ୍ବବାହୀ ନାଳୀ ବା ଡିମ୍ବବାହିନୀ**—ଡିମ୍ବକୋଷରୁ ଡିମ୍ବାଣୁ ବାହାରି ପଡ଼ିଲା ପରେ ଗୋଟିଏ ଛିଦ୍ର ପରି (କାହାଳ ପରି) ମୁହଁ ଥିବା ନାଳୀରେ ପହଞ୍ଚେ । ଏହାକୁ ଡିମ୍ବବାହୀ ନାଳୀ ବା ଡିମ୍ବବାହିନୀ (Oviduct) କହନ୍ତି । ଡିମ୍ବକୋଷ ଫାଟି ଡିମ୍ବାଣୁ ବାହାରି ପଡ଼ିଲାବେଳେ ଏହି ନାଳୀର ଛିଦ୍ରମୁହଁଟି ଖୋଲେ । ଅନ୍ୟ ସମୟରେ ଛିଦ୍ରମୁହଁଟି ବନ୍ଦ ରହେ । ଦୁଇଟି ଡିମ୍ବକୋଷ ନିକଟରେ ଦୁଇଟି ନାଳୀ ରହି ଗର୍ଭାଶୟ ସହିତ ସଂଯୁକ୍ତ ହୋଇଥାନ୍ତି । ଏହି ନାଳୀ ଭିତରେ ସମୟେ ସମୟେ ଡିମ୍ବାଣୁ ଓ ଶୁକ୍ରାଣୁର ମିଳନ ହୁଏ ।

ଡିମ୍ବାଣୁ ସହିତ ଶୁକ୍ରାଣୁର ମିଳନ ହେଉ ବା ନ ହେଉ, ଡିମ୍ବାଣୁଟି ନାଳୀ ଭିତରେ ଗର୍ଭାଶୟ ଆଡ଼କୁ ଗତି କରେ । ଏହି ନାଳୀର ଭିତର ପାର୍ଶ୍ୱରେ ଗୋଟିଏ ଶ୍ଳେଷ୍ମ ଝିଲ୍ଲି ପରସ୍ତ ଅଛି । ଶ୍ଳେଷ୍ମଝିଲ୍ଲି ପରସ୍ତରୁ ଏକରକମ ଲୋମ ଉପରକୁ ଉଠି ଗର୍ଭାଶୟ ଆଡେ ଢଳି ରହିଥାନ୍ତି । ଏହି ପରସ୍ତରୁ (Mucus Membrane) ଏକରକମ ତରଳ ରସ ମଧ୍ୟ ନିଃସୃତ ହୁଏ । ଡିମ୍ବାଣୁ ଗତିଶୀଳ ନ ହେଲେ ସୁଦ୍ଧା ଗର୍ଭାଶୟ ଦିଗରେ ଗତି କରିବା ନିମନ୍ତେ ଏହି ତରଳ ରସ ପଥ ପ୍ରସ୍ତୁତ କରିଦିଏ । ଡିମ୍ବ-ବାହିନୀର ଆରମ୍ଭରୁ ଗର୍ଭାଶୟରେ ପହଞ୍ଚିବା ନିମନ୍ତେ ଡିମ୍ବାଣୁକୁ ପ୍ରାୟ ଆଠଦିନ ଲାଗେ ।

ସମୟେ ସମୟେ ଡିମ୍ବବାହିନୀର ଶ୍ଳେଷ୍ମଝିଲ୍ଲି ପରସ୍ତରେ ଡିମ୍ବାଣୁ ଅଧା ପୋତିହୋଇ ଅଟକି ଯାଏ, ସେହେତୁ ଗର୍ଭାଶୟରେ ପହଞ୍ଚି ପାରେ ନାହିଁ । ଯଦି ଏହି ଅବସ୍ଥାରେ ଡିମ୍ବାଣୁର ଶୁକ୍ରାଣୁ ସହିତ ମିଳନ ଘଟି ଗର୍ଭାଶୟ ବାହାରେ ଗର୍ଭସଞ୍ଚାର ହୁଏ ତାହାହେଲେ ନାରୀର ଜୀବନ ସଙ୍କଟାପନ୍ନ ହୁଏ । କାରଣ ଗର୍ଭାଶୟ ବାହାରେ ଗର୍ଭସଂଚାର ହେଲେ ତାହା ଦିନକୁ ଦିନ ବୃଦ୍ଧି ହୋଇ ଶେଷରେ ଡିମ୍ବବାହିନୀକୁ ଫଟାଇଦିଏ । ଏପରି ଅବସ୍ଥାରେ ଅସ୍ତ୍ରୋପଚାର ଦ୍ୱାରା ହିଁ ଜୀବନ ରକ୍ଷା କରାଯାଇ ପାରେ ।

(ଗ) **ଗର୍ଭାଶୟ** – ଗର୍ଭାଶୟକୁ ତିନିଭାଗରେ ବିଭକ୍ତ କରାଯାଇ ପାରେ – (୧) ଉପରଭାଗ – ଯେଉଁଠାରେ ଦୁଇଟି ଡିମ୍ବବାହିନୀ ସଂଯୁକ୍ତ ହୋଇଥାନ୍ତି । ଏହି ଭାଗଟି ବହଳ ମାଂସପେଶିରେ ତିଆରି । (୨) ମଧ୍ୟଭାଗ । (୩) ଗର୍ଭାଶୟର ମୁଖ । ଗର୍ଭାଶୟର ମୁଖଟି ଯୋନିନାଳୀ ସହିତ ସଂଯୁକ୍ତ ।

ଗର୍ଭାଶୟର ଚାରି ବାଡ଼ଗୁଡ଼ିକ ତିନୋଟି ପରସ୍ତରେ ଗଢ଼ାଯାଇଛି ଏବଂ ଭିତରଟି ଶ୍ଳେଷ୍ମଝିଲ୍ଲି ପରସ୍ତରେ ଆବୃତ । ଗର୍ଭାଶୟର ବାଡ଼ଗୁଡ଼ିକ ଏକାଠି ହୋଇ ଗୋଟିଏ ତ୍ରିକୋଣାକାର ମୁଣିପରି ଆକାର ଧାରଣ କରେ । ଶ୍ଳେଷ୍ମଝିଲ୍ଲି ପରସ୍ତରୁ ଏକରକମ ତରଳ ରସ ନିଃସୃତ ହୋଇ ଗର୍ଭାଶୟ ମୁହଁ ନିକଟରେ ଠିପିପରି ଅଟକି ରହେ । ନାରୀ ଉତ୍ତେଜନାର ଶୀର୍ଷରେ ପହଞ୍ଚିଲାବେଳେ ଗର୍ଭାଶୟର ସଙ୍କୋଚନ ହେବାଯୋଗୁ ଏହି ରସ

ଯୋନିନାଳୀ ଦେଇ ପଦାକୁ ବାହାରି ଆସେ । ଅନ୍ୟ କେତେକ କାରଣରୁ କିମ୍ବା ନାରୀମାନେ ରସାଳ ସ୍ୱପ୍ନ ଦେଖିଲାବେଳେ ଗର୍ଭାଶୟର ସଂକୋଚନ ଯୋଗୁଁ ମଧ୍ୟ ଏହି ରସ ପଦାକୁ ଆସିଥାଏ । ଉତ୍ତେଜନା ପରେ ଯୌନ-ତୃପ୍ତିବେଳେ ପୁରୁଷମାନଙ୍କର ଯେପରି ଶୁକ୍ର ସ୍ଖଳନ ହୁଏ ସେହିପରି ଏହାକୁ ମଧ୍ୟ ନାରୀମାନଙ୍କର ସ୍ଖଳନ ବୋଲି କହିଥାନ୍ତି । ପୁରୁଷର ସ୍ଖଳନରେ ଶୁକ୍ର ନିଃସୃତ ହୁଏ, କିନ୍ତୁ ନାରୀମାନଙ୍କର ସ୍ଖଳନରେ ଡିମ୍ବାଣୁ ନିଃସୃତ ହୁଏ ନାହିଁ ।

ଗର୍ଭାଶୟର ରସ ଗର୍ଭାଶୟର ମୁହଁକୁ ବନ୍ଦ ରଖିଥିବା ପର୍ଯ୍ୟନ୍ତ ଶୁକ୍ରକୀଟ ତାହା ଭିତରକୁ ପଶିପାରେ ନାହିଁ । ଉତ୍ତେଜନାର ଶେଷ ସୀମାରେ ପହଞ୍ଚିଲାବେଳେ ଗର୍ଭାଶୟ ସଙ୍କୁଚିତ ହୋଇ ରସଠିପିକୁ ପଦାକୁ ବାହାର କରିଦେବା ଦ୍ୱାରା ଗର୍ଭାଶୟର ମୁହଁ ଖୋଲିଯାଏ ଓ ଫଳରେ ଶୁକ୍ରାଣୁ ସହଜରେ ତା ଭିତରକୁ ପ୍ରବେଶ କରେ । ଯେହେତୁ ଯୌନସଙ୍ଗମ ବେଳେ ନାରୀ ଉତ୍ତେଜନାର ଶେଷ ସୀମାରେ ପହଞ୍ଚିବା ସମୟରେ ଗର୍ଭସଞ୍ଚାର ହେବାର ସମ୍ଭାବନା ବେଶି । ରସାଳ ସ୍ୱପ୍ନ ଦେଖିଲା ବେଳେ ବା ଅନ୍ୟ କେତେକ ସମୟରେ ଏହି ରସ ଯୋନିନାଳୀକୁ ଖସିଆସେ । ସେହେତୁ ଯୌନସଙ୍ଗମ ବେଳେ କେତେକ ସମୟରେ ଉତ୍ତେଜନା ବିଶେଷଭାବେ ନ ହେଲେ ସୁଦ୍ଧା ଗର୍ଭସଞ୍ଚାର ମଧ୍ୟ ହୋଇଥାଏ । ମାସିକ ରଜଃସ୍ରାବ ସମୟରେ ଗର୍ଭାଶୟରୁ ମୁଖଟି ଖୋଲିଯାଇ ସଫା ହୋଇଯାଏ ଏବଂ ଗର୍ଭାଶୟର ମୁଖ ବନ୍ଦ କରିବା ପାଇଁ ସେହି ପରିମାଣରେ ରସ ନିଃସୃତ ହେବାପାଇଁ ସମୟ ନିଏ । ସେହେତୁ ମାସିକ ଋତୁ ପରେ ପରେ ଯୌନ-ସଙ୍ଗମରେ ନାରୀର ଉତ୍ତେଜନା ସୃଷ୍ଟି ନ ହେଲେ ମଧ୍ୟ ଗର୍ଭସଞ୍ଚାର ହୋଇପାରେ ।

ଗର୍ଭାଶୟର ବାହାର ଦ୍ୱିତୀୟ ସ୍ତର ମାଂସପେଶିବହୁଳ । ଏହି ମାଂସପେଶିଗୁଡ଼ିକରେ ସଂପ୍ରସାରଣ ଶକ୍ତି ଅଧିକ । ସେହେତୁ ଗର୍ଭଧାରଣ ସମୟରେ ଗର୍ଭାଶୟର ଆକାର ଅନେକ ଗୁଣ ବଢ଼ିଯାଏ ।

ଗର୍ଭାଶୟଟି ସୂକ୍ଷ୍ମ ତନ୍ତୁ ଦ୍ୱାରା ଆବୃତ । ଏହି ତନ୍ତୁଗୁଡ଼ିକ ଯୋଗୁଁ ଗର୍ଭାଶୟଟି ଠିକ ସ୍ଥାନରେ ରହିଥାଏ । କୌଣସି କାରଣରୁ ତନ୍ତୁଗୁଡ଼ିକ ଢିଲା ହୋଇଗଲେ ଗର୍ଭାଶୟ ସ୍ଥାନଚ୍ୟୁତ ହୁଏ କିମ୍ବା ବଙ୍କେଇ ହୋଇ

ରହେ । ଗର୍ଭାଶୟ ପଛକୁ ବଙ୍କେଇ ହୋଇ ରହିଲେ ତାହା ବୃହତ୍ ଅନ୍ତ୍ରନାଳୀ ଉପରେ ଚାପ ଦିଏ ଓ ଏହା ଫଳରେ କୋଷ୍ଠକାଠିନ୍ୟ ହୁଏ । ଯଦି ଅଧିକ ବଙ୍କା ହୋଇ ରହେ ତାହା ହେଲେ ପଛପଟରେ ବ୍ୟଥା ଅନୁଭବ ହୁଏ । ଅନେକ ସମୟରେ ନାରୀମାନଙ୍କର ଏହି ରକମ କଷ୍ଟ ହେବାର ଦେଖାଯାଏ ।

କେତେକ ସମୟରେ ନାରୀମାନେ ସ୍ୱଭାବବଶତଃ ଅନେକ ସମୟଧରି ମୂତ୍ରତ୍ୟାଗ କରନ୍ତି ନାହିଁ । ଫଳରେ ମୂତ୍ରାଶୟ ପୂର୍ଣ୍ଣ ହୋଇ ଗର୍ଭାଶୟ ଉପରେ ଚାପ ଦିଏ । ଏହାଦ୍ୱାରା ଗର୍ଭାଶୟର ତନ୍ତୁଗୁଡ଼ିକ ଅନେକ ସମୟରେ ଢିଲା ହୋଇଯାଏ । ସେହେତୁ ମା'ମାନେ ବାଳିକା-ମାନଙ୍କ ଏହି ଦୁରଭ୍ୟାସ ପ୍ରତି ଦୃଷ୍ଟି ରଖି ସେମାନଙ୍କୁ ସତର୍କ କରାଇବା ଉଚିତ । ଏହା ଫଳରେ ବାଳିକାମାନେ ଭବିଷ୍ୟତ ଜୀବନରେ ଅନେକ ରକମ ଗର୍ଭାଶୟ ବିକାରରୁ ମୁକ୍ତ ପାଇପାରିବେ ।

ସାଧାରଣତଃ ଡିମ୍ବବାହୀ ନାଳୀ ବା ଡିମ୍ବବାହିନୀରେ ଡିମ୍ବାଣୁ ଓ ଶୁକ୍ରାଣୁର ମିଳନ ହୋଇଥାଏ । ସମୟେ ସମୟେ ଗର୍ଭାଶୟରେ ମଧ୍ୟ ଏହି ମିଳନ ହୁଏ । ଡିମ୍ବାଣୁ ଓ ଶୁକ୍ରାଣୁର ମିଳନକୁ ନିଷେକ କହନ୍ତି । ଉଭୟର ମିଳନ ଫଳରେ କୋଷାଣୁ ଗଠିତ ହୋଇ ଗର୍ଭସଞ୍ଚାର ହୁଏ । କୋଷାଣୁର ଆଗମନ ନିମନ୍ତେ ଗର୍ଭାଶୟର ଶ୍ଳେଷ୍ମଝିଲ୍ଲି ପରସ୍ତଟି ପ୍ରସ୍ତୁତ ହୁଏ । ଡିମ୍ବାଣୁ ନିଷିକ୍ତ ହୋଇଥିଲେ ଗର୍ଭାଶୟର ଝିଲ୍ଲି ପରସ୍ତରେ ରହି ବୃଦ୍ଧିପାଏ । ଡିମ୍ବକୋଷରୁ ବାହାରିବାର ଆଠ ବା ଦଶଦିନ ଭିତରେ ଡିମ୍ବାଣୁ ଓ ଶୁକ୍ରାଣୁର ମିଳନ ନ ହେଲେ, କୋଷାଣୁର ଆଗମନ ନିମନ୍ତେ ଗର୍ଭାଶୟର ଶ୍ଳେଷ୍ମଝିଲ୍ଲି ପରସ୍ତଟି ଯେଉଁ ଅତିରିକ୍ତ ରକ୍ତ ନିଃସୃତ ହୋଇ ଗର୍ଭାଶୟକୁ ପ୍ରସ୍ତୁତ କରିଥାଏ ତାହା ଆଉ ଛଅ ବା ଆଠ ଦିନ ପରେ ଧ୍ୱଂସୀଭୂତ ହୋଇ ପଦାକୁ ବାହାରି ଆସେ । ଏହାକୁ ନାରୀମାନଙ୍କର ମାସିକ ରଜଃସ୍ରାବ ବା ମାସିକ ଋତୁ କହନ୍ତି ।

**ଯୋନି**—ଯୋନି ହେଉଛି ଲିଙ୍ଗର ଓଲଟା ରକମର ସୃଷ୍ଟି ବା ଓଲଟା ଭାବେ ପ୍ରତିଫଳନ । ଏହାକୁ ଦୁଇ ଭାଗରେ ବିଭକ୍ତ କରାଯାଇ ପାରେ—(୧) ଯୋନିନାଳୀ (୨) ଯୋନିମୁଖ । ଗର୍ଭାଶୟ ପରି ଯୋନି-ନାଳୀର କାନ୍ଥ ତିନି ପରସ୍ତରେ ତିଆରି । ଯୋନିନାଳୀ ଗର୍ଭାଶୟର ମୁଖ

ସହିତ ସଂଯୁକ୍ତ । ଗର୍ଭାଶୟର ମୁଖ ଯୋନିନାଳୀ ଭିତରକୁ ବୋତଲରେ ଠିପି ଦେଲାପରି ପଶିଆସିଥାଏ । ଡିମ୍ବବାହୀ ନାଳୀ ଓ ଗର୍ଭାଶୟର ଭିତର ପାଖରେ ଯେପରି ଶ୍ଲେଷ୍ମଝିଲ୍ଲିର ଗୋଟିଏ ପରସ୍ତ ଅଛି, ସେହିପରି ଯୋନି-ନାଳୀର ଭିତର ପାର୍ଶ୍ୱରେ ଶ୍ଲେଷ୍ମଝିଲ୍ଲିର ଗୋଟିଏ ପରସ୍ତ ଅଛି । ଗର୍ଭାଶୟର ଶ୍ଲେଷ୍ମଝିଲ୍ଲି ପରସ୍ତରୁ ଯେପରି ରସ ନିଃସୃତ ହୁଏ ସେହିପରି ଯୋନିନାଳୀର ଶ୍ଲେଷ୍ମଝିଲ୍ଲି ପରସ୍ତରୁ କୌଣସି ରସ ନିଃସୃତ ହୁଏ ନାହିଁ । ଯୌନସଙ୍ଗମ ବେଳେ ଆର୍ଦ୍ର ରହିବା ଯାହା ଅନୁଭୂତ ହୁଏ ତାହା ଗର୍ଭାଶୟର ନିଃସୃତ ରସ ଯୋନିନାଳୀକୁ ଆସି ସାହାଯ୍ୟ କରିଥାଏ ।

ଯୋନିନାଳୀର ତଳ ଓ ଉପର ଭାଗର ଶ୍ଲେଷ୍ମଝିଲ୍ଲି ପରସ୍ତରେ ବହୁତ ଭାଙ୍ଗ (Fold) ରହେ । ଏହା ଦ୍ୱାରା ଯୋନିନାଳୀର ସମ୍ପ୍ରସାରଣରେ (Stretch) ସୁବିଧା ହୁଏ । ଏହି ସମ୍ପ୍ରସାରଣ ଶକ୍ତିଯୋଗୁଁ ପ୍ରସବବେଳେ ଗର୍ଭାଶୟର ଶିଶୁ ସୁବିଧାରେ ପଦାକୁ ବାହାରିଆସେ । ପୁଣି ଯୌନସଙ୍ଗମ ବେଳେ ଭାଙ୍ଗଗୁଡ଼ିକ ସଂଘର୍ଷ ନିମନ୍ତେ ସାହାଯ୍ୟ କରିଥାନ୍ତି ଯାହାଦ୍ୱାରା ନାରୀର ଉତ୍ତେଜନା ବୃଦ୍ଧି ହୁଏ ।

ଯୋନିନାଳୀର ଆକୁଞ୍ଚନ ସମ୍ପ୍ରସାରଣ ଶକ୍ତି ରହିଛି । ଗର୍ଭାଶୟ ପରି ଯୋନିନାଳୀ-ପାର୍ଶ୍ୱ-ବାଡ଼ର ବିଶିଷ୍ଟ ପରସ୍ତ ମାଂସପେଶିରେ ଗଠିତ । ଏହି ପରସ୍ତରେ ରକ୍ତସଂଗ୍ରହ ନିମନ୍ତେ ଶିରାପ୍ରଶିରା ବହୁଳ ହୋଇ ରହିଛି । କାମୋତ୍ତେଜନା ବେଳେ ମାଂସପେଶି ପରସ୍ତର ଶିରା-ଉପଶିରାରେ ରକ୍ତସଂଗ୍ରହ ଜୋର ହେବାଯୋଗୁଁ ଯୋନିନାଳୀ ଏକ ରକମ ଶକ୍ତ ହୋଇଆସେ । ଯୌନସଙ୍ଗମ ବେଳେ ଯୋନିନାଳୀ ଶକ୍ତ ହେବା ଦ୍ୱାରା ଲିଙ୍ଗକୁ ଚିପି ଧରିଲା ପରି (ଜାବୁଡ଼ି) ରହେ । ସେହେତୁ ଯୋନିନାଳୀର ଅନୁଭବ-ଶକ୍ତି-ସମ୍ପନ୍ନ ସ୍ନାୟୁ-ଶେଷଗୁଡ଼ିକ ଲିଙ୍ଗର ଅନୁଭବ-ଶକ୍ତି-ସମ୍ପନ୍ନ ସ୍ନାୟୁଶେଷ ସହିତ ସଂସ୍ପର୍ଶରେ ଆସନ୍ତି । ଯୋନିନାଳୀର ଭିତର ଭାଗରେ ଥିବା ମାଂସପେଶିଗୁଡ଼ିକ ଅପେକ୍ଷା ମୁଖଦ୍ୱାରରେ ଥିବା ମାଂସପେଶି-ଗୁଡ଼ିକର ସଂପ୍ରସାରଣ ଶକ୍ତି କମ୍ । ନାଳୀର ଭିତର ଅଂଶର ବ୍ୟାସ ଅପେକ୍ଷା ମୁଖର ବ୍ୟାସ କମ୍ ରହେ ଅର୍ଥାତ୍ ନାଳୀ ଭିତରଭାଗ ରନ୍ଧ୍ରର ଆକାର ଅପେକ୍ଷା ମୁଖଭାଗର ରନ୍ଧ୍ରର ଆକାର ଛୋଟ ରହେ । ତେଣୁ ଯୌନସଙ୍ଗମ ବେଳେ ଯୋନିର ମୁଖଦ୍ୱାର ଲିଙ୍ଗକୁ ଏକ ରକମ ଚିପି

ଧରିଲ ପରି ରହେ ଏବଂ ରକ୍ତନିସୃତ ବେଳେ ଲିଙ୍ଗରୁ ଶୁକ୍ର ନିର୍ଗତ ହେଲେ ଯୋନିନାଳୀ ଭିତରୁ ତାହା ପଦାକୁ ବାହାରି ପଡ଼ିବାରେ ସୁବିଧା ରହେ ନାହିଁ ।

ଗର୍ଭାଶୟର ଅବସ୍ଥାନ ନେଇ ଯୋନିନାଳୀର ଲମ୍ବାରେ କମ୍ ବା ଅଧିକ ରହେ । ସାଧାରଣତଃ ଏହା ଛ ସେଣ୍ଟିମିଟର ଠାରୁ ଷୋଳ ସେଣ୍ଟିମିଟର ପର୍ଯ୍ୟନ୍ତ ଲମ୍ବ ରହିବା ଦେଖାଯାଏ । ଗର୍ଭାଶୟ ତଳକୁ ରହିଲେ ଯୋନିନାଳୀର ଲମ୍ବ କମ୍ ରହେ । ଗର୍ଭାଶୟ ଉଚ୍ଚରେ ରହିଲେ ଯୋନିନାଳୀର ଲମ୍ବ ଅଧିକ ରହେ । ଜନ୍ମନିରୋଧ ନିମନ୍ତେ ଔଷଧର ବ୍ୟବହାର ଯୋଗୁଁ କିମ୍ବା ଅନ୍ୟ କୌଣସି କାରଣରୁ ଯୋନିନାଳୀ ସଂକୋଚନ ଅବସ୍ଥାରେ ରହେ ଯାହା ଫଳରେ ଯୌନସଙ୍ଗମ ବେଳେ ଅସୁବିଧା ସୃଷ୍ଟି ହେବା ମଧ୍ୟ ଦେଖାଯାଏ । ସାଧାରଣତଃ ଯୋନିନାଳୀର ପ୍ରସ୍ଥ ତିନିଇଞ୍ଚ ପର୍ଯ୍ୟନ୍ତ । ଯୋନିମୁଖର ଉପରକୁ ରହେ ମୂତ୍ରଦ୍ୱାର । ନାରୀମାନଙ୍କ ମୂତ୍ରଦ୍ୱାର ପୁରୁଷମାନଙ୍କ ଅପେକ୍ଷା ଛୋଟିଆ, କିନ୍ତୁ ଚୌଡ଼ା । ଅନେକ ସମୟରେ ଅଶିକ୍ଷିତ ଲୋକମାନେ କୁମାରୀମାନଙ୍କର ଏହି ମୂତ୍ରଦ୍ୱାରକୁ ଭୁଲରେ ଭଗରନ୍ଧ୍ର ବୋଲି ମନେ କରନ୍ତି ।

ଯୋନିନାଳୀର ଆରମ୍ଭରେ ବା ପ୍ରବେଶଦ୍ୱାରରେ ଗୋଟିଏ ପତଳା ପର୍ଦ୍ଦା ଘୋଡ଼ାଇ ରହେ । ଏହାକୁ କୁମାରୀଚ୍ଛଦ ବା ସତୀଚ୍ଛଦ କହନ୍ତି । ଏହି ରକମ କୁମାରୀଚ୍ଛଦ ପରି ଗୋଟିଏ ପର୍ଦ୍ଦା ପ୍ରାୟ ପ୍ରତ୍ୟେକ ମାଈ ପଶୁମାନଙ୍କ ଠାରେ ଦେଖାଯାଏ; କିନ୍ତୁ ମାଈପଶୁମାନଙ୍କର ଏହି ଛଦ ସ୍ରାବ ବେଳେ ଫାଟିଯାଏ ।

ଅପ୍ରାପ୍ତ ବୟସରେ ଯୌନସଙ୍ଗମ ନିବାରଣ କରିବା ନିମନ୍ତେ ଯୋନିନାଳୀ ମୁହଁରେ ଏହି ରକମ ଗୋଟିଏ ପର୍ଦ୍ଦା ଦେବା ପ୍ରକୃତିର ଉଦ୍ଦେଶ୍ୟ । ପ୍ରାପ୍ତବୟସରେ ଏହି ପର୍ଦ୍ଦା ଫାଟିଗଲେ ଯୌନସଙ୍ଗମରେ ସୁବିଧା ହୁଏ । ଯୌନସଙ୍ଗମ ବେଳେ ପର୍ଦ୍ଦାଟି ଫାଟି ଗଲାପରେ ଯେଉଁ ଅଂଶଟି ଯୋନିନାଳୀର ପାର୍ଶ୍ୱକୁ ଲାଗି ରହିଯାଏ ତାହା ରକ୍ତନିସୃତବେଳେ ଶୁକ୍ରକୁ ଯୋନିନାଳୀ ଭିତରୁ ପଦାକୁ ବାହାରି ଆସିବାବେଳେ ଅଟକାଇ ରଖେ ।

କୁମାରୀଚ୍ଛଦ ଗୋଟିଏ ପତଳା ଚର୍ମପରଦା । ଏହି ପର୍ଦ୍ଦାରେ ସାଧାରଣତଃ ଗୋଟିଏ ରନ୍ଧ୍ର ରହେ । ମାସିକ ଋତୁବେଳେ ଏହି ରନ୍ଧ୍ର ଦେଇ

ରଜଃସ୍ରାବ ହୁଏ । ପ୍ରଥମ ଯୌନସଙ୍ଗମ ବେଳେ କୁମାରୀଛଦ ଛିନ୍ନ ହୋଇଯାଏ । ଛିନ୍ନ ହେବାବେଳେ ସମୟେ ସମୟେ ସାମାନ୍ୟ ରକ୍ତସ୍ରାବ ହୋଇଥାଏ । କେତେକ ଯୁବତୀଙ୍କର କୁମାରୀଛଦରେ ଚାଲୁଣି ପରି ଅନେକ ଛୋଟ ଛୋଟ ରନ୍ଧ୍ର ମଧ୍ୟ ରହେ । କୁମାରୀଛଦର ଆକାର ଅନେକ ରକମର ହୁଏ । କେତେକ ଯୁବତୀଙ୍କର ଛଦଟି ପତଳା ନ ହୋଇ ବହଳ ଚର୍ମରେ ହୋଇଥାଏ ଯାହା ଫଳରେ ଯୌନସଙ୍ଗମର ଆଦୌ ସୁବିଧା ରହେ ନାହିଁ । କେତେକ ନାରୀଙ୍କର କୁମାରୀଛଦ ପର୍ଦାଟି ପ୍ରାୟ ଦେଢ଼ ସେଣ୍ଟିମିଟର ପର୍ଯ୍ୟନ୍ତ ବହଳ ଥିବା ଦେଖାଯାଇଛି । ଏହିପରି କ୍ଷେତ୍ରରେ ଅସ୍ତ୍ରୋପଚାରର ସାହାଯ୍ୟ ନେବା ଉଚିତ ।

ନାରୀ ଜନନେନ୍ଦ୍ରିୟର ବାହାରେ ରହିଥିବା ଅଂଶମାନଙ୍କରେ ଯୋନିନାଳୀ ବା ଭଗରନ୍ଧ୍ର ପ୍ରଧାନ । ଭଗରନ୍ଧ୍ରର ଦୁଇ ପାର୍ଶ୍ୱରେ ଦୁଇଟି ମେଦଯୁକ୍ତ ଅଂଶ ବା ଚର୍ବିପଟି ରହିଛି । ଏହି ଦୁଇଟିକୁ ଉପଭଗୌଷ୍ଠ ବା ଭଗ କହନ୍ତି । ଉପଭଗୌଷ୍ଠ ଦୁଇଟି ଯୋନିରନ୍ଧ୍ରର ଉପରକୁ ଉଠି (ମୂତ୍ରଦ୍ୱାରର ଉପରକୁ) ଯେଉଁଠାରେ ଏକାଠି ହୋଇଥାନ୍ତି ସେହିଠାରେ ଗୋଟିଏ ମୋଟାବନ୍ଧ ବା ବୋତାମ ସଦୃଶ ମାଂସପିଣ୍ଡୁଳା ରହେ । ଏହି ମୋଟା ବନ୍ଧ ସଦୃଶ ମାଂସପିଣ୍ଡୁଳାକୁ ଭଗାଙ୍କୁର (Clitoris) କହନ୍ତି । ଦୁଇ ପାଖର ଉପଭଗୌଷ୍ଠ ବା ଭଗର ପାଖରେ ଦୁଇଗୋଟି ଚର୍ମ ଆବରଣ ରହେ । ଏହି ଦୁଇଟିକୁ ଭଗୌଷ୍ଠ କୁହାଯାଏ ।

ସାଧାରଣତଃ ଯୁବତୀମାନଙ୍କର ଭଗୌଷ୍ଠ ଦୁଇଟି ଲାଗି ଲାଗି ରହିବା ଯୋଗୁଁ ଯୋନିନାଳୀ ଭଗାଙ୍କୁର ପ୍ରଭୃତିକୁ ଆବୃତ କରି ରଖେ । ପ୍ରୌଢ଼ା ଓ ବୃଦ୍ଧାମାନଙ୍କର ମାଂସପେଶୀ ଢିଲା ହୋଇ ମେଦ କମିଯିବା ଯୋଗୁଁ ଭଗୌଷ୍ଠ ଦୁଇଟି ଲାଗି ଲାଗି ନ ରହି ଅଳ୍ପ ଫାଙ୍କ ମେଲା ହୋଇ ରହେ ।

ଦୁଇ ପାଖର ଉପଭଗୌଷ୍ଠ ବା ଭଗ ଯୋନିନାଳୀର ଉପରେ ଯେଉଁଠାରେ ଏକାଠି ହୋଇଥାନ୍ତି ସେଠାରେ ଭଗାଙ୍କୁର ଅବସ୍ଥିତ । ଏହା ଯୋନିରନ୍ଧ୍ରର ଉପରକୁ ରହେ । ଡାକ୍ତରମାନଙ୍କ ମତରେ ନାରୀଶରୀରର ଭଗାଙ୍କୁରଟି ପୁଂଲିଙ୍ଗର ଅଂଶ ଏବଂ ମଣି ସଦୃଶ । ନିଗ୍ରୋମାନଙ୍କ ପରି କେତେକ ଜାତିର ନାରୀମାନଙ୍କ ଭଗାଙ୍କୁର ଖୁବ୍ ଲମ୍ବ

ଓ ୟୁରୋପୀୟ ନାରୀମାନଙ୍କ ଅପେକ୍ଷା ବଡ଼ । କେତେକଙ୍କର ଏହା ଏତେଦୂର ବଡ଼ ହୁଏ ଯେ ଯୌନସଙ୍ଗମ ବେଳେ ବାଧା ସୃଷ୍ଟି କରେ । କେତେକ ମାକ୍ରମାଙ୍କଡ଼ଙ୍କର ମଧ ଭଗାଙ୍କୁରଟି ଏତେ ବଡ଼ ହୁଏ ଯେ ସେଗୁଡ଼ିକୁ ଦେଖିବା ମାତ୍ରେ ଅଣ୍ଡିରା ମାଙ୍କଡ଼ ବୋଲି ମନେ ହେଉଥାଏ ।

ପୁରୁଷ-ଲିଙ୍ଗର ମଣି ଅପେକ୍ଷା ନାରୀମାନଙ୍କ ଭଗାଙ୍କୁରରେ ପ୍ରବଳ-ଅନୁଭବ ଶକ୍ତିସମ୍ପନ୍ନ ସ୍ନାୟୁ-ଶେଷଗୁଡ଼ିକ ବହୁଳ ଭାବେ ରହିଥାନ୍ତି । ପୁରୁଷମାନଙ୍କ ଲିଙ୍ଗପରି ଭଗାଙ୍କୁର ମଧ ରନ୍ଧ୍ରଯୁକ୍ତ ମାଂସପେଶୀରେ ଗଠିତ । ନାରୀର କାମୋତ୍ତେଜନା ବୃଦ୍ଧି କରିବା ନିମନ୍ତେ ଏହା ବିଶେଷ ସାହାଯ୍ୟ କରେ । ଉତ୍ତେଜନା ବେଳେ ରକ୍ତସଂଗ୍ରହ ଯୋଗୁ ଭଗାଙ୍କୁରର ଆକାର ବୃଦ୍ଧିହୁଏ । ଏହି ବୃଦ୍ଧି ଯୋଗୁ ଯୌନସଙ୍ଗମ ବେଳେ ପୁରୁଷର ଲିଙ୍ଗ ସହିତ ତାହା ସମ୍ପର୍କରେ ଆସେ ।

ନାରୀର କାମୋତ୍ତେଜନାରେ ଭଗାଙ୍କୁର, ଭଗ (Valve) ଯୋନିନାଳୀ ଏବଂ ଗର୍ଭାଶୟର ମୁଖ ପ୍ରଭୃତି ଅଂଶ ନେଇଥାନ୍ତି । ଏହି ସମସ୍ତ ଅଙ୍ଗଗୁଡ଼ିକ ରନ୍ଧ୍ରଯୁକ୍ତ ମାଂସପେଶୀରେ ଗଠିତ । ଉତ୍ତେଜନା ବେଳେ ଏହି ସବୁ ଅଙ୍ଗଗୁଡ଼ିକରେ ରକ୍ତସଂଗ୍ରହ ଜୋର ହୁଏ ଏବଂ ଅଙ୍ଗଗୁଡ଼ିକ ଏକ ରକମ ଶକ୍ତ ହୋଇ ଉଠନ୍ତି । କାମୋତ୍ତେଜନା ନିର୍ବାପିତ ହେବା ପରେ ଏହିସବୁ ଅଙ୍ଗଗୁଡ଼ିକରୁ ରକ୍ତ ଫେରିଯାଏ । ଶୁକ୍ର ନିର୍ଗତ ହେବା ପରେ ପୁରୁଷର ଲିଙ୍ଗରୁ ଯେପରି ଶୀଘ୍ର ରକ୍ତର ଚାପ କମେ ନାରୀର କାମୋତ୍ତେଜନା ନିର୍ବାପିତ ହେବା ପରେ ମଧ ସେପରି ଶୀଘ୍ର ରକ୍ତର ଚାପ କମେ ନାହିଁ । ଏହା କମିବାକୁ ସମୟ ନିଏ । କିନ୍ତୁ ଯୌନସଙ୍ଗମରେ ନାରୀ ଯୌନତୃପ୍ତି ନ ପାଇଲେ ନାରୀର ଯୌନଯନ୍ତ୍ରରୁ ରକ୍ତର ଚାପ କମିବାକୁ ଆହୁରି ଅଧିକ ସମୟ ଲାଗେ । ଅର୍ଥାତ୍ ସେହି ଅଙ୍ଗଗୁଡ଼ିକରୁ ଆସ୍ତେ ଆସ୍ତେ ରକ୍ତ ଫେରିଆସେ । ସେହେତୁ ଏହିପରି ବରାବର ଘଟିଲେ ନାରୀର ସ୍ୱାସ୍ଥ୍ୟରେ ବାଧା ସୃଷ୍ଟି କରେ ।

କେତେକ ନାରୀ ଅଭ୍ୟାସବଶତଃ ଯୌନସଙ୍ଗମ ବେଳେ ଯୋନିନାଳୀ ପ୍ରବେଶ ଦ୍ୱାରର ମାଂସପେଶିଗୁଡ଼ିକୁ ସଂକୋଚନ କରି ପୁରୁଷର ଲିଙ୍ଗକୁ ଚପି ଧରିପାରନ୍ତି । ଆଉ କେତେକ ନାରୀଙ୍କ ଏହି ମାଂସପେଶିଗୁଡ଼ିକ ସଂକୋଚନ ପ୍ରସାରଣ ଶକ୍ତିଦ୍ୱାରା ଲିଙ୍ଗକୁ ଯୋନିନାଳୀର

ବହୁତ ଭିତରକୁ ଟାଣି ନେଇପାରନ୍ତି । କାମୋତ୍ତେଜନାର ଚରମ ତୃପ୍ତିରେ ପହଞ୍ଚିବା ପର୍ଯ୍ୟନ୍ତ ମାଂସପେଶୀଗୁଡ଼ିକର ସଂକୋଚନ ପ୍ରସାରଣ ଶକ୍ତି କାର୍ଯ୍ୟ କରିଥାଏ । ଏହା ଦ୍ୱାରା ଯୋନିନାଳୀର ଗଭୀରତମ ପ୍ରଦେଶରେ ଲିଙ୍ଗ ସ୍ପର୍ଶ କରେ ଓ ଉଭୟଙ୍କ ଉତ୍ତେଜନା ବୃଦ୍ଧି ପାଏ ।

ପ୍ରାପ୍ତବୟସ ପରେ ଯୁବତୀମାନଙ୍କର କାମୋତ୍ତେଜନା ଅନୁଭବ ଶକ୍ତି ଯୋନିନାଳୀର ଶ୍ଳେଷ୍ମିକ ପରସ୍ତରେ ବୃଦ୍ଧି ହୁଏ । ଗର୍ଭାଶୟ ମୁଖ, ଯେଉଁ ଅଂଶଟି ଯୋନିନାଳୀ ଭିତରକୁ ପଶିଆସିଥାଏ ତାହା ମଧ୍ୟ ଉତ୍ତେଜନା ବୃଦ୍ଧି କରିବାରେ ଅଂଶ ନିଏ ।

ଯୋନିନାଳୀର ପ୍ରବେଶଦ୍ୱାରରେ ଅର୍ଥାତ୍ ଯୋନିନାଳୀ ମୁଖର ଦୁଇ ପାର୍ଶ୍ୱରେ ଦୁଇଟିଗୋଟି କ୍ଷୁଦ୍ର ଗ୍ରନ୍ଥି ଅଛି । ଏହି ଦୁଇଟି ଗ୍ରନ୍ଥିରୁ ଏକ ପ୍ରକାର ତୈଳପରି ରସ ନିଃସୃତ ହୁଏ । ଏହି ରସର କାର୍ଯ୍ୟକାରିତା ଆଜି ପର୍ଯ୍ୟନ୍ତ ପ୍ରମାଣରେ ଜଣାଯାଇ ନାହିଁ । କେବଳ କାମୋତ୍ତେଜନା ହେଲେ ଏହି ଗ୍ରନ୍ଥିରୁ ରସ ନିସୃତ ହୁଏ । ସେହେତୁ କାମୋତ୍ତେଜନାର କେତେକ ସମୟ ପରେ ଲିଙ୍ଗ ପ୍ରବେଶ କଲାବେଳେ ଯୋନି ଆର୍ଦ୍ର ଥିବା ବା ତୈଳାକ୍ତ ଥିବା ପରି ମନେ ହୁଏ ଏବଂ ଯୋନିନାଳୀରେ ଲିଙ୍ଗ ପ୍ରବେଶ କରାଇବା ସହଜ ହୁଏ । କିନ୍ତୁ କାମୋତ୍ତେଜନା ପୂର୍ବରୁ ଲିଙ୍ଗ ପ୍ରବେଶ କଲାବେଳେ ଏହି ରସର ଅଭାବରୁ ଅସୁବିଧା ଓ କ୍ଲେଶ ଅନୁଭୂତ ହୁଏ ।

ନାରୀମାନଙ୍କ ସ୍ତନଯୁଗଳ ମଧ୍ୟ ଜନନେନ୍ଦ୍ରିୟ ସହିତ ସଂପୃକ୍ତ । ପ୍ରଥମ ଯୌବନର ଆରମ୍ଭରୁ ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ସ୍ତନ ଦୁଇଟିରେ ମେଦ ଜମି ଗୋଲାକୃତ ହେବା ଆରମ୍ଭ ହୁଏ ଓ ପ୍ରଥମ ଗର୍ଭସଞ୍ଚାର ଠାରୁ ପ୍ରସବ ଭିତରେ ଏହା ପୂର୍ଣ୍ଣତାପ୍ରାପ୍ତ ହୋଇଥାଏ ।



୧୩—

## ମଣିଚର୍ମର ବ୍ୟବଚ୍ଛେଦ

କେତେକ ପୁରୁଷଙ୍କର ମଣିଚର୍ମ ମଣିକୁ ପୂରାପୂରି ଆବୃତ କରିବା ପରେ ମଧ ପଦାକୁ ରହେ । ଆଉ କେତେକ ଲୋକଙ୍କର ମଣିଚର୍ମ କମ୍ ରହେ ଯାହା ମଣିକୁ ପୂରାପୂରି ଆବୃତ କରିପାରେ ନାହିଁ; ସେହେତୁ ମଣି ଅଧା ଆବୃତ ରହେ । ଆଉ କେତେକ ଲୋକଙ୍କର ମଣିଚର୍ମ ଏତେ କମ୍ ଥାଏ ଯେ, ମଣି ପ୍ରାୟ ଅନାବୃତ ରହେ । କେତେକ ଲୋକଙ୍କର ମଣିଚର୍ମର ମୁଖ ସ୍ତ୍ରୋଟ । ସେହେତୁ ତାହାକୁ ପଛକୁ ଟାଣି ବା ଠେଲି ମଣିକୁ ସହଜରେ ଅନାବୃତ କରାଯାଇ ପାରେ ନାହିଁ । ଏହିପରି ଅବସ୍ଥାରେ ମଣି ସବୁ ସମୟରେ ଚର୍ମଦ୍ୱାରା ଆବୃତ ଓ ଆବଦ୍ଧ ହୋଇ ରହେ । ମଣିଚର୍ମ ମଣିର ତଳକୁ ନ ହଟିବା ଯୋଗୁଁ ଯୌନ ସଙ୍ଗମ ବେଳେ ଲିଙ୍ଗ ଶକ୍ତ ହୋଇ ଉଠିଲେ ସମୟେ ସମୟେ ପୁରୁଷର କଷ୍ଟ ହୁଏ । ପୁଣି ସର୍ବଦା ଆବୃତ ହୋଇ ରହିବାଦ୍ୱାରା ମଣି ଓ ଅଗ୍ରଚର୍ମ (ମଣିଚର୍ମ) ମଧ୍ୟରେ ଯେଉଁ ଫାଙ୍କ ରହେ ସେଥିରେ ନିଃସୃତ ଦୁର୍ଗନ୍ଧଯୁକ୍ତ ରସ ଜମିଯାଏ । ଏଥିରୁ ରକ୍ଷା ପାଇବାକୁ ହେଲେ ଅଗ୍ରଚର୍ମ ବା ମଣିଚର୍ମର ବ୍ୟବଚ୍ଛେଦ ଦରକାର । ମଣିଚର୍ମର ବ୍ୟବଚ୍ଛେଦ ଫଳରେ ମଣି ସହଜରେ ବାହାରକୁ ମୁକ୍ତ ହୋଇପାରେ ।

ପୃଥିବୀରେ ମଣିଚର୍ମର ବ୍ୟବଚ୍ଛେଦବେଳେ ପ୍ରଥମେ ଅସ୍ତ୍ରୋପଚାର ପ୍ରଣାଳୀର ବ୍ୟବହାର ହୋଇଥିବା ଅନୁମାନ କରାଯାଏ । ଅତି ପ୍ରାଚୀନ କାଳରୁ କେତେକ ଧର୍ମରେ ମଣିଚର୍ମର ବ୍ୟବଚ୍ଛେଦ ସାମାଜିକ ପ୍ରଥାରୂପେ ଚାଲିଆସୁଛି । ଏହି ପ୍ରଥାର ଆରମ୍ଭ ବିଶେଷଭାବେ ଜଣା ନ ଗଲେ ମଧ ଖ୍ରୀଷ୍ଟଜନ୍ମର ପ୍ରାୟ ୧୭୦୦ ବର୍ଷ ପୂର୍ବେ ଇଜିପ୍ଟର ଲୋକମାନେ ଏହି ପ୍ରଥା ପାଳନ କରୁଥିବା ଜଣାଯାଏ । ଆରବଦେଶବାସୀ ଏହି ପ୍ରଥା ଖ୍ରୀଷ୍ଟଜନ୍ମର ପ୍ରାୟ ୪୦୦ ବର୍ଷ ପୂର୍ବରୁ ପାଳି ଆସୁଥିବା ଏବଂ ୟୁହୁଦିମାନେ ପ୍ରାୟ ୪୦୦୦ (ଚାରିହଜାର ବର୍ଷ) ହେବ ପାଳନ କରି ଆସୁଥିବା ଅନୁମାନ କରାଯାଏ ।

ଖ୍ରୀଷ୍ଟିଆନ୍‌ମାନଙ୍କ ଧର୍ମଗ୍ରନ୍ଥ ବାଇବଲରେ ଲେଖା ଅଛି ଯେ ଆବ୍ରାହମ୍‌ଙ୍କ ଯୌନଶକ୍ତିର ବଳସ୍ପ ଘଟିବାରୁ ପୁନରୁଦ୍ଧାର ନିମନ୍ତେ ତାହାଙ୍କ ମଣିଚର୍ମର ବ୍ୟବଚ୍ଛେଦ କରାଯାଇଥିଲା । ଏହି ପ୍ରଥା ଅତି ପ୍ରାଚୀନ କାଳରୁ ଇସ୍ରାଏଲ, ଇଜିପ୍ଟ ଓ ଆରବ ଦେଶମାନଙ୍କରେ ଓ ଅନ୍ୟ କେତେକ ସମାଜରେ ପ୍ରଚଳିତ ହୋଇ ଆସୁଛି । କିନ୍ତୁ ଏହା କିପରି ଆରମ୍ଭ ହେଲା ତାହା କହିବା କଷ୍ଟସାଧ୍ୟ । ବର୍ତ୍ତମାନ ସୁଦ୍ଧା ଏହି ପ୍ରଥା ୟୁହିଦ, ମୁସଲମାନ ପ୍ରଭୃତି କେତେକ ସଭ୍ୟ ସମାଜରେ ଓ କେତେ ଆଦିବାସୀ ସମାଜରେ ପ୍ରଚଳନ ଅଛି ।

ପ୍ରାଚୀନ ରୋମରାଜ୍ୟରେ ଏହି ପ୍ରଥାର ପ୍ରଚଳନ ନ ଥିଲା । ୟୁହିଦି-ମାନେ ନିଜର ଧର୍ମ ଅନୁଯାୟୀ ମଣିଚର୍ମର ବ୍ୟବଚ୍ଛେଦ କରୁଥିବା ଯୋଗୁଁ ସେମାନେ ରାଜକର୍ମଚାରୀ ରୂପେ ନିଯୁକ୍ତ ପାଉ ନ ଥିଲେ । ସେହେତୁ କେତେକ ୟୁହିଦ ପୁଣି ମଣିକୁ ଚର୍ମରେ ଆବୃତ କରିବା ନିମନ୍ତେ ଅସ୍ତ୍ରୋପଚାର କରୁଥିଲେ ।

ଡାକ୍ତରମାନେ ଲକ୍ଷ୍ୟ କରିଛନ୍ତି ଯେ ମଣିଚର୍ମର ବ୍ୟବଚ୍ଛେଦ ଯୋଗୁଁ ୟୁହିଦ ଓ ମୁସଲମାନ ଧର୍ମାବଲମ୍ବୀମାନଙ୍କଠାରେ ଲିଙ୍ଗରେ କର୍କଟ ରୋଗ ହେବା କମ୍ ଦେଖାଯାଏ । ସାଧାରଣତଃ ମୁସଲମାନମାନେ ଆଠବର୍ଷଠାରୁ ତେରବର୍ଷ ବୟସ ମଧ୍ୟରେ ମଣିଚର୍ମର ବ୍ୟବଚ୍ଛେଦ କରିଥାନ୍ତି । କିନ୍ତୁ ୟୁହିଦମାନେ ସାଧାରଣତଃ ଜନ୍ମଠାରୁ ଅଷ୍ଟମ ଦିନରେ ମଣିଚର୍ମର ବ୍ୟବଚ୍ଛେଦ କରନ୍ତି । ସେହେତୁ ମୁସଲମାନମାନଙ୍କ ଅପେକ୍ଷା ୟୁହିଦମାନଙ୍କଠାରେ ଲିଙ୍ଗରେ କର୍କଟ ରୋଗ ହେବା ଆହୁରି କମ୍ ଦେଖାଯାଏ । ମଣିଚର୍ମର ବ୍ୟବଚ୍ଛେଦ ଯୋଗୁଁ ଲିଙ୍ଗରେ କର୍କଟ ରୋଗ ହୁଏ ନାହିଁ ବୋଲି ଆଧୁନିକ ଡାକ୍ତରମାନେ ମତ ଦେଇଥାନ୍ତି ।

ପୃଥିବୀର ଅନେକ ଅଞ୍ଚଳରେ, ଯଥା—ଅଷ୍ଟ୍ରେଲିଆ, ମ୍ୟାକ୍‌ସିକୋ ଦକ୍ଷିଣ ଓ ଉତ୍ତର ଆମେରିକା ପ୍ରଭୃତିରେ ଏହି ପ୍ରଥା ପ୍ରଚଳନ ଅଛି । ଡଃ ଉଲବାରସ୍ (Wolbarst) କହନ୍ତି ଯେ ମାଡ଼ାଗାସ୍କର, ପଶ୍ଚିମ ଅଷ୍ଟ୍ରେଲିଆ ଓ ଅନ୍ୟ କେତେକ ଅଞ୍ଚଳରେ ପିଲାର ଧର୍ମପିତା ବ୍ୟବଚ୍ଛେଦ ଚର୍ମକୁ ଅଣ୍ଡାରେ ମିଶାଇ ଖାଇଥାଏ । କେବଳ ଅରୁଣ୍ଟା (Arunta) ମାନଙ୍କ ସମାଜରେ ପିଲାର ସାନଭାଇ ବ୍ୟବଚ୍ଛେଦ ଚର୍ମକୁ ଖାଏ ।

ବନ୍ଧ୍ୟାଦୋଷରୁ ମୁକ୍ତି ପାଇବା ନିମନ୍ତେ ୟୁହୁଦି ନାରୀମାନେ ବ୍ୟବଚ୍ଛେଦ ଚର୍ମକୁ ରୁଟି ଭିତରେ ଭର୍ତ୍ତି କରି ସେକି ଖାଇଥାନ୍ତି । ସତର ଶହ ଶତାବ୍ଦୀରେ ପରସିଆନ ବନ୍ଧ୍ୟା ନାରୀମାନେ ଏହିପରି କରୁଥିବା ଜଣାଯାଏ । ମଧ୍ୟ-ଅଷ୍ଟ୍ରେଲିଆରେ ବ୍ୟବଚ୍ଛେଦ ଚର୍ମକୁ ଯତ୍ନରେ ରଖିଲେ ବର୍ଷା ଭଲ ହେବ ବୋଲି ସେମାନଙ୍କର ବିଶ୍ୱାସ ।

ୟୁହୁଦି ପିଲାମାନଙ୍କର ଜନ୍ମ ହେବାର ଅଷ୍ଟମ ଦିନରେ ମଣିଚର୍ମର ବ୍ୟବଚ୍ଛେଦ ହୁଏ । ପିଲାଟିକୁ ତକିଆ ଦେଇ ଗୋଟିଏ ଚୌକିରେ ରଖନ୍ତି । ଧଳା ଚଦର ଉପରେ ପିଲାଟି ଧର୍ମପିତାର କୋଳରେ ଶୋଇଥାଏ । ବ୍ୟବଚ୍ଛେଦବେଳେ ପିଲାର ବାପା ମନ୍ତ୍ରପାଠ କରନ୍ତି । ଯଦି ଜନ୍ମ ହେବାର ଶିଶୁଟି ଆଠଦିନ ପୂର୍ବରୁ ମରିଯାଏ, ତାହାର ମଣିଚର୍ମର ବ୍ୟବଚ୍ଛେଦ ଠିକ୍ ତିଥିରେ ହୋଇପାରେ ନାହିଁ । ଏପରି ଅବସ୍ଥାରେ ସେମାନଙ୍କର ପ୍ରଥା ଅନୁଯାୟୀ ମୃତ ଶିଶୁକୁ ପୋତିବା ପୂର୍ବରୁ ତାହାର ମଣିଚର୍ମର ବ୍ୟବଚ୍ଛେଦ କରିଥାନ୍ତି । ସେମାନଙ୍କ ସମାଜରେ ଶିଶୁର ମଣିଚର୍ମ ବ୍ୟବଚ୍ଛେଦ କରିବା ପିତାର ଧର୍ମଗତ ଅଧିକାର ହେଲେ ସୁଦ୍ଧା ସେମାନେ ଅନ୍ୟ ଲୋକଦ୍ୱାରା କରାଇଥାନ୍ତି ।

ପୂର୍ବ ଆଫ୍ରିକାର ମସାଇ ସମାଜରେ ଏହି ପ୍ରଥାର ପ୍ରଚଳନ ଅଛି । ପିଲାମାନଙ୍କର ମଣିଚର୍ମର ବ୍ୟବଚ୍ଛେଦ ପରେ ସେମାନେ ଚାରିଦିନ ପର୍ଯ୍ୟନ୍ତ ପଦାକୁ ନ ଯାଇ କେବଳ ଘରେ ରହନ୍ତି ଓ ସେମାନଙ୍କର କେବଳ ଘରର ଲୋକଙ୍କ ସହିତ ସମ୍ବନ୍ଧ ରହେ । ଚାରିଦିନ ପରେ ସେମାନେ ନାରୀଙ୍କ ବେଶରେ ନିଜକୁ ସଜାଇ, ମୁହଁରେ ଦୁଧଖଡ଼ି ବୋଳି, ହାତରେ ଧନୁ ଓ ମୁନ ନ ଥିବା ଶର ନେଇ ବାଳିକାମାନଙ୍କୁ ଲକ୍ଷ୍ୟ କରି ଶର ମାରନ୍ତି ।

ଇଜିପ୍ଟରେ ମଣିଚର୍ମର ବ୍ୟବଚ୍ଛେଦ ପ୍ରଥା ଅତି ପ୍ରାଚୀନ କାଳରୁ ଚଳି ଆସୁଛି । ବହୁବର୍ଷ ପୂର୍ବରୁ ଜନନେନ୍ଦ୍ରିୟରେ ଅସ୍ତ୍ରୋପଚାର କରିବା ପ୍ରଣାଳୀ ସେଠାରେ ପ୍ରଚଳନ ଥିଲା । ଏବେ ମଧ୍ୟ ଇଜିପ୍ଟ ସମାଜରେ ମଣିଚର୍ମର ବ୍ୟବଚ୍ଛେଦ ହେବାଦିନ ଭୋଜି ହୁଏ । ସାଧାରଣତଃ ବାଳକ-ମାନଙ୍କୁ ଛ ବା ସାତ ବର୍ଷ ବୟସ ହେଲେ ଏହି ଉତ୍ସବ ପାଳନ କରାଯାଏ । ପିଲାମାନଙ୍କୁ ସୁସଜ୍ଜିତ ଘୋଡ଼ା ବା ଶଗଡ଼ରେ ବସାଇ, ବାଦ୍ୟବାଜଣା

ବଜାଇ ଶୋଭାଯାତ୍ରାରେ ବ୍ୟବଚ୍ଛେଦ କରାଯିବା ସ୍ଥାନକୁ ନିଆଯାଏ । ଶୋଭାଯାତ୍ରାର ଶୀର୍ଷରେ ବ୍ୟବଚ୍ଛେଦ କରାଯିବା ନିମନ୍ତେ ବ୍ୟବହାର ହେବା ଅସ୍ତ୍ର ଗୋଟିଏ ଗୋଟିଏ ଗ୍ଲେଟିଆ ପେଡ଼ିରେ ଧରି ଜଣେ ପୁରୁଷ ଚାଲେ ଏବଂ ଏହାର ପଛେ ବାଦ୍ୟ ବଜାଉଥିବା ଲୋକେ ଚାଲନ୍ତି । ସାଧାରଣତଃ ଜଣେ ଭଣ୍ଡାରି ଅସ୍ତ୍ରୋପଚାର କରିଥାଏ । ବାଦ୍ୟ ବଜାଉ-ଥିବା ଲୋକଙ୍କ ପଛକୁ ରହେ ଭଣ୍ଡାରି ଏବଂ ଭଣ୍ଡାରିର ପଛରେ ରହେ ବାଳକ । ବାଳକକୁ ଗାଢ଼ ରଙ୍ଗର କନାରେ ବେଶଭୂଷା କରି ନାନାରକମ ଅଳଙ୍କାର ପିନ୍ଧାଇ ମୁଣ୍ଡରେ ଲାଲ ଜରି ପଗଡ଼ି ଓ ହାତରେ ହାତକନା ଧରି ବସାଯାଇଥାଏ । ଏହାପରି ଶୋଭାଯାତ୍ରା ଚାଲେ ।

ଅନେକ ଆଦିବାସୀ ସମାଜରେ ମଣିଚର୍ମର ବ୍ୟବଚ୍ଛେଦ ପରେ ନାଚ ତାମସା ହୁଏ । ପୂର୍ବ ଆଫ୍ରିକାର କାଫେରିଆ (Caffraria) ସମାଜରେ, ଓ୍ୱାଗୋଗୋ (Wagogo) ଆଦିବାସୀ ସମାଜରେ ମଣିଚର୍ମର ବ୍ୟବଚ୍ଛେଦ ପରେ ପରେ ଯୁବକମାନଙ୍କୁ ବ୍ୟଭିଚାର କରିବା ନିମନ୍ତେ ପ୍ରଶ୍ରୟ ଦିଆଯାଏ ।

ମଣିଚର୍ମର ବ୍ୟବଚ୍ଛେଦ ସମୟରେ ଯେଉଁ ରକ୍ତ ବାହାରେ ସେଥିରେ ଅଦ୍ଭୁତ ଶକ୍ତି ଥିବାର ଅନେକ ଆଦିବାସୀ ସମାଜରେ ବିଶ୍ୱାସ କରିଥାଆନ୍ତି । ହାଣ୍ଡୁରା ଦେଶରେ ବ୍ୟବଚ୍ଛେଦ ସମୟର ରକ୍ତକୁ ନେଇ ପଥରମୂର୍ତ୍ତିକୁ ପୂଜା କରିଥାନ୍ତି । ପ୍ରାୟ ଅଧିକାଂଶ ଆଦିବାସୀ ସମାଜରେ ବୟସ୍କ ପୁରୁଷମାନେ ବ୍ୟବଚ୍ଛେଦ କାର୍ଯ୍ୟ କରିଥାନ୍ତି । କିନ୍ତୁ କେତେକ ସ୍ଥାନରେ ବୃଦ୍ଧା ନାରୀମାନେ ଏହି କାର୍ଯ୍ୟ କରୁଥିବା ଜଣାଯାଏ । ନିଉହେବ୍ରିଡ଼ସରେ ମଣିଚର୍ମର ବ୍ୟବଚ୍ଛେଦ କାର୍ଯ୍ୟ ବୃଦ୍ଧାମାନଙ୍କ ଦ୍ୱାରା କରାଯାଏ । ପୁଣି ଚର୍ମକୁ ପତ୍ରରେ ଗୁଡ଼ାଇ ବାଳକ ରହିବା ଘରେ କେତେକ ଦିନ ପାଇଁ ଦ୍ୱାରଦେଶରେ ଓହଳାଇ ଦିଆଯାଏ । ଏହିଦିନ-ତକ ବାଳକ ଅନ୍ୟ ସମସ୍ତଙ୍କଠାରୁ ଅଲଗା ରହେ ।

## ବାଳିକାମାନଙ୍କର ବ୍ୟବଚ୍ଛେଦ

ବାଳକମାନଙ୍କର ଯେପରି ମଣିଚର୍ମର ବ୍ୟବଚ୍ଛେଦ ହୁଏ ସେହିପରି ବାଳିକାମାନଙ୍କର ବ୍ୟବଚ୍ଛେଦ କରାଯିବା ପ୍ରଥା କେତେକ

ସ୍ଥାନରେ ପ୍ରଚଳନ ଅଛି । ଏହି ପ୍ରଥା ଇଜିପ୍ଟ, ଆରବ, ଦକ୍ଷିଣଆମେରିକା, ମାଳୟ, ଇଣ୍ଡୋନେସିଆ, ଆଫ୍ରିକା ଓ ଏସିଆ ଦେଶର କେତେକ ସ୍ଥାନରେ ଦେଖିବାକୁ ମିଳେ । ବାଳିକାମାନଙ୍କ ଭଗାଙ୍କୁରର ଚର୍ମକୁ କାଟି ବାହାର କରିଦେଇଥାନ୍ତି । ଆଉ କେତେକ ସ୍ଥାନରେ ପୂର୍ବ ଭଗାଙ୍କୁର ଓ ଉପଭଗୋଷ୍ଠ ବା ଭଗ କାଟିଦିଅନ୍ତି ।

ବହୁ ପ୍ରାଚୀନ କାଳରେ ବାଳିକାମାନଙ୍କ ଠାରେ ବ୍ୟବଚ୍ଛେଦ ପ୍ରଥା ପାଳନ କରିବା ପ୍ରଥା ଇଜିପ୍ଟରେ ପ୍ରଚଳନ ଥିଲା । ଇସଲାମ୍ ଧର୍ମର ପ୍ରଚାର ପୂର୍ବରୁ ଏହି ପ୍ରଥା ସେଠାରେ ପ୍ରଚଳନ ଥିବା ଜଣାଯାଏ । ବର୍ତ୍ତମାନ ସୁଦ୍ଧା ଏହା ପ୍ରଚଳନ ଥିବା ଅନୁମାନ କରନ୍ତି । ବହୁ ଆଦିବାସୀ ସମାଜରେ ଏହି ପ୍ରଥାର ପ୍ରଚଳନ ଥିବା ଜଣାଯାଏ ।

ବାଳିକାମାନଙ୍କ ଠାରେ ବ୍ୟବଚ୍ଛେଦ ସମୟରେ ସାଧାରଣତଃ ଉପଭଗୋଷ୍ଠର ଭିତର ପାଖକୁ କୋରି ଏବଂ ଭଗାଙ୍କୁରର କେତେକ ଅଂଶ କାଟି ବାହାର କରିଦିଅନ୍ତି । ଏହି ସମୟରେ ଧାତୁରେ ତିଆରି ଛୁରି କିମ୍ବା ଦାନ୍ତୁଆ ପଥରଖଣ୍ଡ ବ୍ୟବହାର ହୋଇଥାଏ । କିନ୍ତୁ ଦେଶ ଓ ସମାଜ ଅନୁଯାୟୀ ଏହି ପ୍ରଥାରେ ପରିବର୍ତ୍ତନ ଦେଖାଯାଏ । କେତେକ ସ୍ଥାନରେ ଭଗୋଷ୍ଠର ଭଗାଙ୍କୁରକୁ କାଟି ବାହାର କରିଦିଅନ୍ତି । ଆଉ କେତେକ ସ୍ଥାନରେ କେବଳ ଭଗୋଷ୍ଠକୁ କ୍ଷତବିକ୍ଷତ କରିଦିଅନ୍ତି । ପୁଣି ଆଉ କେତେକ ସ୍ଥାନରେ ଭଗାଙ୍କୁର ଉପର ଚର୍ମକୁ କାଟିଦିଅନ୍ତି । ଇଜିପଟ୍, ନୁବିଆ, ଆବିସିନିଆ ପ୍ରଭୃତି ଦେଶମାନଙ୍କରେ ଏବଂ ଆଗୁ (Agau) ଏବଂ ଗୋଙ୍ଗା (Gonga) ପ୍ରଭୃତି ଆଦିବାସୀ ସମାଜରେ ଏହି ପ୍ରଥାର ପ୍ରଚଳନ ଥିବା ଦେଖାଯାଏ ।

ଆଫ୍ରିକାର ସାହିଲ (Swahilis) ସମାଜରେ ଯଦି କୌଣସି ଯୁବତୀର ପ୍ରସବଜାତ ଶିଶୁମାନେ ବଞ୍ଚନ୍ତି ନାହିଁ କିମ୍ବା ଯେଉଁ ନାରୀ ବାରମ୍ବାର ବିଧବା ହୋଇଯାଉଥାଏ, ତାହାହେଲେ ଯୁବତୀର ସ୍ୱାମୀ ନିଜର ବାପମା'ଙ୍କୁ ଯୁବତୀର ବ୍ୟବଚ୍ଛେଦ ନିମନ୍ତେ କହେ ଓ ସେମାନେ ସମ୍ମତ ହୁଅନ୍ତି । ଜଣେ ପ୍ରୌଢ଼ା ବା ବୃଦ୍ଧା ନାରୀ ଯୁବତୀକୁ କେହି ନ ଥିବା ବଖରାକୁ ନେଇ ତାକୁ ଉଲଗ୍ନ କରିଦିଏ । ସେଠାରେ ଯୁବତୀ ଉଲଗ୍ନ ଅବସ୍ଥାରେ ଗୋଡ଼ ଦୁଇଟି ଓସାରି ବସେ । ବୃଦ୍ଧା ଯୁବତୀର ଯୋନିରେ

ଆଙ୍ଗୁଠି ଦେଇ ଖୋଳି ଭଗାଙ୍କୁର ତଳର ମାଂସପିଣ୍ଡୁଳାକୁ କାଟି ବାହାର କରିଦିଏ । ସେମାନଙ୍କ ସମାଜରେ ବିଶ୍ବାସ କରନ୍ତି ଯେ ବ୍ୟବଚ୍ଛେଦ ସମୟରେ ଯେଉଁ ନାରୀମାନେ କଷ୍ଟ ଅନୁଭବ କରନ୍ତି ସେମାନଙ୍କ ଘା ଶୀଘ୍ର ଭଲ ହୁଏ ନାହିଁ । ବ୍ୟବଚ୍ଛେଦ ପରେ କ୍ଷତ ସ୍ଥାନରେ କିଛି ପାଉଡ଼ର ବୋଳି ଦିଅନ୍ତି ।

ଇଜିପ୍ଟ ଦେଶରେ ବାଳିକାମାନେ ନ' ଠାରୁ ବାରବର୍ଷ ବୟସର ହେଲେ ବ୍ୟବଚ୍ଛେଦ ବେଳେ ସେମାନଙ୍କର ଭଗାଙ୍କୁର କାଟି ବାହାର କରିଦେଉଥିଲେ । ବ୍ୟବଚ୍ଛେଦ କାର୍ଯ୍ୟ ଭଣ୍ଡାରିମାନେ କରୁଥିଲେ । ଭଣ୍ଡାରିମାନେ ଆଙ୍ଗୁଠିରେ ପାଉଁଶ ବୋଳି ଭଗାଙ୍କୁରକୁ ଧରି ପଦାକୁ ଟାଣନ୍ତି ଓ ତାହା ଟାଣିହୋଇ ପଦାକୁ ରହିଲା ପରେ ଗୋଟିଏ ଥରରେ ତାହାକୁ ଖୁରରେ କାଟି ଦିଅନ୍ତି । କ୍ଷତ ସ୍ଥାନରେ କିଛି ପାଉଁଶ ବୋଳାଯାଏ ଓ କେତେକ ଦିନପରେ କ୍ଷତଟି ଶୁଖିଯାଏ । କେନିଆରେ କିକୁ୍ୟ ଆଦିବାସୀ ସମାଜରେ ବୃଦ୍ଧାନାରୀମାନେ ଅଦାଡ଼ୁଆ ଛୁରି ସାହାଯ୍ୟରେ ଭଣ୍ଡାରିର କାର୍ଯ୍ୟ କରିଥାଆନ୍ତି । ଏହା ସର୍ବସାଧାରଣ ସ୍ଥାନରେ ହୁଏ । ସେତେହେତୁ ବହୁତ ଲୋକ ଦେଖିବା ନିମନ୍ତେ ରୁଣ୍ଡ ହୁଅନ୍ତି ।

ଆଫ୍ରିକା ଗୋଲ୍ଡ଼ କୋଷ୍ଟ୍‌ରେ ନାନକନ ଆଦିବାସୀ ସମାଜରେ ବାଳିକାର ଯୌବନ ଆରମ୍ଭରେ ହିଁ ଏହି ବ୍ୟବଚ୍ଛେଦର ପ୍ରଥା ପାଳନ କରାଯାଇଥାଏ । ଗୋଟିଏ ପୁରୁଷ ଗୋଡ଼ ଲମ୍ବାଇ ବସେ । ଯୁବତୀ ପୁରୁଷ ଆଡ଼କୁ ପିଠିକରି ଗୋଡ଼ ଉପରେ ବସେ । ଯୁବତୀର ଗୋଡ଼ ଦୁଇଟାକୁ ଓସାରି ଦେଇ ବ୍ୟବଚ୍ଛେଦ କରାଯିବା ଅଂଶକୁ ଭଣ୍ଡାରି ହାତରେ ଧରିନେଇ ଚଟ୍‌କରି କାଟିଦିଏ । ଏହି ସମୟରେ ଯୁବତୀର ଗୃହପାଖେ ଜମା ହୋଇଥିବା ମହିଳାମାନେ ଖୁବ୍ ପାଟି କରନ୍ତି ଯାହାଦ୍ୱାରା ଯୁବତୀର କ୍ରନ୍ଦନ ଏହି ପାଟିତୁଣ୍ଡ ଯୋଗୁଁ ବାହାରକୁ ଶୁଭେ ନାହିଁ । ଯୁବତୀ ଛ'ଦିନ ପର୍ଯ୍ୟନ୍ତ କ୍ଷତସ୍ଥାନ ଶୁଖିବା ନିମନ୍ତେ ବିଶ୍ରାମ ନିଏ ।

କେତେକ ସମାଜରେ ଭଣ୍ଡାରିମାନେ ବ୍ୟବଚ୍ଛେଦ କାର୍ଯ୍ୟ କଲାବେଳେ ଆଉ କେତେକ ସମାଜରେ ବୃଦ୍ଧା ନାରୀମାନଙ୍କ ଦ୍ୱାରା କରାଯାଏ । ଉତ୍ତର ନାଇଜେରିଆର ବାମ୍ବରା ଓ ମାଣ୍ଡିଗୋ ଆଦିବାସୀ ସମାଜରେ କମାରମାନଙ୍କ ଦ୍ୱାରା ବ୍ୟବଚ୍ଛେଦ କର୍ମ କରାଯାଉଥାଏ । କମ୍

ବୟସର ବାଳିକାମାନଙ୍କ ପାଇଁ କମାରମାନେ ନିଯୁକ୍ତ ହୁଅନ୍ତି ଓ ଯୁବତୀ-ମାନଙ୍କ ପାଇଁ କମାରୁଣୀମାନେ ନିଯୁକ୍ତ ହୁଅନ୍ତି । ସେମାନଙ୍କ ସମାଜରେ ବିଶ୍ୱାସ ଯେ ବ୍ୟବଚ୍ଛେଦଦ୍ୱାରା ଯୁବତୀମାନେ ନିଜ ସ୍ୱାମୀ ପ୍ରତି ବିଶେଷ ଅନୁରକ୍ତ ହୋଇ ରହନ୍ତି । କିନ୍ତୁ ଯୁବତୀ ନିଜର ସତୀତ୍ୱ ରକ୍ଷା କରିବା ସେପରି କିଛି ଦେଖାଯାଏ ନାହିଁ ।

ମସାଇ ଆଦିବାସୀ ସମାଜରେ ବ୍ୟବଚ୍ଛେଦ ପୂର୍ବରୁ ମା'ମାନେ ଝିଅକୁ ଆଶ୍ୱାସନା ଦେଇ ବାଳିକାର ଜନନେନ୍ଦ୍ରିୟକୁ ଥଣ୍ଡା ପାଣିରେ ସଫା କରିଦିଅନ୍ତି । ଏହାଦ୍ୱାରା ବ୍ୟବଚ୍ଛେଦ ସମୟରେ କଷ୍ଟ କମିଯାଏ ବୋଲି ସେମାନଙ୍କ ଧାରଣା । ଖଣ୍ଡିଏ ତୀକ୍ଷ୍ଣ ଲୁହା ପଥରରେ ବାଳିକାର ଭଗାଙ୍କୁରଟି କଟାଯାଏ । ତା'ପରେ କ୍ଷତ ସ୍ଥାନକୁ କ୍ଷୀରରେ ଧୋଇ ଦିଅନ୍ତି ।

କୋଲମ୍ବିଆର ଅଞ୍ଚଳର ନିଗ୍ରୋ ସମାଜରେ ଏହି ପ୍ରଥା ବୀଭତ୍ସ ଧରଣରେ ପାଳନ କରାଯାଏ । ନଡ଼ିଆ ସଢ଼େଇର ଆଗକୁ ସଫା କରି ତାହାକୁ ଧୋଇ ଦାଢ଼ୁଆ କରନ୍ତି । ସଢ଼େଇର ରନ୍ଧ୍ର ଦେଇ ବାଳିକାର ଭଗାଙ୍କୁରଟି ରଖାଯାଏ । ତା'ପରେ ଛୁରି ବା ଭଙ୍ଗାକାଚ ସାହାଯ୍ୟରେ ସେହିଟିକୁ କାଟିଦିଅନ୍ତି । ଉତ୍ତର ଟ୍ରାନସଭାଲର ଆଦିବାସୀ ସମାଜରେ ପ୍ରଥମେ ବାଳିକାକୁ ଚିତ୍‌କରି ଗୋଡ଼ ଓସାରି ଶୁଆଇ ଦିଅନ୍ତି । ତା'ପରେ ଜଣେ ବୃଦ୍ଧା ହାତନଖରେ କନା ଗୁଡ଼ାଇ ଭଗାଙ୍କୁରଟିକୁ ଛିଣ୍ଡାଇ ଦିଏ ।

ଭାରତରେ ମଧ୍ୟ ବାଳିକାମାନଙ୍କ 'ବ୍ୟବଚ୍ଛେଦ ପ୍ରଥା'ର ପ୍ରଚଳନ ଥିଲା । ଉତ୍ତର ଭାରତର କେତେକ ଆଦିବାସୀ ସମାଜରେ ବିଶ୍ୱାସ କରୁଥିଲେ ଯେ ବାଳକମାନଙ୍କର ବ୍ୟବଚ୍ଛେଦ ଚର୍ମ ନାରୀମାନେ ଖାଇଲେ ସେମାନେ ପୁତ୍ର ପ୍ରସବ କରିବେ । ମୁସଲମାନ ସମାଜରେ ପୂର୍ବେ ଏହା ପାଳନ କରୁଥିଲେ । ବରୋଡ଼ା, ଉତ୍ତର-ପଶ୍ଚିମ-ସୀମାନ୍ତ ପ୍ରଦେଶରେ ମୁସଲମାନ ସମାଜରେ ଭୋରା ଏବଂ ସିଆ ଶାଖାର ମୁସଲମାନମାନଙ୍କ ସମାଜରେ ବ୍ୟବଚ୍ଛେଦ ପ୍ରଥା ପ୍ରଚଳନ ଥିଲା । ଆଜିକାଲି ମଧ୍ୟ ଏହି ପ୍ରଥା ବେଲୁଚିସ୍ଥାନରେ ପ୍ରଚଳନ ଥିବା ଶୁଣାଯାଏ । ଇଣ୍ଡୋନେସିଆରେ ମଧ୍ୟ ଏହି ପ୍ରଥା ପ୍ରଚଳନ ଥିବା ଜଣାଯାଏ । ସେଠାରେ ରଜଃସ୍ରାବ ପୂର୍ବରୁ

ବାଳିକାମାନଙ୍କର ବ୍ୟବଚ୍ଛେଦ ହୋଇଥାଏ । ବାଳିକାକୁ ସ୍ନାନ କରାଇ ଗୋଟିଏ ପଥର ଉପରେ ଶୁଆଇ ଦଅନ୍ତି । ଜଣେ ବୃଦ୍ଧାନାରୀ ଭଗାଙ୍କୁରର କିଛି ଅଂଶ କାଟିଦିଏ ଏବଂ କ୍ଷତ ସ୍ଥାନରେ ଏକପ୍ରକାର ପତ୍ର ବାଟି ଲଗାଇଦିଏ । ଏହା ପରେ ବୃଦ୍ଧା ବାଳିକାକୁ ଗୋଟିଏ କୁଡ଼ିଆ ଭିତରକୁ ନେଇଯାଏ । କ୍ଷତ ଶୁଖିବା ପର୍ଯ୍ୟନ୍ତ ବାଳିକାକୁ ଏହି କୁଡ଼ିଆଭିତରେ ରହିବାକୁ ପଡ଼େ । ଜାଭାରେ ଛ' ବା ସାତ ବର୍ଷ ବୟସର ବାଳିକାମାନଙ୍କ ଠାରେ, ସେଲିବସ୍ ଦ୍ୱୀପରେ ତିନିବର୍ଷଠାରୁ ସାତବର୍ଷ ବୟସ ଭିତରେ ବାଳିକାର ବ୍ୟବଚ୍ଛେଦ କରାଯାଇଥାଏ ।

କେତେକ ଆଦିବାସୀ ସମାଜରେ ବ୍ୟବଚ୍ଛେଦର ପୂର୍ବ ଆଠଦିନ ପର୍ଯ୍ୟନ୍ତ ନାଚତାମସା ଓ ଭୋଜିଭାତ ହୁଏ । ବାଳିକାକୁ ଦଶ ବର୍ଷ ବୟସ ହେଲାବେଳେ ଏହି ତାମସା ଆରମ୍ଭ ହୁଏ । ଭୋଜିଭାତରେ ନିଶାଦ୍ରବ୍ୟର ବ୍ୟବହାର ହୁଏ । ସାତ ବା ଆଠ ଦିନ ପର୍ଯ୍ୟନ୍ତ ନିଶାଖାଇ ବାଳିକା ପ୍ରାୟ ଅଚେତ ଅବସ୍ଥାରେ ରହେ । ଅଷ୍ଟମ ଦିନ ନିଶା ଅବସ୍ଥାରେ ରହିଲାବେଳେ ଜଣେ ବୃଦ୍ଧା ନାରୀଦ୍ୱାରା ଏହା ସମ୍ପାଦନ କରାଯାଏ । ଏହାପରେ ବାଳିକାକୁ ଗାଁରେ ବୁଲାଇଥାନ୍ତି ।

ରୁଷିଆ ଓ ରୁମେନିଆରେ ମଧ୍ୟ ଏହି ପ୍ରଥା ପ୍ରଚଳିତ ଥିଲା । ସେହି ଦେଶମାନଙ୍କରେ ଉଭୟେ ଯୁବକ ଓ ଯୁବତୀ ବିଶେଷତଃ ଯୁବତୀମାନଙ୍କ ପକ୍ଷେ ପାଳନ କରାଯାଉଥିଲା । ବ୍ୟବଚ୍ଛେଦ ବେଳେ ଯୁବତୀମାନଙ୍କର ଜନନେନ୍ଦ୍ରିୟ ଓ ସ୍ତନରେ ମଧ୍ୟ କ୍ଷତ କରାଯାଉଥିଲା ।

ଅଗ୍ରଚର୍ମ ବ୍ୟବଚ୍ଛେଦ ହେଉଛି ସବୁଠାରୁ ପୁରାତନ ଅସ୍ତ୍ରୋପଚାର ବିଧି । ଏହି ବ୍ୟବଚ୍ଛେଦ ପ୍ରଥା ଆଦିବାସୀ ସମାଜକୁ ବାଦ ଦେଲେ ୟୁହୁଦି, ମୁସଲମାନ ଓ କେତେକ ଦେଶର ଖ୍ରୀଷ୍ଟିୟାନ ସମାଜରେ ପ୍ରଚଳିତ ଅଛି, ଯଥା—ଆବିସିନିଆ, ବୋଗ (Bogos), ଇଜିପ୍ଟ ପ୍ରଭୃତି ।

ଆଫ୍ରିକା ମହାଦେଶର ପଶ୍ଚିମ ଉପକୂଳ ଆଦିବାସୀ ସମାଜ, କାଫିର, ପୂର୍ବ ଓ ମଧ୍ୟ ଆଫ୍ରିକାର କେତେକ ସମାଜ, ମାଡ଼ାଗାସ୍କର, ଅଷ୍ଟ୍ରେଲିଆର ମେଲାନେସିଆ (Melanasia), ଇଣ୍ଡିଆନ ଆର୍ଚିପିଲାଗୋ, ପୋଲିନେସିଆ ଓ ପଶ୍ଚିମ ଗୋଲାର୍ଦ୍ଧର ଆମେରିକା-ଭାରତୀୟ ଆଦିବାସୀ ସମାଜମାନଙ୍କରେ ବ୍ୟବଚ୍ଛେଦ ପ୍ରଥାକୁ ବିବାହ-ପୂର୍ବର-ବିଧି ହିସାବରେ

ଧରଥାଆନ୍ତି । ୟୁହୁଦି, ମୁସଲମାନ ଓ ଖ୍ରୀଷ୍ଟିୟାନ ସମାଜରେ ବ୍ୟବଚ୍ଛେଦ ପ୍ରଥାକୁ ଆତ୍ମାର ଶୁଦ୍ଧି ହିସାବରେ ସ୍ୱୀକାର କରନ୍ତି । ଆଦିବାସୀ ସମାଜରେ ଏହି ପ୍ରଥା ପାଳନ କରିବା ବାଳକର ପୁରୁଷତ୍ୱ ପ୍ରାପ୍ତି ହିସାବରେ ଧରାଯାଏ । ସେହେତୁ ବାଳକ ଏହି ବିଧି ପାଳନ ପରେ ବିବାହ ଓ ସନ୍ତାନ ଜନ୍ମ କାର୍ଯ୍ୟ ପାଇଁ ଉପଯୁକ୍ତ ହେବା ବିବେଚନା କରାଯାଏ । ଯେଉଁ ଯୁବକର ଏହି ବିଧି ପାଳନ କରାଯାଇ ନ ଥାଏ ସେହି ସମାଜରେ ତାହାକୁ ଯୁବତୀମାନେ ବିବାହଯୋଗ୍ୟ ବୋଲି ସ୍ୱୀକାର କରି ନ ଥାନ୍ତି । ଏହିପରି ଯୁବକକୁ କୌଣସି ଯୁବତୀ ପ୍ରେମ କରିବା ଅସଙ୍ଗତ ଓ ସାମାଜିକ ନିୟମ ବିରୁଦ୍ଧ ବୋଲି ଭାବନ୍ତି । ଆଫ୍ରିକା, ମାଲୟ ଆର୍ଚିପିଲାଗୋ ଓ ଦକ୍ଷିଣ ଆମେରିକାର କେତେକ ଆଦିବାସୀ ସମାଜରେ ଯୁବତୀର ବିବାହ ପୂର୍ବରୁ ତାହାଠାରେ ମଧ୍ୟ ବ୍ୟବଚ୍ଛେଦ ବିଧି ପାଳନ କରାଯାଏ । ଏହି ବିଧି ପାଳନ ନ କରିବା ପର୍ଯ୍ୟନ୍ତ ଯୁବତୀ ବିବାହଯୋଗ୍ୟା ନୁହେଁ ବୋଲି ମଧ୍ୟ ସେହି ସମାଜମାନଙ୍କରେ ସ୍ୱୀକାର କରିଥାନ୍ତି ।

ଯୁବକମାନଙ୍କର ବ୍ୟବଚ୍ଛେଦ ଯେପରି ସ୍ୱାସ୍ଥ୍ୟପକ୍ଷେ ଉପକାରୀ ବୋଲି କେତେକ ଡାକ୍ତର ମତ ଦେଇଥାନ୍ତି ସେହିପରି ୧୯୨୯ ମସିହାରେ ଆମେରିକାର ଡାଃ ଏକ୍ରିଜ (C. Eckridge) ଯୁବତୀମାନଙ୍କ ପକ୍ଷେ ତାହା ଉପକାରୀ ବୋଲି ମତ ଦେଇଥିଲେ । ସେ କହିଥିଲେ ଯେ ବାଳିକାମାନଙ୍କ ଠାରେ ବ୍ୟବଚ୍ଛେଦ ପ୍ରଥା ପାଳନ କରାଗଲେ ସେମାନେ ହସ୍ତମୈଥୁନ, ସ୍ନାୟୁବିକାର ପ୍ରଭୃତିରୁ ରକ୍ଷାପାଇବେ, ଯେହେତୁ ଭଗାଙ୍କୁର ନିକଟରେ ଶୁଖିଲା ମଇଳା ଜମି ଉତ୍ତେଜନା ସୃଷ୍ଟି କରିବ ନାହିଁ ।

ବାଳକ ଓ ବାଳିକା ବା ଯୁବକ ଓ ଯୁବତୀଙ୍କ ପକ୍ଷେ ଏହି ଯେଉଁ ବ୍ୟବଚ୍ଛେଦ ପ୍ରଥା ଚଳି ଆସୁଛି ତାହା କିପରି ଓ କାହିଁକି ସୃଷ୍ଟି ହେଲା, ତାହା କହିବା ଏତେ ସହଜ ନୁହେଁ । ଯୌନବିତ୍ ହେରସ୍ ଫିଲଡ଼ (Dr. Hirschfeld)ଙ୍କ ମତରେ ଯୁବତୀମାନଙ୍କର ବ୍ୟବଚ୍ଛେଦ କରାଇବା ଦ୍ୱାରା ସେମାନଙ୍କର ଯୌନଉତ୍ତେଜନା କମିଯାଏ । ଆଫ୍ରିକାର ଆଦିବାସୀମାନେ ବିଶ୍ୱାସ କରନ୍ତି ଯେ ବ୍ୟବଚ୍ଛେଦ ଦ୍ୱାରା ଯୌନଶକ୍ତିର ପୁନରୁଦ୍ଧାର ହୋଇଯାଏ ଓ ଯୌନସଙ୍ଗମ ବିଶେଷ ଭାବେ ଉପଭୋଗ୍ୟ ହୁଏ । ଯେଉଁ ସମାଜରେ ନାରୀମାନଙ୍କର ଭଗାଙ୍କୁର ବହୁତ ବୃଦ୍ଧି

ହୋଇଥାଏ (ଯଥା—ନିଗ୍ରୋ ବା ଆବସିନିଆର ନାରୀମାନଙ୍କର) ସେହି ସମାଜରେ ନାରୀମାନଙ୍କ ବ୍ୟବଚ୍ଛେଦ ଫଳରେ ଯୌନସଙ୍ଗମର ସୁବିଧା ହୁଏ । ଅନେକ ଆଦିବାସୀ ସମାଜରେ ବିଶ୍ୱାସ କରନ୍ତି ଯେ ବ୍ୟବଚ୍ଛେଦ ଦ୍ୱାରା ଯୁବତୀମାନଙ୍କର ବନ୍ଧ୍ୟାଦୋଷ ଗୁଚିଯାଏ ।

ଯେଉଁ ଜାତିରେ ନାରୀମାନଙ୍କ ଭଗାଙ୍କୁର ଆକାରରେ ବଡ଼, ସେହି ଜାତିମାନଙ୍କରେ ନାରୀମାନଙ୍କ ବ୍ୟବଚ୍ଛେଦ ପ୍ରଥା ବେଶି ପ୍ରଚଳନ ଥିବା ଦେଖାଯାଏ । ସେହେତୁ ବ୍ୟବଚ୍ଛେଦ ଫଳରେ ରତିକ୍ରିୟା ସୁବିଧା ହୁଏ ବୋଲି କେତେକ ଯୌନବିତ୍ ମତ ଦିଅନ୍ତି । ଯୌନବିତ୍ ବ୍ରୁସ୍ (**Bruce of Kinnaird**) ଏହା କହି ଦର୍ଶାନ୍ତି ଯେ ଆବସିନିଆର ନାରୀମାନଙ୍କ ଭଗାଙ୍କୁର ଏତେ ବଡ଼ ରହେ ଯେ ରତିକ୍ରିୟା ସହଜ ଓ ସୁବିଧାରେ ହୋଇପାରେ ନାହିଁ । ତେଣୁ ଏହି ପ୍ରଥାର ପ୍ରଚଳନ । ନାଇଗର (**Niger Delta**) ଉପତ୍ୟକାର ଜଣେ ବୃଦ୍ଧା ମହିଳା କହିଥିଲେ ଯେ ଅନେକ ବର୍ଷ ପୂର୍ବେ ସେଠାର ନାରୀମାନଙ୍କ ଠାରେ ଉନ୍ମାଦ ଓ ପାଗଳାମି ଦେଖାଦେଇଥିଲା । ଏହି ବ୍ୟବଚ୍ଛେଦ ପ୍ରଥାଦ୍ୱାରା ସେସବୁ ଦୂର ହେଲା ।



## ଆକର୍ଷଣ ଓ ପ୍ରେମ

ଯୌନକ୍ଷେତ୍ରରେ ଜଳବାୟୁ, ପରିବେଶ, ଆର୍ଥିକ ପରିସ୍ଥିତି, ସାମାଜିକ ସ୍ଥିତି ଓ ଜାତି ନେଇ ପ୍ରେମର ଅବସ୍ଥା ସୃଷ୍ଟି ହୋଇଥିବା ଦେଖାଯାଏ । ପୃଥିବୀର ବିଭିନ୍ନ ଦେଶର ଆଦିବାସୀ ସମାଜଗୁଡ଼ିକୁ ଦେଖିଲେ ମନେହୁଏ ଯେ ପୂର୍ବେ ଯୌନକ୍ଷେତ୍ରରେ ନାନାରକମ ଧର୍ମ ସମ୍ବନ୍ଧୀୟ ଆଚରଣ ବା ପ୍ରଥାର ପ୍ରଭାବ ଦେଖାଗଲେ ମଧ୍ୟ ସେମାନଙ୍କ ମଧ୍ୟରେ (କ) ପ୍ରେମରେ ଈର୍ଷା ନ ଥାଏ, (ଖ) ଦଳଗତ ବ୍ୟକ୍ତିତ୍ୱରକୁ ବିଶେଷ ଦୃଷ୍ଟି ଦିଆଯାଏ ନାହିଁ, (ଗ) ନାରୀମାନଙ୍କ ଠାରେ ଶୀଳତା ବା ଲଜ୍ଜା ସେତେଦୂର ରହେ ନାହିଁ, (ଘ) ସମାଜ ନାରୀର ସତୀତ୍ୱ ବା କୁମାରୀତ୍ୱକୁ ବିଶେଷ ଗୁରୁତ୍ୱ ଦେଇ ନ ଥାନ୍ତି, (ଙ) ରତିକ୍ରିୟା ସହିତ ପ୍ରେମର ସମ୍ବନ୍ଧ ପ୍ରାୟ ରହେ ନାହିଁ ଏବଂ ରତିକ୍ରିୟାକୁ ଏକରକମ ଧର୍ମଗତ କାର୍ଯ୍ୟ ବୋଲି ଗ୍ରହଣ କରିଥାନ୍ତି, (ଚ) ପୁଣ୍ୟପର୍ବମାନଙ୍କରେ ବା ପୂଜା କରିବା ଦିବସମାନଙ୍କରେ ଯୁବକ ଓ ଯୁବତୀମାନଙ୍କୁ ଯୌନ ଶିକ୍ଷା ମିଳିଥାଏ ।

ସାଧାରଣତଃ ପୁରୁଷମାନେ ନିଜର ବ୍ୟବହାର ବା ଆଚରଣ-ଦ୍ୱାରା ନାରୀକୁ ଆକୃଷ୍ଟ କରାଇ ସେମାନଙ୍କଠାରେ ପ୍ରଥମେ ଉତ୍ତେଜନା ସୃଷ୍ଟି କରାଇଥାନ୍ତି । ନାରୀ ସ୍ଥିରଭାବେ ରହି ଓ ସହି ନିଜର ସଙ୍ଗୀ ରୂପେ ପୁରୁଷକୁ ଗ୍ରହଣ କରେ । ଏହି ନିୟମ ଅତି ପ୍ରାଚୀନ କାଳରୁ ଚଳି ଆସିଛି । ସେହେତୁ ଆଦିବାସୀ ସମାଜରେ ଓ ସଭ୍ୟ ସମାଜରେ ମଧ୍ୟ ପୁରୁଷ ପ୍ରଥମେ ଆରମ୍ଭ କରିବା ଦେଖାଯାଏ । ଆଦିବାସୀ ସମାଜରେ ଯୌନ ପ୍ରବୃତ୍ତି ଅସଂଯତ ଓ ପଶୁବତ୍ ରହେ । କିନ୍ତୁ ସଭ୍ୟ ସମାଜରେ ଆଦିବାସୀ ସମାଜ ଅପେକ୍ଷା ଯୌନ ପ୍ରବୃତ୍ତି ସଂଯତ ରହିଲେ ମଧ୍ୟ ଏହା ଦୁର୍ବୋଧ । ଆଦିବାସୀ ସମାଜରେ ପ୍ରେମ ଓ ରତିକ୍ରିୟା ଏକ, କିନ୍ତୁ ସଭ୍ୟ ସମାଜରେ ଏହା ପୃଥକ୍ ଭାବେ ଗତି କରେ । ସେହେତୁ ସଭ୍ୟ ସମାଜରେ ଈର୍ଷା, ଲଜ୍ଜା ଓ ସତୀତ୍ୱର ସ୍ଥାନ ରହେ ।

ମନ ଓ ଶରୀର ଉଭୟର ସମ୍ବନ୍ଧ ନେଇ ପ୍ରକୃତ ପ୍ରେମର ସୃଷ୍ଟି । ସେହେତୁ ପ୍ରେମରେ ଉଭୟର ସମ୍ବନ୍ଧ ରହେ । କେବଳ ଶିଶୁ ଜନ୍ମ କରିବା ଲକ୍ଷ୍ୟ ନେଇ ପ୍ରକୃତ ପ୍ରେମ ରହିପାରେ ନାହିଁ । କିନ୍ତୁ ପୁରୁଷ ଓ ନାରୀ ଉଭୟଙ୍କ ମଧ୍ୟରେ ପ୍ରେମରୁ ଶିଶୁ ଜନ୍ମ ହୁଏ । ଯେପରି ଜନ୍ମ ମାନେ ମରଣ ରହିଛି; କିନ୍ତୁ ମରଣ ଜୀବନର ଲକ୍ଷ୍ୟ ନୁହେଁ ।

ଅନେକ ସମୟରେ ଯୌନ ପ୍ରବୃତ୍ତିର ତୃପ୍ତି ହେଲାବେଳେ ଇଚ୍ଛା ନ ଥିଲେ ସୁଦ୍ଧା ଶିଶୁ ଜନ୍ମଲାଭ କରିଥାନ୍ତି । କେତେକ ସମୟରେ ଛୁଆ ଜନ୍ମ କରିବାର ଆକାଙ୍କ୍ଷା ରଖି ବା ବଂଶବୃଦ୍ଧିର ଆଶା ରଖି ଯୌନ ସଙ୍ଗମ ହୋଇଥାଏ । କିନ୍ତୁ ଅଧିକାଂଶ ସମୟରେ ରତିବେଳେ ଗର୍ଭସଞ୍ଚାର ନ ହେବା ଶ୍ରେୟ ବୋଲି ଭାବିଥାନ୍ତି । ମନୁଷ୍ୟ ମାନେ ହିଁ ବଂଶବୃଦ୍ଧିର ଇଚ୍ଛା ରହେ । ନାରୀଠାରେ ଏହି ଇଚ୍ଛା ଯେତିକି ମାତ୍ରାରେ ରହେ ତାହା ଅପେକ୍ଷା ବହୁତ କମ ରହେ ପୁରୁଷ ନିକଟରେ । ଉଭୟଙ୍କ ପକ୍ଷେ ବଂଶବୃଦ୍ଧିର ଇଚ୍ଛା ବିଶେଷ ନ ଥିଲେ ମଧ୍ୟ ଯୌନତୃଷା କମିଯାଏ ନାହିଁ । ଏପରି କି କେତେକ ଯୁବତୀଙ୍କର ଗର୍ଭସଞ୍ଚାର ପରେ ଯୌନତୃଷା ବୃଦ୍ଧି ପାଇବାର ଲକ୍ଷ୍ୟ କରାଯାଇଛି । ସେହେତୁ ଗର୍ଭସଞ୍ଚାର ଓ ଯୌନ-ତୃପ୍ତି ଏକ ନୁହେ । ପଶୁମାନଙ୍କ ନିକଟରେ ବଂଶବୃଦ୍ଧି କରିବା ଯୌନତୃଷାର କେବଳ ଏକମାତ୍ର ଲକ୍ଷ୍ୟ । କିନ୍ତୁ ନାରୀ ଓ ପୁରୁଷ ନିକଟରେ ବଂଶବୃଦ୍ଧି ଓ ଯୌନତୃଷା ପୃଥକ୍‌ଭାବେ ରହେ । ସେହେତୁ ସନାତନୀମାନେ କହନ୍ତି ଯେ ଏହା କେବଳ ଅଧୋଗତିର ଚିହ୍ନ ।

ଏଥିରୁ ଜଣାଯିବ ଯେ ଯୌନପ୍ରବୃତ୍ତିର ବଂଶବୃଦ୍ଧି ସହିତ ସମ୍ବନ୍ଧ ଥିଲେ ସୁଦ୍ଧା ମନୁଷ୍ୟ ପକ୍ଷେ କେବଳ ବଂଶବୃଦ୍ଧି ଯୌନପ୍ରବୃତ୍ତିର ଲକ୍ଷ୍ୟ ନୁହେ । ଯୌନପ୍ରବୃତ୍ତି ଯୋଗୁଁ ମନୁଷ୍ୟ ସଂସାର ପ୍ରତି ଅଧିକ ଆକୃଷ୍ଟ ରହେ, ଜୀବନ ଉପଭୋଗ କରିବାକୁ ଇଚ୍ଛା କରେ, ମନୁଷ୍ୟମାନଙ୍କ ମଧ୍ୟରେ ସମ୍ବନ୍ଧ ଆଣେ । ଏହା ଫଳରେ ସମାଜ ଗଢ଼ିଉଠେ । ଯୌନ-ପ୍ରବୃତ୍ତି ଯୋଗୁଁ ବଂଶବୃଦ୍ଧି ହେଲେ ହେଁ ଜୀବନ ଉପଭୋଗ କରିବା ଏହାର ଗୋଟିଏ ପ୍ରଧାନ ଲକ୍ଷ୍ୟ ।

ପିଲାମାନେ ବାପାମାଙ୍କ ପ୍ରତି ଆକୃଷ୍ଟ ହୋଇଥାନ୍ତି ଓ ବାପାମାଙ୍କୁ ସ୍ନେହ କରିଥାନ୍ତି । କେତେକ ମତ ଦିଅନ୍ତି ଯେ ବାଳକାମାନଙ୍କର

ମା'ମାନଙ୍କ ପ୍ରତି ସ୍ନେହ ଅଧିକ । ବାଳକ ଓ ବାଳିକାମାନଙ୍କର ବାପାମାଙ୍କ ପ୍ରତି ସ୍ନେହରେ ପାର୍ଥକ୍ୟ ଥିବା ଲକ୍ଷ୍ୟ କରାଯାଇ ପାରେ । ସେମାନଙ୍କର ଦଶବର୍ଷ ବୟସ ବେଳକୁ ଏହା ଭଲଭାବେ ଦେଖାଯାଏ । ଦଶବର୍ଷ ବୟସର ବାଳିକା ସମ ବୟସର ବାଳକ ଅପେକ୍ଷା ବାପାମାଙ୍କଠାରୁ ଅଧିକ ସ୍ନେହ ପାଆନ୍ତି । କୌଣସି ଦୁଷ୍ଟାମି କରି ବାପାମାଙ୍କ ଠାରୁ ତାଡ଼ନା ପାଇଲେ ବାଳିକା କାନ୍ଦଉଠି ସାନ୍ତ୍ୱନା ପାଇଁ ପ୍ରେମ ଦାବି କରେ । ସମ ଅବସ୍ଥାରେ ବାଳକମାନଙ୍କ ସ୍ୱଭାବ ଭିନ୍ନ ଆକାର ଧାରଣ କରେ । କାନ୍ଦୁଥିବା ବାଳିକା ସ୍ନେହ ପାଇ ତୁନି ହୋଇଗଲାବେଳେ ବାଳକ ତାଡ଼ନା ପାଇ ମଧ୍ୟ ଖାତିର କରି ନ ଥାଏ ।

କେତେକ ଯୌନବିତ୍ ପ୍ରେମକୁ ଦୁଇ ଭାଗରେ ବିଭକ୍ତ କରନ୍ତି । ଗୋଟିଏ ହେଉଛି ଶାରୀରିକ ପ୍ରେମ ଅର୍ଥାତ୍ ଯେଉଁ ପ୍ରେମରେ ଯୌନ-ସଙ୍ଗମର ସ୍ଥାନ ରହେ, ଅନ୍ୟଟି ହେଉଛି ଆଧ୍ୟାତ୍ମିକ ପ୍ରେମ ଯେଉଁଥିରେ ଯୌନସଙ୍ଗମର ସ୍ଥାନ ରହେ ନାହିଁ । ଚିନ୍ତାଧାରାର ସାମ୍ୟ ଯୋଗୁଁ ଦୁହିଁଙ୍କ ଭିତରେ ଏହି ପ୍ରେମ ସୃଷ୍ଟି ହୋଇଥାଏ । ଇଂରେଜୀରେ ଏହାକୁ 'ପ୍ଲେଟୋନିକ ଲଭ' (Platonic love) କହନ୍ତି । କିନ୍ତୁ ପ୍ରକୃତ ପ୍ରେମରେ ଉଭୟର ସ୍ଥାନ ରହିବା ଉଚିତ । ନଚେତ୍ ଏହା ପୂର୍ଣ୍ଣ ନୁହେ । ଯୁବକ ଓ ଯୁବତୀମାନଙ୍କ ମଧ୍ୟରେ କେବଳ ଆଧ୍ୟାତ୍ମିକ ପ୍ରେମ ରହିବା ଏକରକମ ଅସମ୍ଭବ । ଉଭୟଙ୍କ ମଧ୍ୟରେ ଏହି ରକମ ସ୍ନେହ ରହିପାରେ, କିନ୍ତୁ ତାହାକୁ ପ୍ରେମ କୁହାଯିବ ନାହିଁ । ଯଦି ସେମାନଙ୍କ ମଧ୍ୟରେ ଏହି ରକମ ପ୍ରେମ ରହେ ତାହାହେଲେ ଏହା ପ୍ରଥମ ସୋପାନ ବୋଲି ଧରାଯାଇପାରେ କିମ୍ବା କୌଣସି ଅସୁବିଧାବଶତଃ ଉଭୟଙ୍କ ମିଳନ ସମ୍ଭବ ନ ହୋଇ-ପାରିବା ମଧ୍ୟ ଗୋଟିଏ କାରଣ ହୋଇପାରେ ।

ଆଧୁନିକ ଯୁବକ ଓ ଯୁବତୀମାନେ ପ୍ରଥମ ଯୌବନରେ ପ୍ରବୃତ୍ତିର ବଶବର୍ତ୍ତୀ ହେଲେ ମଧ୍ୟ ସାମାଜିକ ପ୍ରତିବନ୍ଧକ ଯୋଗୁଁ ଆଧ୍ୟାତ୍ମିକ ପ୍ରେମର ଆଶ୍ରୟ ନେଇଥାନ୍ତି । ଯୁବତୀମାନେ କୌଣସି ଯୁବକ ପ୍ରତି ଆକୃଷ୍ଟ ହେଲେ ମଧ୍ୟ ଗର୍ଭସଞ୍ଚାରର ଭୟ ଓ ସାମାଜିକ ନିନ୍ଦା ଯୋଗୁଁ ପ୍ରବଳ ଯୌନତୃଷାରେ ମଧ୍ୟ ପ୍ରବୃତ୍ତିକୁ ଦବାଇ ରଖିବାକୁ ବାଧ୍ୟ ହୋଇଥାନ୍ତି । ସେମାନଙ୍କ ସମ୍ବନ୍ଧ କେବଳ କଥାଭାଷାରେ ହିଁ ରହିଯାଏ । ସେହେତୁ

ଏହାକୁ ଆଧ୍ୟାତ୍ମିକ ପ୍ରେମ କୁହାଯାଇ ନ ପାରେ । ସମୟେ ସମୟେ ଯୁବକ ଓ ଯୁବତୀମାନଙ୍କର ଏହିପରି ମାନସିକ ଅତୃପ୍ତି ଯୋଗୁଁ ସେମାନେ ଭବିଷ୍ୟତ୍ ଜୀବନରେ ବିପଥଗାମୀ ହେବାର ଦେଖାଯାଏ ।

## ଆକର୍ଷଣ ଓ ପ୍ରେମ

ପୁରୁଷମାନେ ଯେପରି ନିଜର ବ୍ୟବହାର ଓ ଆଚରଣଦ୍ୱାରା ନାରୀମାନଙ୍କୁ ଆକୃଷ୍ଟ କରାଇଥାନ୍ତି ସେହିପରି ପୁରୁଷମାନଙ୍କୁ ଆକୃଷ୍ଟ କରାଇ ଆୟତ୍ତାଧୀନ କରି ରଖିବା ନିମନ୍ତେ ବା ବଶୀକରଣ କରିବା ନିମନ୍ତେ ନାରୀମାନେ ନାନା ଉପାୟ ପ୍ରୟୋଗ କରୁଥିବା ପ୍ରାୟ ପ୍ରତ୍ୟେକ ଦେଶରେ ଶୁଣାଯାଏ । ଏଥି ନିମନ୍ତେ ସେମାନେ କେତେକ କାର୍ଯ୍ୟ କେବଳ ବିଶ୍ୱାସ ଓ ଭ୍ରାନ୍ତ ଧାରଣା ଉପରେ ନିର୍ଭର କରି କରିଥାନ୍ତି ଯାହା କି ବିଜ୍ଞାନସଂଗତ ନୁହେ ଏବଂ ଏହା ଫଳରେ ପୁରୁଷର କ୍ଷତି ହୋଇଥାଏ । ସାଧାରଣତଃ ନାରୀମାନେ ପୁରୁଷମାନଙ୍କ ଅପେକ୍ଷା ସହଜରେ ଏହି ପ୍ରଥା ବା ପ୍ରଣାଳୀଗୁଡ଼ିକର ଉପାଦେୟତା ଉପରେ ବିଶ୍ୱାସ କରିଥାନ୍ତି । ଏଥିରୁ କେତୋଟି ନିମ୍ନରେ ଦିଆଗଲା--

ହେସି (Hesse) ର ଯୁବତୀମାନେ ପ୍ରେମ କରୁଥିବା ଯୁବକର ପଟେ ଜୋତା ଲୁଚାଇ ନେଇ କେତେଦିନ ବ୍ୟବହାର କରିବା ପରେ ଯୁବକକୁ ଫେରାଇ ଦିଅନ୍ତି । ଏହାଦ୍ୱାରା ଯୁବକ ଯୁବତୀ ପ୍ରତି ଜୀବନସାରା ଆକୃଷ୍ଟ ହୋଇ ରହିବ ବୋଲି ଭାବିଥାଏ । ସ୍ଲାଭ (Slav) ସମାଜରେ, ବୋହିମିଆ (Bohemia), ସାଇଲେସିଆ (Silesia) ପ୍ରଭୃତି କେତେକ ଦେଶର ଯୁବତୀମାନେ ଆପେଲ ବା ପାଉଁରୁଟି ବା ଖଣ୍ଡିଏ ପିଠା କାଖରେ ଜାକନ୍ତି । ଜାକିବା ଫଳରେ କାଖର ଝାଳ ସେଥିରେ ମରେ । ଯେଉଁ ପୁରୁଷ ବା ଯୁବକ ତାହାକୁ ଖାଇବ ସେ ଯୁବତୀ ପ୍ରତି ଆକୃଷ୍ଟ ହୋଇ ରହିବ ବୋଲି ସେମାନେ ଭାବନ୍ତି । କେତେକ ଆଦିବାସୀ ସମାଜର ଯୁବତୀମାନେ ପ୍ରେମ କରୁଥିବା ଯୁବକକୁ ଆକୃଷ୍ଟ କରିବା ନିମନ୍ତେ ରୁଟିରେ ଟାନର ଗନ୍ଧ ଲଗାଇ ଦେଇଥାନ୍ତି । ଯୌନବିତ୍ ପ୍ଲସ ବାରଥେଲ (Ploss-Barthels) ଲେଖିଛନ୍ତି ଯେ କେତେକ ସମାଜରେ ଯୁବତୀ-

ମାନେ ଶରୀରର କୌଣସି ଅଙ୍ଗ କାଟି କଟା ଅଙ୍ଗରୁ ଝରୁଥିବା ରକ୍ତକୁ 'ଦାଅର'ମଦରେ ପକାଇ ଯୁବକକୁ ପିଇବାକୁ ଦିଅନ୍ତି । ଯୁବକ ଏହାକୁ ପିଇଲେ ଯୁବତୀ ପ୍ରତି ବରାବର ଆକୃଷ୍ଟ ରହେ ବୋଲି ସେମାନଙ୍କ ବିଶ୍ୱାସ । ସେହିପରି ଯୁବକ ନିଜ ବାମ ହାତର କାଣି ଅଙ୍ଗୁଳିକୁ ସାମାନ୍ୟ କାଟି ସେଥିରୁ ଝରିବା ରକ୍ତ ଯୁବତୀକୁ ପିଇବାକୁ ଦେଲେ ଯୁବତୀ ବଶ ହୋଇ ରହେ ବୋଲି ବିଶ୍ୱାସ କରନ୍ତି । ଯୁବକ କୌଣସି ଯୁବତୀକୁ ଆକୃଷ୍ଟ କରାଇବାକୁ ଚାହିଁଲେ ରୁଟି ଖଣ୍ଡେ କାଖରେ ଜାକି ନାଚିବ ଯେପରି କାଖର ଝାଳରେ ରୁଟି ଭିଜିଯିବ । ସେହି ରୁଟିଖଣ୍ଡ ଯୁବତୀ ଗୋପନରେ ଖାଇଲେ ଯୁବକ ପ୍ରତି ବରାବର ଆକୃଷ୍ଟ ରହିବ । ପ୍ରେମ କରୁଥିବା ଯୁବତୀ ଶୋଇଥିବା ବେଳେ ତାହାର ମୁଣ୍ଡର ତଳଭାଗରୁ ତିନୋଟି ବାଳ ଉପାଡ଼ି ନେଇ ସର୍ବଦା ପକେଟରେ ଧରିଲେ ଯୁବତୀ ଯୁବକ ପ୍ରତି ବରାବର ଆକୃଷ୍ଟ ରହିବ । ଏହିପରି ବଶୀକରଣରେ ବିଶ୍ୱାସ କରିବା ଆଦୌ ଉଚିତ ନୁହେଁ । ଏହି ପରି ବିଶ୍ୱାସଗୁଡ଼ିକ ମଧ୍ୟରୁ କେତେକ ଅଛି ଯାହା କି ଶରୀର ପକ୍ଷେ କ୍ଷତିକାରକ । ଓଡ଼ିଶାରେ କେତେକ ନାରୀ ଯୋନିରେ ଗୁଆଟିଏ ଜାକି ରଖନ୍ତି । ଯୋନିର ରସ ଗୁଆରେ ଜରିଗଲେ ତାହାକୁ ବାହାର କରି ପ୍ରେମ କରୁଥିବା ଯୁବକକୁ ପାନରେ ଖାଇବାକୁ ଦେଇଥାନ୍ତି । ସେମାନେ ଏହାଦ୍ୱାରା ବିଶ୍ୱାସ କରନ୍ତି ଯେ ଏହା ଫଳରେ ଯୁବକ ବା ପ୍ରେମିକ ସେମାନଙ୍କ ପ୍ରତି ବରାବର ଆକୃଷ୍ଟ ହୋଇ ରହିବେ ।

ହଙ୍ଗେରି ଦେଶରେ ଯୁବତୀ ଶୁକ୍ଳପକ୍ଷ ପ୍ରତିପଦାଦିନ ମହୁ ଓ ଗହମଚୂନା ସହିତ ମାସିକ ରଜଃସ୍ରାବ-ରକ୍ତ ମିଶାଇ ରୁଟି ତିଆରି କରି ପ୍ରେମ କରୁଥିବା ଯୁବକକୁ ଖାଇବାକୁ ଦିଏ । ଏଥିରେ ମହୁ ଓ ଗହମଚୂନା ମେଶାଇ ନେବା ଆବଶ୍ୟକ । ପ୍ରେମ କରୁଥିବା ଯୁବକ ଏହି ରୁଟି ଖାଇବା ଫଳରେ ବରାବର ଆକୃଷ୍ଟ ହୋଇ ରହିବ ବୋଲି ବିଶ୍ୱାସ କରାଯାଏ ।

ଏହା ବ୍ୟତୀତ ଭାରତରେ ଗୁଣିଗାରେଡ଼ି, ତାନ୍ତ୍ରିକ ଉପାୟ, ବଶୀକରଣ ଔଷଧ ମଧ୍ୟ ଆକର୍ଷଣ କରିବା ନିମନ୍ତେ ପ୍ରୟୋଗ କରାଯାଇ-ଥାଏ । ଏହି ସବୁ ଅନ୍ଧବିଶ୍ୱାସରେ ଲିପ୍ତ ନ ହୋଇ ବରଂ କ୍ଷତି ହୋଇପାରେ ।

ପ୍ରେମ ହେଉଛି ଜଣକର ଅନ୍ୟ ପ୍ରତି ସ୍ୱତଃପ୍ରବୃତ୍ତ ଭାବ । ଏଥିରେ କୌଣସି ବାହ୍ୟ କାରଣ ନ ରହିପାରେ । ଆଜିକାଲି ପ୍ରଥମ

ଦେଖାରେ ଯେଉଁ 'ପ୍ରେମ' ଜନ୍ମେ ବୋଲି କହନ୍ତି ତାହା ପ୍ରକୃତ ପ୍ରେମ ନୁହେଁ । ଏହା କେବଳ କ୍ଷଣିକ ପ୍ରେମ ବା ସ୍ନେହ (ଯୌନସ୍ନେହ) ମାତ୍ର । ଏହାର ଶିଖା ଯେପରି ତେଜସ୍ପୂର୍ଣ ହୋଇ ଜଳିଉଠେ ସେହିପରି ଶୀଘ୍ର ଲିଭିଯାଏ ।

ଯୁବକ ଓ ଯୁବତୀମାନଙ୍କର ପ୍ରଥମ ଦେଖାରେ ସାଧାରଣତଃ କ୍ଷଣିକ ପ୍ରେମ ବା ଆକର୍ଷଣ ଦେଖା ଦେଇଥାଏ । ଏହାକୁ ସେମାନେ ପ୍ରକୃତ ପ୍ରେମ ବୋଲି ଭାବିଥାନ୍ତି । ସୌନ୍ଦର୍ଯ୍ୟ ବା ଶାରୀରିକ ଗଠନ ବା ସାମାଜିକ ଅବସ୍ଥା ନେଇ ଏହି କ୍ଷଣିକ ପ୍ରେମ ଜାତ ହୁଏ । ଫଳରେ ବିବାହ ପରେ ଛାଡ଼ପତ୍ର ଦେବା କିମ୍ବା ଉଭୟଙ୍କ ଭିତରେ ମନୋମାଳିନ୍ୟ ବା କଳହ ହେବା ବିଶେଷଭାବେ ଦେଖାଯାଏ । କେତେକ ଦିନ ଯୌନ ପ୍ରବୃତ୍ତିର ତୃପ୍ତି ପାଇବା ପରେ କ୍ଷଣିକ ପ୍ରେମର ତେଜ କ୍ରମେ କ୍ଷୀଣ ହୋଇଆସେ ।

ପ୍ରେମ କେବଳ କ୍ରମବିକାଶରେ ହିଁ ଜନ୍ମେ । କ୍ରମବିକାଶ ସମୟରେ ଜଣେ ଜଣକୁ ପରୀକ୍ଷା କରିବାର ସୁବିଧା ପାଏ । ସେହେତୁ ପ୍ରସିଦ୍ଧ ଲେଖକ ବାଲଜାକ (Balzac) କହିଛନ୍ତି ଯେ—ପ୍ରକୃତ ପ୍ରେମ ଅନିଚ୍ଛା ବା ଦ୍ୱେଷରୁ ଜାତ ହୁଏ । (Every great love begins with an aversion) ଦୁଇଜଣଙ୍କ ମଧ୍ୟରେ ପ୍ରେମ ଦୈନନ୍ଦିନ ଘଟଣାମାନଙ୍କରେ ପରୀକ୍ଷା ହେଉଥିବା ସ୍ୱାଭାବିକ । ଯେଉଁଠାରେ ପ୍ରକୃତ ଆକର୍ଷଣ ଥାଏ ସେହିଠାରେ ହିଁ ଏହି ପରୀକ୍ଷାମାନଙ୍କରେ ପ୍ରେମ ଉତ୍ତୀର୍ଣ୍ଣ ହୁଏ । ଏହି ସମୟ ମଧ୍ୟରେ ଉଭୟଙ୍କ ଗ୍ରହଣ ଓ ତ୍ୟାଗ କରିବା ଶକ୍ତି, ବଞ୍ଚାଇ ରଖିବା ଚେଷ୍ଟା, ସମଭାବ ପ୍ରଭୃତି ଗୁଣର ପରୀକ୍ଷା ହୋଇଯାଏ । ପ୍ରଥମ ଦୃଷ୍ଟିପାତରୁ ଯେଉଁ ପ୍ରେମ ଜାଗରିତ ହୁଏ ତାହା କେବଳ ଇନ୍ଦ୍ରଜାଲ ପରି; ସେହେତୁ ବହୁତ ଦିନ ତିଷ୍ଠିପାରେ ନାହିଁ । ଯେଉଁଠାରେ ବହୁତ ବାଧାବିଘ୍ନ ପାଇବା ସତ୍ତ୍ୱେ ପ୍ରେମ ରହେ ସେହିଠାରେ ପ୍ରକୃତ ପ୍ରେମ ରହିଛି ବୋଲି ଧରାଯାଇପାରେ । ସେହେତୁ ଯେଉଁ ପ୍ରେମ କ୍ରମଶଃ ବୃଦ୍ଧି ପାଇଥାଏ ତାହା ବହୁତ ଦିନ ବଞ୍ଚିରହେ ।

ଯୌବନରେ ପଦାର୍ପଣ କରିବା ମାତ୍ରେ ପ୍ରତ୍ୟେକ ପୁରୁଷ ପ୍ରେମ ପ୍ରତି ଆକୃଷ୍ଟ ହୁଏ । ଏହି ସମୟରେ ଯେ ଯେଉଁ ଯୁବକ ଓ ଯୁବତୀମାନଙ୍କର

ସମ୍ପର୍କରେ ଆସେ ସେମାନଙ୍କର କେତେକ ଢଙ୍ଗ ତା' ଉପରେ ପ୍ରଭାବ ବିସ୍ତାର କରନ୍ତି ଏବଂ ସେ ଏହି ଢଙ୍ଗ ଗୁଡ଼ିକ ପ୍ରତି ନିଜେ ଆକୃଷ୍ଟ ହୁଏ । ସେହି ଢଙ୍ଗ ଯେଉଁଠାରେ ପାଏ ସେଥିପ୍ରତି ତାର ସ୍ନେହ ଜାଗରିତ ହୁଏ ବା ସେ ଆକର୍ଷିତ ହୁଏ । ଯଥା— କୌଣସି ଯୁବକ, ଯେ କି କେବଳ ଲାଲ ଶାଢ଼ୀ ପ୍ରତି ଆକୃଷ୍ଟ, ଜଣେ ବରାବର ଲାଲ ଶାଢ଼ୀ ପିନ୍ଧୁଥିବା ଯୁବତୀ ପ୍ରତି ସହଜରେ ଆକୃଷ୍ଟ ହୋଇ ପଡ଼ିବା ଦେଖାଯାଏ ।

ପୁରୁଷମାନଙ୍କର କେଉଁ ସବୁ ଗୁଣ ପ୍ରତି ନାରୀମାନେ ସାଧାରଣତଃ ଆକୃଷ୍ଟ ହୋଇଥାନ୍ତି ତାହା ମହାଭାରତରେ ଭଲଭାବେ ସୂଚାଇ ଦିଆଯାଇଛି । ଯୁଧିଷ୍ଠିରଙ୍କର ମିତ୍ରତା ଓ ନିର୍ମଳ ଚରିତ୍ର, ଭୀମଙ୍କର ପରାକ୍ରମ, ଅର୍ଜୁନଙ୍କର ସାହସ ଓ କୌଶଳ, ନକୁଳଙ୍କର ସୁଦର୍ଶନ ଶରୀର ଓ ସହଦେବଙ୍କର ଭବିଷ୍ୟ ଦୃଷ୍ଟି ପ୍ରଭୃତି ଗୁଣ ନାରୀମାନଙ୍କୁ ସାଧାରଣତଃ ଆକୃଷ୍ଟ କରିଥାଏ । ଏହା ବ୍ୟତୀତ ଯୁକ୍ତିମାନ୍, ଧର୍ମଭୀରୁ, ଉଚ୍ଚବଂଶଜ, ଶିକ୍ଷିତ, ଚତୁର, କଳାବିଦ୍ୟା ଚର୍ଚ୍ଚା ଓ ଲେଖାଲେଖିରେ କୁଶଳତା, କହିବାରେ ଚାତୁର୍ଯ୍ୟ ବା ବାଗ୍ମିତା, ଖ୍ୟାତନାମା, ନମ୍ରତା, ଉଚ୍ଚାଭିଳାଷୀ, ଉତ୍ସାହୀ, କର୍ତ୍ତବ୍ୟଗୁଣ, ଉଦାରତା, ଖର୍ଚ୍ଚୀ, ସାଙ୍ଗସାଥି-ଯୁକ୍ତ, ମିଳାମିଶା, ଭୋଜନପ୍ରିୟ, ନାଟକପ୍ରେମୀ, ସବଳ ଓ ସ୍ୱାସ୍ଥ୍ୟବାନ୍, ସୁନ୍ଦର ଚେହେରା, ମହାଭ୍ୟାସହୀନ, ସ୍ନେହପୂର୍ଣ୍ଣ, ଅତିଶୟ ନାରୀ ଅନୁଗତତାହୀନ, ସ୍ୱଚ୍ଛଳ ଆର୍ଥିକ ଅବସ୍ଥା, ଦୟାଗୁଣ, ଈର୍ଷାଦ୍ୱେଷ ଓ ସନ୍ଦେହ ଗୁଣ ନ ଥିବା, ଉଦ୍‌ଯୋଗୀ, କ୍ଷମାଶୀଳ, ଉତ୍ତମ ସ୍ୱଭାବ ପ୍ରତି ନାରୀମାନେ ଆକୃଷ୍ଟ ହୋଇଥାନ୍ତି ।

କାମସୂତ୍ରର ପ୍ରଣେତା ବାତ୍ସାୟନ କହନ୍ତି ଯେ ଜଣେ ଯୁବତୀ ଯେ କୌଣସି ଯୁବକ ପ୍ରତି ଆକୃଷ୍ଟ ହେବାର ଦୁଇଟି ଅବସ୍ଥାରୁ ଜଣାଯାଏ, ଯଥା—(୧) ମାନସିକ, (୨) ଶାରୀରିକ । ବକ୍ର ଚାହାଣି, ଲଜ୍ୟା (Blush) ପ୍ରଭୃତି ଶାରୀରିକ ଲକ୍ଷଣ ଏବଂ ସେ ଯେଉଁ ରକମର କଥାବାର୍ତ୍ତା କରେ ସେଥିରୁ ମାନସିକ ଅବସ୍ଥା ବୁଝାଯାଏ ।

କୌଣସି କାରଣରୁ ଯୁବତୀର ଯଦି କୌଣସି ପୁରୁଷ ପ୍ରତି ସ୍ନେହ ବା ପ୍ରେମ ମନରେ ସଞ୍ଚାର ହୁଏ, ତାହାହେଲେ ସେ ସେହି ପୁରୁଷର ମୁହଁକୁ ସିଧାସଳଖ ଚାହିଁପାରେ ନାହିଁ ଏବଂ ପୁରୁଷ ତା'ଆଡ଼େ ଚାହିଁବାର

ଜାଣି ପାରିଲେ ସେ ଲଜ୍ଜା ଅନୁଭବ କରେ । ପୁରୁଷ ଏକୁଟିଆ କମ୍ବା ଅନ୍ୟମନସ୍କ ହୋଇ ଗ୍ଲିଗଲା ବେଳେ ସେ ବରାବର ତାହାପ୍ରତି ଦୃଷ୍ଟିରଖି ଗୃହିଁଥାଏ । ପୁରୁଷ କୌଣସି ପ୍ରଶ୍ନ ପଗ୍ରିଲେ ସାମାନ୍ୟ ହସି ଆଖିକୁ ନତ କରି ଧୀରେ ଧୀରେ ଉତ୍ତର ଦଏ । ସାମାନ୍ୟ କଥାରେ ହସେ— ନିଜର ବେଶଭୂଷା ଖୁବ୍ ସଯତରେ ରଖିବାକୁ ଚେଷ୍ଟାକରେ ଓ ବେଶଭୂଷା ଠିକ୍ ନ ଥିବା ସମୟରେ ପୁରୁଷକୁ ଦେଖାଦେବାକୁ ଇଚ୍ଛା କରେ ନାହିଁ ।

ବାତ୍ସାୟନଙ୍କ ମତରେ—ହାସ୍ୟଖେଳରେ କଶୋରୀକୁ ଆକୃଷ୍ଟ କରାଯାଇପାରେ, ସଙ୍ଗୀତ ଓ କଳାରେ ଯୁବତୀକୁ ଓ ବୟସ୍କା ରମଣୀଙ୍କୁ ତାହାର ସଙ୍ଗୀମାନଙ୍କ ଜରିଆରେ ବଶ କରାଯାଇପାରେ । ଗଣିକପୁତ୍ର କହନ୍ତି ଯେ ଯୁବତୀର ପୁରୁଷ ପ୍ରତି ଯେତେ ପ୍ରେମପୂର୍ଣ୍ଣ ଭାବନା ଥିଲେ ମଧ୍ୟ ଆନ୍ତରିକତା ସହିତ ଦର୍ଘ ସମୟ କଥାବାର୍ତ୍ତା କରୁ ନ ଥିଲେ ପୁରୁଷ ତାହାର ପ୍ରେମ ପାଇବା ସହଜ ନୁହେଁ । ଏହିପରି କଥାବାର୍ତ୍ତା ସମୟରେ ଇଙ୍ଗିତ, ଅଶ୍ଳୀଳ କଥା, ଗାନ, ଅଙ୍ଗଭଙ୍ଗୀ ପ୍ରଭୃତି ଏଥିରେ ଭିନ୍ନ ସମୟରେ ପ୍ରୟୋଗ କରିବା ଦରକାର ଏବଂ ଗୋପନରେ ତାହା ନିକଟରେ ନିଜର ପ୍ରେମ ପ୍ରକାଶ କରିବା ଉଚିତ । ବାତ୍ସାୟନ କହନ୍ତି ଯେ ଯୁବତୀକୁ ଯେତେ ମାତ୍ରାରେ ପ୍ରେମ କଲେ ମଧ୍ୟ ଯୁବତୀ ନିଜେ ପୁରୁଷକୁ ପ୍ରଥମ ଅବସ୍ଥାରେ ଆତ୍ମସମର୍ପଣ କରି ନିଜକୁ ଯାଚିଦେବା ବା ନିଜେ ପ୍ରଥମେ ପଦକ୍ଷେପ ନେବା ଉଚିତ ନୁହେ । ଯେଉଁ ଯୁବତୀ ଏହି ଭୁଲ୍ କରେ ସେ ଘୃଣିତ ହୋଇ ପ୍ରେମ ପାଇବା ବଦଳରେ ସମସ୍ତ ମାନମର୍ଯ୍ୟାଦା ହରାଏ ।

ଯୁବତୀମାନେ ଯେଉଁ ଯୁବକର ସଙ୍ଗ ଇଚ୍ଛା କରୁଥିବେ ସେମାନେ ସେହି ଯୁବକର ସଙ୍ଗେ ବ୍ୟବହାର କଲାବେଳେ କେତୋଟି ବିଷୟ ମନେ ରଖିବା ଆବଶ୍ୟକ—

(କ) ନିଜକୁ ସଯତ ରଖିବା ଦରକାର ଯେଉଁ ପର୍ଯ୍ୟନ୍ତ ପୁରୁଷର ପ୍ରକୃତ ପ୍ରେମ ବୁଝିହୁଏ ନାହିଁ ।

(ଖ) ଅନିଚ୍ଛା ଓ ଲଜ୍ଜା ନାରୀର ଦୁଇଟି ଅସ୍ତ୍ର । ତାହାକୁ ଅବସ୍ଥା ନେଇ ପ୍ରୟୋଗ କରିବା ଉଚିତ ।

(ଗ) ସ୍ପର୍ଶମାତ୍ରେ ବିଚଳିତ ହେବା ଉଚିତ ନୁହେ ।

(ଘ) ଯୁବକର ସଙ୍ଗେ ହସଖୁସିରେ ରହିବା ଉଚିତ ଏବଂ କଥା ଛଳରେ ମିଳାମିଶାକୁ ବନ୍ଦ ନ କରି ବରଂ ପ୍ରଶ୍ରୟ ଦେବା ଉଚିତ ।

ସେହିପରି ଯୁବକମାନଙ୍କ ପକ୍ଷେ ଧୀରସ୍ଥିର ଭାବ, ଉଦାରତା, ନିଜର ଆଚରଣ ଓ କାର୍ଯ୍ୟକ୍ଷମ ଏପରି କରିବା ଉଚିତ ଯାହା ଫଳରେ ଯୁବତୀ ମନରେ ଯୁବକ ପ୍ରତି ଆସ୍ଥା ଆସି ଆକୃଷ୍ଟ ହେବ ।

**ପ୍ରେମର ପ୍ରଥମ ସୋପାନ**—ପାଞ୍ଚ ଇନ୍ଦ୍ରିୟଦ୍ୱାରା ମନୁଷ୍ୟର ମନରେ ପ୍ରଥମେ ଆକର୍ଷଣ ସୃଷ୍ଟି ହେବା ପରେ ଏହା ପ୍ରେମରେ ପରିଣତ ହୁଏ । ପ୍ରେମର ପ୍ରଥମ ସୋପାନରେ ସାଧାରଣତଃ ଛଦ୍ମତା ବିଶେଷଭାବେ ଭାଗନିଏ । ନିଜକୁ ବଡ଼ ପରି ଦେଖାଇ ହେବା ଏହି ଅବସ୍ଥାର ଲକ୍ଷଣ । ପଶୁପକ୍ଷୀ ରାଜ୍ୟରେ ମଧ୍ୟ ଠିକ୍ ଏହି ଅବସ୍ଥା ଦେଖିବାକୁ ମିଳେ । ଏହି ଅବସ୍ଥାରେ ମୟୂର ତାହାର ପୁଚ୍ଛ ଟେକି ନିଜର ସୌନ୍ଦର୍ଯ୍ୟକୁ ବଢ଼ାଇଥାଏ । ସିଂହ ମଧ୍ୟ ନିଜର ଶକ୍ତି ଦେଖାଇବା ନିମନ୍ତେ ଗର୍ଜିଉଠେ । ସେହିପରି ମନୁଷ୍ୟ ମଧ୍ୟ ନିଜର ପ୍ରକୃତ ସ୍ୱଭାବକୁ ଲୁଚାଇ ଦେଇ ଛଦ୍ମସ୍ୱଭାବକୁ ଦେଖାଇଥାଏ । ଏହି ସମୟରେ ହିଁ କୃପଣ ଲୋକ ଦୟାଳୁଭାବ ଦେଖାଇହୁଏ ଏବଂ ଭୀରୁ ବୀରପଣ ଦେଖାଇଥାଏ । ମନେହୁଏ ଯେପରି ବଂଶରକ୍ଷା ଓ ବୃଦ୍ଧି କରିବା ନିମନ୍ତେ ପ୍ରକୃତିର ଏହି ବିଚିତ୍ର ସୃଷ୍ଟି । ଯେଉଁ ଯୁବକ ଓ ଯୁବତୀମାନେ ଏହି ଅବସ୍ଥାରେ ଆକୃଷ୍ଟ ହୋଇ ବିବାହ କରିନିଅନ୍ତି ସେମାନଙ୍କ ପକ୍ଷେ ଭବିଷ୍ୟତ ସାଧାରଣତଃ ଅନ୍ଧକାର ହୁଏ ।

ଯେଉଁଠାରେ ଛଦ୍ମ ସ୍ୱଭାବ ନିଜର ସ୍ୱଭାବରେ ପରିଣତ ହୁଏ ସେହିଠାରେ ବିଶେଷ ଅସୁବିଧା ରହେ ନାହିଁ । କିନ୍ତୁ ଛଦ୍ମସ୍ୱଭାବ ବହୁତ ଦିନ ରହେ ନାହିଁ । ଅଳ୍ପଦିନ ପରେ ସମସ୍ତ ଦେଖି ନିଜର ପ୍ରକୃତ ସ୍ୱଭାବ ବାହାରିପଡ଼େ । ଛଦ୍ମ ସ୍ୱଭାବ ଯୋଗୁଁ ଯେଉଁଠାରେ ସଙ୍ଗୀ ଆକୃଷ୍ଟ ହୋଇଥାଏ ସେଠାରେ ସଙ୍ଗୀର ମନରେ ଦୁଃଖ ଆସେ ଓ କ୍ରମେ କ୍ରମେ ଉଭୟଙ୍କ ମଧ୍ୟରେ ଆକର୍ଷଣ କମିଯାଏ । ଅଧିକାଂଶ ଚତୁର ଓ ବୁଦ୍ଧିମାନ୍ ଲୋକମାନେ ମଧ୍ୟ ଏହିପରି ଭୁଲ କରନ୍ତି ।

ଛଦ୍ମସ୍ୱଭାବ ନାରୀମାନଙ୍କଠାରେ ସାଧାରଣତଃ କମ୍ ଦେଖାଯାଏ । ବିବାହକ୍ଷେତ୍ରରେ ଛଦ୍ମସ୍ୱଭାବ ବା 'ଦେଖେଇ ହେବା'ର ପ୍ରଭାବ ଅସୀମ । ସେହେତୁ ବିବାହ ପୂର୍ବରୁ ଉଭୟେ ଉଭୟଙ୍କ ପ୍ରକୃତ ସ୍ୱଭାବ ସହିତ ପରିଚିତ ହେବା ଉଚିତ । ଏହାଦ୍ୱାରା ଉଭୟଙ୍କ ମଧ୍ୟରେ ଯେଉଁ ଆକର୍ଷଣ ସୃଷ୍ଟି ହୋଇଥାଏ ତାହା ପ୍ରେମରେ ପରିଣତ ହୋଇ ଭବିଷ୍ୟତ ଜୀବନକୁ ଉଜ୍ଜ୍ୱଳ କରେ ।

ଅନେକ ସମୟରେ ନାରୀମାନେ ଛଦ୍ମ ସ୍ୱଭାବଦ୍ୱାରା ଆକର୍ଷିତ ହେଲେ ମଧ୍ୟ ସେମାନେ ସମୟକୁ ଅପେକ୍ଷା କରନ୍ତି । ଏହି ସମୟ ମଧ୍ୟରେ ସେମାନଙ୍କ ମନରେ ଦ୍ୱନ୍ଦ୍ୱ ସୃଷ୍ଟିହୁଏ । ସେହେତୁ ନାରୀମାନେ ଆକର୍ଷଣର ପ୍ରତି-ଆକର୍ଷଣ ଦେବା ନିମନ୍ତେ ସମୟ ନିଅନ୍ତି । ଆଉ କେତେକ ସ୍ଥାନରେ ନାରୀମାନେ ଆକର୍ଷିତ ହେଲେ ସୁଦ୍ଧା କେତେକ କାରଣ ଯୋଗୁଁ ସେଥିର ସୁଯୋଗ ନେଇ ପାରନ୍ତି ନାହିଁ । ଯଥା—କୌଣସି ବାହ୍ୟ କାରଣରୁ ଶାରୀରିକ ବା ମାନସିକ ଉଦାସୀନତା, ଗର୍ବ, ଭଦ୍ରତା ଖାତିର, ସନ୍ଦେହ ପ୍ରଭୃତି । ପୁରୁଷଠାରେ ଏହି ଗୁଣମାନଙ୍କର ବରାବର ପୁନରାବୃତ୍ତି ଦେଖିବା ନାରୀ ସର୍ବଦା ଇଚ୍ଛା କରିଥାଏ । କାରଣ ପୁରୁଷମାନଙ୍କଠାରେ ଛଦ୍ମ ସ୍ୱଭାବ ରହିଥିବା ଯୋଗୁଁ ସେହି ଗୁଣଗୁଡ଼ିକ ପ୍ରକୃତ ସ୍ୱଭାବ କି ନୁହେଁ ତାହା ଦେଖିବା ନାରୀର ଲକ୍ଷ୍ୟ । ସେହେତୁ ଉଭୟେ ଉଭୟଙ୍କର ପ୍ରକୃତ ପରିଚୟ ପାଇବା ଦରକାର ।

ଅନେକ ସମୟରେ ପ୍ରଣୟକ୍ଷେତ୍ରରେ ସାଧୁତା ବା ସରଳତା, ଖୋଲାଖୋଲି ସମସ୍ତ କଥା କହିବା ପ୍ରଭୃତି ସ୍ୱଭାବ ଅପ୍ରୀତିକର ଅବସ୍ଥା ସୃଷ୍ଟି କରିବା ଦେଖାଯାଏ । ନାରୀମାନେ ଯଦି ଏହି ସ୍ୱଭାବର ହୁଅନ୍ତି ତାହାହେଲେ ଆହୁରି ଖରାପ ଦିଗକୁ ଗତି କରିପାରେ । ସେହେତୁ ପ୍ରଣୟ କ୍ଷେତ୍ରରେ ଏପରି ଅବସ୍ଥା ପଡ଼ିଲେ ସିଧାସଳଖ 'ହଁ' ବା 'ନାହିଁ' ନ କହି ବରଂ ଚୁପ ରହିଯିବା ଭଲ । ନଚେତ୍ କଥାଛଳରେ ଅବସ୍ଥା ବୁଝାଇଦେବା ଉଚିତ ।

ପୁରୁଷମାନଙ୍କ ଅପେକ୍ଷା ନାରୀମାନଙ୍କର ଗର୍ବ ଓ ଅହଙ୍କାର ବେଶି । ସେମାନଙ୍କର ଗର୍ବ ଓ ଅହଙ୍କାରରେ ବାଧା ଆସିଲେ ତାହା ସହଜରେ ସମାଧାନ କରି ହୁଏ ନାହିଁ । ଏପରି ଅବସ୍ଥାରେ ସେମାନଙ୍କ

ଶାରୀରିକ ବିପରୀତ ଦିଗରେ ଜୋରରେ ଶକ୍ତିରେ ଏବଂ ନାରୀପକ୍ଷେ ତାହା ଆଦୌ କ୍ଷମଣୀୟ ନୁହେଁ । ସେହେତୁ ପ୍ରତ୍ୟେକ ଯୁବକ ମନେ ରଖିବା ଉଚିତ ଯେ ପ୍ରଣୟ କ୍ଷେତ୍ରରେ ଆତ୍ମସମ୍ମାନର ସ୍ଥାନ ନାହିଁ । କ୍ଷତି ଓ ଭୂଲ୍ ଦ୍ୱାରା ପୁରୁଷର ମର୍ଯ୍ୟାଦା କମିଯାଏ ନାହିଁ ଏବଂ ସେହି ଭୂଲ୍ ସଂଶୋଧନ ହୋଇଯାଇପାରେ । ଉଭୟେ ଉଭୟଙ୍କ ଗୁଣ, ସ୍ୱଭାବ ଓ ଦୁର୍ବଳତା ସହିତ ପରିଚିତ ହୋଇଗଲେ ସେମାନେ ସୁଖ ଓ ଦୁଃଖରେ ଭାଗିଦାର ହୋଇପାରନ୍ତି ଏବଂ ସେମାନଙ୍କ ଭବିଷ୍ୟତ୍ ଜୀବନ ଉଜ୍ଜ୍ୱଳ ଓ ସୁଖମୟ ହୋଇଉଠେ ।

ବାତ୍ସାୟନ ପ୍ରତ୍ୟେକ ପୁରୁଷ ବା ଯୁବକଙ୍କୁ ଉପଦେଶ ଦେଇ କହିଛନ୍ତି ଯେ—

୧ । ପ୍ରତିଦିନ ଗାଧୋଇବ ଏବଂ ସର୍ବଦା ସଫାସୁତୁରା ରହିବ ।

୨ । ଯେଉଁମାନେ ଶରୀରରେ ତେଲ ଲଗାଇ ଗାଧାନ୍ତି, ସେମାନେ ଦିନେ ଛଡ଼ା ଦିନେ ଶରୀରରେ ତେଲ ମାଲିସ କରିବା ଉଚିତ ।

୩ । ପ୍ରତି ତିନିଦିନରେ ଥରେ ସାବୁନ ଲଗାଇ ଗାଧୋଇବା ଦରକାର ।

୪ । ଖିଅର ହୋଇ ମୁହଁକୁ ବରାବର ଚିକ୍କଣ ରଖିବ ।

୫ । ଲୁକ୍କାୟିତ ଅଂଶଗୁଡ଼ିକ ଗାଧୋଇଲାବେଳେ ଭଲଭାବେ ସଫା କରିବ ଯେପରି ସେଠାରେ ମଇଳା ଜମି ରହିବ ନାହିଁ ।

୬ । ବିଶେଷ ସମୟ ଖରାରେ ରହିବା ଉଚିତ ନୁହେଁ । ଏହାଦ୍ୱାରା ଝାଳ ବୋହି ଶରୀରରୁ ଦୁର୍ଗନ୍ଧ ବାହାରିବ ଓ ଶରୀର କଳା ପଡ଼ି ସୌନ୍ଦର୍ଯ୍ୟ ନଷ୍ଟ ହୋଇଯିବ ।

୭ । ପ୍ରତିଦିନ ବ୍ୟାୟାମ ନିମନ୍ତେ ଖେଳ ଖେଳିବା ବା କସରତ କରିବା ଦରକାର ।

୮ । ଖରାବେଳେ କିଛି ସମୟ ବିଶ୍ରାମ କରିବା ଭଲ ।

୯ । ଶୋଇସାରି ଉଠିବା ପରେ ପରେ ମୁଣ୍ଡ କୁଣ୍ଡାଇବା ଦରକାର ।

୧୦ । ସର୍ବଦା ବେଶଭୂଷା ପରିଷ୍କାର ଓ ନିର୍ମଳ ରଖିବା ଉଚିତ ।

**ଯୌନ ଆକର୍ଷଣ** ( **Sex Appeal** )—ସାଧାରଣତଃ ଇନ୍ଦ୍ରିୟମାନଙ୍କର ଆକର୍ଷଣରେ ହିଁ ମନୁଷ୍ୟଠାରେ ସ୍ନେହ ବା ପ୍ରେମ ଜନ୍ମେ ।

ଆକର୍ଷଣ ସମୟରେ ପ୍ରତ୍ୟେକ ଇନ୍ଦ୍ରିୟ ଏକାଭଳି କାର୍ଯ୍ୟ କରନ୍ତି ନାହିଁ, ଅର୍ଥାତ୍ ପ୍ରତ୍ୟେକ ଇନ୍ଦ୍ରିୟର ସମପ୍ରଭାବ ଦରକାର ହୁଏନାହିଁ । ଏଥିରେ ଚକ୍ଷୁ ଇନ୍ଦ୍ରିୟର ପ୍ରଭାବ ବେଶି । ତଥାପି ଶ୍ରବଣ ଇନ୍ଦ୍ରିୟର ସ୍ଥାନ ରହିଛି । ଯଥା—କୋକିଳ ପରି ସ୍ୱର କେତେକ ଲୋକଙ୍କୁ ଆକୃଷ୍ଟ କଲାବେଳେ ଖନେଇ କଥା କହିବା ଆଉ କେତେକଙ୍କୁ ଆକୃଷ୍ଟ କରେ । ସଙ୍ଗୀତଜ୍ଞ ବା ଗାୟକ ଓ ଗାୟିକାମାନଙ୍କ ପ୍ରତି ଯୁବକ ଓ ଯୁବତୀମାନେ ଆକୃଷ୍ଟ ହେଉଥିବା ଜଣାଶୁଣା କଥା । ଶ୍ରୀକୃଷ୍ଣଙ୍କ ମୁରଲୀସ୍ୱନରେ ଗୋପୀମାନେ ଆକୃଷ୍ଟ ହୋଇ ଯାଉଥିବା ପୁରାଣରେ ଉଲ୍ଲେଖ ଅଛି ।

ଯୌନ ଆକର୍ଷଣରେ ସ୍ପର୍ଶ ଇନ୍ଦ୍ରିୟର ବିଶେଷ ସ୍ଥାନ ନ ରହିଲେ ମଧ୍ୟ ଘ୍ରାଣେନ୍ଦ୍ରିୟର ସ୍ଥାନ ରହିଛି । ଗୋଟିଏ ରକମର ଗନ୍ଧ କେତେକ ଲୋକଙ୍କୁ ବିରକ୍ତିକର ହେଲାବେଳେ ଆଉ କେତେକ ଲୋକଙ୍କୁ ଆକୃଷ୍ଟ କରିଥାଏ । ଦନ୍ତଅର୍ଷ ଖେଳୁଥିବା ବିବାହିତ ମୁସଲମାନ ଯୁବତୀମାନଙ୍କୁ ଛାଡ଼ପତ୍ର ଦିଆଯାଇପାରେ ବୋଲି କୋରାନ୍‌ରେ ଉଲ୍ଲେଖ ଅଛି । ସଙ୍ଗୀର ପାଟିରେ ଧୂଆଁ ଗନ୍ଧପ୍ରତି କେତେକ ଯୁବତୀ ବିରକ୍ତ ହେବାବେଳେ ଆଉ କେତେକ ଯୁବତୀ ସେଥିପ୍ରତି ଆକୃଷ୍ଟ ହୋଇଥାନ୍ତି । ଶରୀରରୁ ଯେଉଁ ଗନ୍ଧ ବାହାରେ ସେଥିରେ ମଧ୍ୟ କେତେକ ଆକୃଷ୍ଟ ହେଉଥିବା ବେଳେ ଆଉ କେତେକଙ୍କୁ ସେହି ଗନ୍ଧ ଖରାପ ଲାଗେ । ମାସିକ ରଜଃସ୍ରାବ ସମୟରେ ରଜର ଗନ୍ଧ ଯୋଗୁଁ ପୁରୁଷ ନାରୀଠାରୁ ଦୂରରେ ରହେ । ଏହି ନିୟମର ବ୍ୟତିକ୍ରମ କମ୍ ଦେଖିବାକୁ ମିଳେ । ଋତୁ ସମୟରେ ସ୍ତ୍ରୀ-ପଶୁର ଯୋନିରୁ ଯେଉଁ ଗନ୍ଧ ବାହାରେ ସେଥିରେ ପୁଂ-ପଶୁମାନେ ସାଧାରଣତଃ ଆକୃଷ୍ଟ ହୋଇଥାଆନ୍ତି । ମଣିଷମାନଙ୍କ ଠାରେ ଏତେଦୂର ନ ହେଲେ ମଧ୍ୟ ସାଧାରଣତଃ ସଙ୍ଗୀର ଜନନେନ୍ଦ୍ରିୟର ଗନ୍ଧ ( Genital odour) କେତେକ ଲୋକଙ୍କ ଠାରେ ଉତ୍ତେଜନା ସୃଷ୍ଟି କରେ । ଏଠାରେ ମନେ ରଖିବା ଉଚିତ ଯେ ଏହା ସାଧାରଣତଃ ରତିକ୍ରିୟା ସମୟରେ ଘଟିଥାଏ । ପୁରୁଷମାନଙ୍କ ଅପେକ୍ଷା ନାରୀମାନଙ୍କର ଜନନେନ୍ଦ୍ରିୟର ଗନ୍ଧ ତୀବ୍ର । ନାରୀମାନଙ୍କ ମନରେ ଉତ୍ତେଜନା ସୃଷ୍ଟିହେଲେ ସେମାନଙ୍କ ଶରୀରର ଅନେକ ଗ୍ରନ୍ଥିରୁ ରସ ନିଃସୃତ ହୁଏ । ସେମାନଙ୍କ ଉତ୍ତେଜନା ବୃଦ୍ଧି ହେବା ସଙ୍ଗେ ସଙ୍ଗେ ଗନ୍ଧ ତୀବ୍ର ହୋଇଉଠେ ।

କେତେକ ଯୌନବିଜ୍ଞଙ୍କ ମତରେ ପୁରୁଷକୁ ଆକୃଷ୍ଟ କରି ସେମାନଙ୍କ ଠାରେ ଉତ୍ତେଜନା ସୃଷ୍ଟି କରିବା ନିମନ୍ତେ ନାରୀମାନଙ୍କ ଶରୀରରେ ଏହି ଗନ୍ଧର ସୃଷ୍ଟି । କେତେକ ଯୁବକ ଓ ଯୁବତୀ ଯୌନ ଆକର୍ଷଣ ନିମନ୍ତେ ସୁଗନ୍ଧ ତୈଳ ଅତର ବ୍ୟବହାର କରିଥାଆନ୍ତି । ଏହାର ବ୍ୟବହାର ଦ୍ୱାରା ଦୁଇ ରକମର ସୁବିଧା ହୁଏ । ପ୍ରଥମେ ଏହା ଶରୀରର ବିରକ୍ତିକର ଗନ୍ଧକୁ ଦବାଇଦିଏ ଏବଂ ଦ୍ୱିତୀୟରେ ଆକର୍ଷଣ ମଧ୍ୟ ସୃଷ୍ଟି କରେ ।

ଇତିହାସରେ ବର୍ଣ୍ଣିତ ଅଛି ଯେ ହେନ୍‌ରି (ତୃତୀୟ) ନାଚିବା ପରେ ବିଶ୍ରାମ ନେବାକୁ ଗୋଟିଏ କୋଠରୀକୁ ଗଲେ । ସେହି କୋଠରୀରେ ଯୁବତୀ (Marie of Cleves) ମେରି କ୍ଲିଭସ୍ ନାଚିବା ପରେ ଝାଳରେ ଓଦା ହୋଇଯାଇଥିବା ସାୟାଟିକୁ ପାଲଟି ରଖିଦେଇଥିଲେ । ହେନରି ତୃତୀୟ ସେହି ସାୟାରେ ମୁହଁ ପୋଛିବା ପରେ ମେରି କ୍ଲିଭସ୍‌କୁ ବିବାହ କରିବା ପାଇଁ ଠିକ୍ କରିଥିଲେ ।

ଟାଇରୋଲିୟନର କୃଷକମାନେ (Tyrolean) ନାଚିଲାବେଳେ କାଖରେ ହାତରୁମାଲ ରଖନ୍ତି । ନାଚର ଶେଷରେ ଆକୃଷ୍ଟ କରିବାପାଇଁ ଝାଳୁଆ ରୁମାଲଟିକୁ ନିଜର ପ୍ରେମିକାକୁ ଉପହାର ଦେଇଥାନ୍ତି ।

**ଚକ୍ଷୁ**—ଯୌନ ଆକର୍ଷଣରେ ଇନ୍ଦ୍ରିୟମାନଙ୍କ ମଧ୍ୟରେ ଚକ୍ଷୁର ପ୍ରଭାବ ବେଶି । ସୁନ୍ଦର ବିଷୟ ବା ବସ୍ତୁ ଦେଖିବାଦ୍ୱାରା ମନୁଷ୍ୟ ସେଥିପ୍ରତି ଆକୃଷ୍ଟ ହୁଏ । ସେହିପରି ଆଖିର ଚାହାଣିଦ୍ୱାରା ଅନ୍ୟଠାରେ ଉତ୍ତେଜନା ସୃଷ୍ଟି ହୋଇପାରେ । ସୁନ୍ଦରୀ ଯୁବତୀଟିଏ ଦେଖିଲେ ଯୁବକ ମନରେ ଉତ୍ତେଜନା ସୃଷ୍ଟି ହୁଏ । କେତେକ ଯୁବକ ଓ ଯୁବତୀଙ୍କ ଚାହାଣି ଅନ୍ୟର ମନରେ ଉତ୍ତେଜନା ସୃଷ୍ଟି କରିଥାଏ । କେତେକ ବ୍ୟକ୍ତିଙ୍କର ଏହି ଦିଗରେ ସ୍ୱାତନ୍ତ୍ର୍ୟ ରହିଛି । ଯୁବତୀମାନଙ୍କର ବଡ଼ ବଡ଼ ଆଖି କେତେକ ଯୁବକଙ୍କୁ ଆକୃଷ୍ଟ କଲାବେଳେ ଆଉ କେତେକଙ୍କୁ ଅସୁନ୍ଦର ଦିଶେ ।

ଆକର୍ଷଣୀୟ ବସ୍ତୁ ନିକଟ ହେବାମାତ୍ରେ ଚକ୍ଷୁର ପ୍ରଭାବ କମିଯାଇ ଘ୍ରାଣ ଓ ସ୍ପର୍ଶ ଇନ୍ଦ୍ରିୟମାନଙ୍କର ପ୍ରଭାବ ବଢ଼େ । ଶାରୀରିକ ସୌନ୍ଦର୍ଯ୍ୟ ବା ଯୌନ ସୌନ୍ଦର୍ଯ୍ୟ (Sexual beauty) ଦେଶ, କାଳ ଓ ପାତ୍ର ଉପରେ ନିର୍ଭର କରେ । ଯଥା—ଯୁବତୀମାନଙ୍କ ଲମ୍ବାଳିଆ ସ୍ତନ ଓ

ଓଷ୍ଠରେ ଗୁଣା ଲଗାଇବା କାଫିରମାନେ ପସନ୍ଦ କରିଥାନ୍ତି । କେତେକ ଲୋକ ମୁଣ୍ଡବାଳର ରଙ୍ଗ, ଆଖିର ଜ୍ୟୋତି ଓ ସୌନ୍ଦର୍ଯ୍ୟ ଏବଂ ଯୁବତୀ-ମାନଙ୍କ ଉଚ୍ଚତାକୁ ବିଶେଷ ଭାବେ ପସନ୍ଦ କରିଥାନ୍ତି । ଅନ୍ୟାନ୍ୟ ଅଙ୍ଗ ଅପେକ୍ଷା ନାରୀର ସ୍ତନ ପୁରୁଷମାନଙ୍କ ଦୃଷ୍ଟିକୁ ବେଶି ଆକର୍ଷଣ କରେ, କେତେକ ସ୍ଥାନରେ ନାରୀମୁଖର ସୌନ୍ଦର୍ଯ୍ୟ ଦୃଷ୍ଟିକୁ ଆକର୍ଷଣ କରେ । ସବୁ ଯୁଗରେ ଓ ସମୟରେ ଯୌନ ସୌନ୍ଦର୍ଯ୍ୟ ଓ ଆକର୍ଷଣ ଏକାପରି ରହେ ନାହିଁ । ସାଧାରଣ ଲୋକେ ଯାହାକୁ ଅସୁନ୍ଦର ବୋଲି କହନ୍ତି କେତେକ ଲୋକ ସେହି ରକମ ଗଠନ ପ୍ରତି ଆକୃଷ୍ଟ ହୋଇଥାନ୍ତି । କେତେକ ଗୋରା ବା ୟୁରୋପୀୟ ମହିଳା କଳା ବା ନିଗ୍ରୋ ଜାତୀୟ ପୁରୁଷକୁ ପସନ୍ଦ କରିଥାନ୍ତି । କେତେକ ମହିଳା କୁଜା ଲୋକଙ୍କ ପ୍ରତି ଆକୃଷ୍ଟ ହେବାବେଳେ କେତେକ ପୁରୁଷ ଓହଳ ଥିବା ସ୍ତନ ପ୍ରତି ଆକୃଷ୍ଟ ହୁଅନ୍ତି । ସେହେତୁ ପ୍ରତ୍ୟେକ ବ୍ୟକ୍ତିର ଯୌନାକର୍ଷଣ ଦିଗରେ କିଛି ନା କିଛି ସ୍ୱାତନ୍ତ୍ର୍ୟ ଅଛି । ଏହା ନିଜର ଚିନ୍ତାଧାରା ଉପରେ ନିର୍ଭର କରିଥାଏ । ପଞ୍ଚେନ୍ଦ୍ରିୟରୁ ଯେଉଁ ଇନ୍ଦ୍ରିୟଦ୍ୱାରା ଯୌନ ପ୍ରକୃତି ବିଶେଷ ଭାବେ ଉତ୍ତେଜିତ ହୁଏ ବା ପ୍ରଭାବିତ ହୁଏ ତାହା ବ୍ୟକ୍ତିବିଶେଷ ଉପରେ ନିର୍ଭର କରେ ।

**ବେଶଭୂଷା**—ଯୌନ ଜୀବନ ସହିତ ବେଶଭୂଷାର ସମ୍ବନ୍ଧ ଅତି ପ୍ରାଚୀନ କାଳରୁ ରହିଛି । ଶରୀରର ସୌନ୍ଦର୍ଯ୍ୟ ବଢ଼ାଇବା ପାଇଁ ଅଳଙ୍କାର ଓ ବେଶଭୂଷାର ସୃଷ୍ଟି । ଆଦିମ ଯୁଗରେ ସୌନ୍ଦର୍ଯ୍ୟ ବଢ଼ାଇବା ପାଇଁ ଶରୀର ଉପରେ ନାନା ରକମ ଚିତା କୁଟା ଯାଉଥିଲା । ହଜାର ହଜାର ବର୍ଷ ପୂର୍ବେ ମନୁଷ୍ୟମାନେ ଗୁମ୍ଫାରେ ବାସ କରୁଥିବାବେଳେ ଗୁମ୍ଫା ଭିତରେ ଚିତ୍ର ଆଙ୍କିଥିବାର ଦେଖାଯାଇଛି । ହାତର ସୌନ୍ଦର୍ଯ୍ୟ ବଢ଼ାଇବା ପାଇଁ ପୁରୁଷମାନେ ଅଳ୍ପ କେତେବର୍ଷ ପୂର୍ବେ ଓ ବର୍ତ୍ତମାନ ସୁଦ୍ଧା ମୁଦି ଓ କଙ୍କଣ ପିନ୍ଧୁଥିଲେ । ସେହିପରି ମୁଖର ସୌନ୍ଦର୍ଯ୍ୟ ବୃଦ୍ଧି କରିବା ନିମନ୍ତେ କାନ ଓ ନାକରେ ରମଣୀମାନେ ଅଳଙ୍କାର ପିନ୍ଧନ୍ତି । ଆଦିବାସୀ ରମଣୀମାନେ ସୌନ୍ଦର୍ଯ୍ୟ ବୃଦ୍ଧି କରିବା ନିମନ୍ତେ ମୁଖସାରା ଚିତା କୁଟାଉ-ଥିବାର ଆଜିସୁଦ୍ଧା ଦେଖାଯାଏ । ପୂର୍ବେ ଚିତା କୁଟାଇବା ଜନନେନ୍ଦ୍ରିୟ ଓ ମଳଦ୍ୱାର ଠାରୁ ଆରମ୍ଭ ହେଉଥିଲା ।

ଶରୀରର କୌଣସି ଅଂଶକୁ ଦୃଷ୍ଟି ଆକର୍ଷଣ କରାଇବା ନିମନ୍ତେ ପ୍ରାଧାନ୍ୟ ଦେବାକୁ ହେଲେ ଅନ୍ୟ ସମସ୍ତ ଅଂଶ ଅଳଙ୍କୃତ ବା ଆବୃତ କରି ସେହି ଅଂଶଟିକୁ ଛାଡ଼ିଦେବାକୁ ହୁଏ କିମ୍ବା ସେହି ଅଂଶଟିରେ ଅଳଙ୍କାର ଲଗାଇ ଅନ୍ୟ ସମସ୍ତ ଅଂଶ ବାଦ୍ ଦେବାକୁ ହୁଏ । ପ୍ରତ୍ୟେକ ଅଳଙ୍କାରର ବା ଆବରଣର ସୌନ୍ଦର୍ଯ୍ୟ ବୃଦ୍ଧି କରିବା ସଙ୍ଗେ ସଙ୍ଗେ ଦୃଷ୍ଟି ଆକର୍ଷଣ କରିବା ଶକ୍ତି ରହିଛି । ନାରୀର ଗଳାରେ ଶାଢ଼ୀର ସୁନ୍ଦର କାନିଧାର ବକ୍ଷର ସୌନ୍ଦର୍ଯ୍ୟକୁ ବୃଦ୍ଧି କରିଥାଏ । ଚକ୍‌ମକ୍ ହେଉଥିବା ଜିନିଷ ଶୀଘ୍ର ଦୃଷ୍ଟି ଆକର୍ଷଣ କରିବା ସଙ୍ଗେ ସଙ୍ଗେ ସୌନ୍ଦର୍ଯ୍ୟ ମଧ୍ୟ ବୃଦ୍ଧିକରେ । ଶିତାକୁଠାରେ ଆଖି ଝଲସିବା ଗୁଣ ନ ଥିଲି । ଆଖି ଝଲସାଇ ସୌନ୍ଦର୍ଯ୍ୟ ବୃଦ୍ଧି କରୁଥିବା ଯୋଗୁଁ ସୁନା, ରୂପା, ମୋତି, ମାଣିକ୍ୟର ଆଜି ମୂଲ୍ୟ ଅଧିକ ।

ପ୍ରଥମେ ମନୁଷ୍ୟମାନେ ଅଳଙ୍କାର ଝୁଲାଇବା ନିମନ୍ତେ ଖଣ୍ଡିଏ କପଡ଼ା ଅଣ୍ଟାରେ ଗୁଡ଼ାଉଥିଲେ । ଏହାପରେ ଅବସ୍ଥା ଓ ରୁଚି ବଦଳି ଯାଇ ନାନା ରକମ ବେଶଭୂଷାର ପ୍ରବର୍ତ୍ତନ ହୋଇଛି । ସଭ୍ୟ ଜଗତରୁ ବାହାରେ ଥିବା ଏସ୍କିମୋ ତାର ବରଫ ଘର 'ଇଗ୍ଲୁ'ରେ ଲଙ୍ଗଳା ହୋଇ ବାସ କରନ୍ତି । ସଭ୍ୟ ଜଗତରେ ଯୌନ ଆକର୍ଷଣ ବୃଦ୍ଧି କରି ଉତ୍ତେଜନା ସୃଷ୍ଟି କରାଇବା ନିମନ୍ତେ ବେଶଭୂଷାର ସୃଷ୍ଟି । କୌଣସି ଜିନିଷ ଘୋଡ଼ାଇ ରଖିଲେ ତାହାକୁ ଦେଖିବା ନିମନ୍ତେ ଅନ୍ୟର ମନରେ ଉତ୍କଣ୍ଠା ଜାତ ହୁଏ । ସେହେତୁ ନାରୀର ସୌନ୍ଦର୍ଯ୍ୟ ବୃଦ୍ଧି କରିବା ନିମନ୍ତେ ନାନା ରକମର ବେଶଭୂଷାରେ କିଛି ନୂତନତ୍ୱ ଦିଆଯାଏ ଦୃଷ୍ଟି ଆକର୍ଷଣ କରିବା ନିମନ୍ତେ ।

ବିଭିନ୍ନ ଯୁଗରେ ପୃଥିବୀର ବିଭିନ୍ନ ଭାଗରେ ଯୁଗର ପରିବର୍ତ୍ତନ ନେଇ ସୌନ୍ଦର୍ଯ୍ୟରେ ରୁଚି ଓ ପ୍ରଣାଳୀ ବଦଳି ଆସିଛି । ସେହେତୁ ଅଙ୍ଗଆଭରଣ ନିମନ୍ତେ ନାନାରକମ ବେଶଭୂଷାର ସୃଷ୍ଟି ହେଉଛି । ଶାରୀରିକ କସରତ ପାଇଁ ସୁବିଧା ଦେବା ନିମନ୍ତେ ଫ୍ରାନ୍‌ସର ମହିଳାମାନେ ଭିକ୍ଟୋରିଆ ଯୁଗର ବେଶଭୂଷା ଛାଡ଼ି ସାର୍ଟ ପିନ୍ଧିବା ଆରମ୍ଭ କଲେ । ଭାରତୀୟ ମହିଳାମାନେ କାର୍ଯ୍ୟ ଓ ନାଚର ସୁବିଧା ନିମନ୍ତେ ଛୋଟ ବ୍ଲାଉଜର ଲମ୍ବା କମ୍ କଲେ । କିନ୍ତୁ ଉଭୟର ମୂଳରେ ରହିଲି ବକ୍ଷର

ସୌନ୍ଦର୍ଯ୍ୟବୃଦ୍ଧି । ଏହିଗୁଡ଼ିକ ପିନ୍ଧିବା ଦ୍ୱାରା ଅସୁନ୍ଦର ଦିଶୁଥିଲେ ବୋଧହୁଏ କେହି କେବେ ବ୍ୟବହାର କରି ନ ଥାନ୍ତେ । କିନ୍ତୁ ଦକ୍ଷିଣ ଦ୍ୱୀପର ନାରୀ ଯେ କି ସଭ୍ୟ ଜଗତରୁ ବହୁତ ଦୂରରେ ସେ ନିଜର ସୌନ୍ଦର୍ଯ୍ୟ ବୃଦ୍ଧି କରିବା ନିମନ୍ତେ ତାହାର ଯୋନିମଣ୍ଡଳରେ ଶିତା କୁଟାଏ । ଯେହେତୁ ଯୌନ ଆକର୍ଷଣର ଭିତ୍ତି ନ ଥାଇ ବେଶଭୂଷାର ସୃଷ୍ଟି ହୁଏ ନାହିଁ ।

୧୯୧୯ ମସିହାରେ ଜଣେ ଖ୍ରୀଷ୍ଟଧର୍ମ ପ୍ରଚାରକ ଖଣ୍ଡିଏ ବହିରେ ନାରୀମାନଙ୍କ ପ୍ରତି ଲେଖିଥିଲେ ଯେ—"ଏପରି ବେଶଭୂଷା ହେବନାହିଁ ଯାହାଦ୍ୱାରା ଅନ୍ୟଠାରେ ଉତ୍ତେଜନା ସୃଷ୍ଟି କରିବ । ଲୁଗାଦେଇ ଅଙ୍ଗ ବାହାରକୁ ଦିଶିଲି ପରି ବେଶଭୂଷା ହେବନାହିଁ । ଏହାଦ୍ୱାରା ଅନ୍ୟଠାରେ ବହୁତ ଉତ୍ତେଜନା ସୃଷ୍ଟି କରାଯାଏ । ଶରୀରର ବିଭିନ୍ନ ଅଙ୍ଗର ଆକାର ବାହାରକୁ ଦିଶିଲାପରି ବେଶଭୂଷା ହେବନାହିଁ ।"

ପୂର୍ବେ ୟୁରୋପରେ ନାରୀମାନେ ପୁରୁଷଙ୍କ ପରି ବେଶଭୂଷା ହୋଇପାରୁଥିଲେ । ଏହାପରେ ମଧ୍ୟଯୁଗରେ ନାରୀମାନଙ୍କୁ ପୁରୁଷଙ୍କ ପରି ପୋଷାକ ପିନ୍ଧିବା ଧର୍ମବିରୁଦ୍ଧ ବୋଲି କୁହାଗଲା । ଫଳରେ ନାରୀମାନେ ପ୍ୟାଣ୍ଟ ପିନ୍ଧିପାରି ନ ଥିଲେ । ଯେତେବେଳେ ରଙ୍ଗମଞ୍ଚରେ (ନାଟକାଭିନୟରେ) ନାରୀମାନେ ପୁରୁଷ ବେଶ ନେଇ ଠିଆହେଲେ ସେତେବେଳେ ବହୁତ ଆପତ୍ତି ଉଠିଲା । ମାତ୍ର କ୍ରୀଡ଼ା କସରତ ଇତ୍ୟାଦିରେ ନାରୀମାନେ ଅଂଶ ନେବାରୁ ପୁରୁଷ ପରି ପୋଷାକ ପିନ୍ଧିବାରେ ଆଉ ଆପତ୍ତି ରହିଲା ନାହିଁ ।

ଯେଉଁ ବେଶଭୂଷାରେ ଯୌନ ଆକର୍ଷଣ ଶକ୍ତି ରହେନାହିଁ ତାହା ବେଶିଦିନ ତିଷ୍ଠେନାହିଁ । ୧୩୫୬ ମସିହାରେ ନାରୀମାନଙ୍କ ବେଶଭୂଷା ନେଇ ସ୍ପାୟର ମ୍ୟୁନିସିପାଲିଟି କାଉନ୍‌ସିଲରେ (Spyer City Council) ଆଇନ ପ୍ରଣୟନ ହୋଇଥିଲା ଯାହା ଫଳରେ କେତେକ ଅଶ୍ଳୀଳ ବା ଅଭଦ୍ର ରକମ ବେଶଭୂଷାର ବ୍ୟବହାରକୁ ଲୋପ କରି ଦିଆଯାଇଥିଲା । ଅନେକ ସ୍ଥାନରେ ନାରୀମାନେ (ବକ୍ଷକୁ) ସ୍ତନକୁ ମୁକୁଳା ବା ଖୋଲା ନ ରଖିବା ପାଇଁ ଆଇନମାନ ପ୍ରଣୟନ କରାଯାଇଥିଲା । ୟୁରୋପର ନାନା ସ୍ଥାନରେ ବୁଲିବାବେଳେ ଏବଂ ବିଶେଷତଃ ନାଚିବାବେଳେ

ଲିଙ୍ଗକୁ ଖୋଲା ବା ଅନାବୃତ ରଖିବା ଆଇନ ଦ୍ୱାରା ନିଷେଧ କରାଯାଇଥିଲା ।

ସାଧାରଣତଃ ନାରୀମାନଙ୍କ ବେଶଭୂଷା ସେମାନଙ୍କ ବକ୍ଷର ସୌନ୍ଦର୍ଯ୍ୟ ଉପରେ କେନ୍ଦ୍ରୀଭୂତ କରେ । ସେହେତୁ ବ୍ଲାଉଜର ଲମ୍ବା ବା ଚଉଡ଼ା ଏବଂ ଢଙ୍ଗଢାଙ୍ଗ ଶାଢ଼ୀ ପ୍ରଭୃତି ଅପେକ୍ଷା ବିଶେଷ ବଦଳେ । ବେକର କାଣ୍ଠ ତଳକୁ ସ୍ତନମୂଳ ସ୍ପର୍ଶ କରିବା ସୀମା ଭିତରେ ବିଭିନ୍ନ ସ୍ତରରେ ରହିବା ଦେଖାଯାଏ । କେବେ କପଡ଼ା ପୁଣି ରୁଚି ବଦଳି ଏକାବେଳେକେ ବେକମୂଳ ପର୍ଯ୍ୟନ୍ତ ଆବୃତ କରି ବକ୍ଷକୁ ଘୋଡ଼ାଇ ରଖେ । ଯୁଗେ ଯୁଗେ ପୁରୁଷର ଦୃଷ୍ଟି ଆକର୍ଷଣ କରିବା ଉଦ୍ଦେଶ୍ୟରେ ନାରୀର ବେଶଭୂଷାରେ ପରିବର୍ତ୍ତନ ଦେଖାଦେଇଛି । ସେହିପରି ପୁରୁଷର ବେଶଭୂଷା ନାରୀକୁ ଆକର୍ଷଣ କରାଇବା ଉଦ୍ଦେଶ୍ୟରେ ରୂପାୟିତ ହୁଏ ।

ୟୁରୋପରେ ପୂର୍ବେ ନାରୀମାନଙ୍କ ଗୋଡ଼ର ପେଣ୍ଡା ପୁରୁଷମାନଙ୍କ ଦୃଷ୍ଟି ଆକର୍ଷଣ କରେ ବୋଲି ଭାବୁଥିଲେ । ସେହେତୁ ନାରୀମାନଙ୍କ ସ୍କର୍ଟର ଆକାର ପ୍ରକାର ଏପରି ଭାବେ ବଦଳିଲା ଯେ ୧୯୨୮ ମସିହାରେ ହଙ୍ଗେରି ଓ ଇଟାଲି ଦେଶରେ ସେହି ପୋଷାକର ଲମ୍ବ ଓ ଚଉଡ଼ା କେତେ ରହିବା ଉଚିତ ତାହା ନେଇ ଆଇନ ପ୍ରଣୟନ କରାଯାଇଥିଲା । ଆଜିକାଲି ପ୍ରତ୍ୟେକ ହସଖୁସି ଯୌନସଙ୍ଗମରେ ପରିଣତ ନାହିଁ କିମ୍ବା ପ୍ରତ୍ୟେକ ଯୌନ ସଙ୍ଗମରେ ଗର୍ଭସଞ୍ଚାର ହୁଏନାହିଁ । କିନ୍ତୁ ଯୌନସଙ୍ଗମ ଓ ଗର୍ଭସଞ୍ଚାରର ଅନୁପାତ ପୂର୍ବେ ଏହାକୁ ନିୟନ୍ତ୍ରଣ କରୁଥିଲା । ଆଜିକାଲି ଜନ୍ମନିୟନ୍ତ୍ରଣର ପ୍ରସାର ଫଳରେ ଏହି ନିୟନ୍ତ୍ରଣର ଆଉ ମୂଲ୍ୟ ରହିଲା ନାହିଁ । ସେହେତୁ ଯୌନବିତ୍ ହେବଲକ ଇଲିସ (Havelock Ellis) କହିଛନ୍ତି ଯେ—"ଆମର ରୁଚି ଓ ସଭ୍ୟତା ତୁଳନାରେ ଲୋକମାନେ ଉଲଗ୍ନ ରହିଲେ ସେମାନଙ୍କ ଆଗ୍ରହ ବ୍ୟବହାର ପ୍ରଭୃତି ବହୁତ ଅଶ୍ଳୀଳ ଦେଖାଯିବ ; କିନ୍ତୁ ସେମାନେ ଯୌନଜୀବନରେ କଠୋର ଓ ମାର୍ଜିତ ହେବେ ।"

୧୭ ଶହ ଶତାବ୍ଦୀ ପର୍ଯ୍ୟନ୍ତ ଜର୍ମାନୀରେ ପୁରୁଷ ଓ ନାରୀ ଉଭୟେ ଏକାଠି ଲଙ୍ଗଳା ହୋଇ ସର୍ବସାଧାରଣ ନିମନ୍ତେ ଉଦ୍ଦିଷ୍ଟ ଥିବା ଗାଧୁଆ-ଘରେ ଗାଧୋଉଥିଲେ । ଏହି ସମୟରେ ପୁରୁଷମାନେ କେବଳ

କୌପୀନ ଖଣ୍ଡିଏ ମାତ୍ର ପିନ୍ଧିଥିଲେ । ଏହା ଫଳରେ ସମାଜରେ ବ୍ୟଭିଚାର ଓ ଯନ୍ତ୍ରଣାତ୍ମକ ରୋଗ ବଢ଼ିଯାଇଥିଲା । ଏଣୁ ୧୭-୧୮ଶ ଶତାବ୍ଦୀ ମଧ୍ୟରେ ଏହି ଗାଧୁଆଘରମାନଙ୍କ ବିରୁଦ୍ଧରେ ସାମାଜିକ ଆପତ୍ତି ଉଠିଥିଲା । ଏପରି କି ନଦୀ ଓ ପୋଖରୀରେ ଗାଧୋଇବା ବିରୁଦ୍ଧରେ ପ୍ରଚାର ହୋଇ-ଥିଲା । କାରଣ ନଦୀ କିମ୍ବା ପୋଖରୀରେ ଗାଧୋଇବାବେଳେ ପିନ୍ଧିବାର ଯନ୍ତ୍ର ରହେ ନାହିଁ । ସେପରି ଅବସ୍ଥାରେ ସର୍ବସାଧାରଣଙ୍କ ଆଗରେ ଦେଖାଦେବା ଆଦୌ ଉଚିତ ନୁହେ ବୋଲି ଭାବୁଥିଲେ ।

ଗ୍ରୀସ ମନ୍ଦିରମାନଙ୍କରେ ଦେବ ଓ ଦେବୀମାନଙ୍କ ମୂର୍ତ୍ତି ନଗ୍ନ ରହିବା ଅବସ୍ଥାରେ ତିଆରି ହୋଇଛି । ପ୍ରାଚୀନ ରୋମ ରାଜ୍ୟରେ ରଙ୍ଗମଞ୍ଚମାନଙ୍କରେ ଦେବଦେବୀଙ୍କର ଅଂଶ ଗ୍ରହଣ କରି ଅଭିନୟ କରୁଥିବା ଅଭିନେତା ଓ ଅଭିନେତ୍ରୀମାନେ ଉଲଗ୍ନ ଅବସ୍ଥାରେ ମଞ୍ଚ ଉପରକୁ ଆସି ଅଭିନୟ କରୁଥିଲେ । ରୋମ ରାଜ୍ୟର ମେଳାମଉତ୍ସବ-ମାନଙ୍କରେ ନଗ୍ନ ନାରୀମାନେ ଅଭିନୟ କରିବା ପ୍ରଥା ପ୍ରଚଳନ ଥିଲା । ସାମ୍ରାଜ୍ଞୀ ଥିଓଡ଼ର (Theodora) ନଗ୍ନ ଅବସ୍ଥାରେ ଥରେ ରଙ୍ଗମଞ୍ଚରେ ଅଭିନୟ କରିଥିବା ଇତିହାସରୁ ଜଣାଯାଏ । ଭେନସ (Venus) ପ୍ରଭୃତି ଦେବୀମାନଙ୍କର ଅଂଶ ନେଇ ଅଭିନୟ କରୁଥିବା ନାରୀମାନେ ନଗ୍ନ ଶରୀରରେ ମଞ୍ଚଉପରେ ଅଭିନୟ କରୁଥିଲେ । ଉଚ୍ଚପଦସ୍ଥ ଅତିଥି-ମାନଙ୍କୁ ଭୋଜି ଦିଆଗଲେ ଭୋଜିରେ ନଗ୍ନ ଯୁବତୀମାନେ ଉପସ୍ଥିତ ରହି ଚର୍ଚ୍ଚା କରୁଥିଲେ । ଏପରି କି ସେମାନଙ୍କୁ ସମ୍ବର୍ଦ୍ଧନା ଦେବା ନିମନ୍ତେ ସାହି ରାସ୍ତାର ଦୁଇଧାରରେ ଉଲଗ୍ନ ଯୁବତୀମାନେ ରହି ସ୍ୱାଗତ ଜଣାଉ-ଥିଲେ । ୧୩୧୩ ମସିହାରେ ଫ୍ରାନ୍‌ସର ସମ୍ରାଟ୍ ୪ର୍ଥ ଫିଲିପସ୍ ଇଂଲଣ୍ଡର ରାଜାଙ୍କୁ ପାରିସ ସହରରେ ସମ୍ବର୍ଦ୍ଧନା ଦେବା ଉତ୍ସବରେ ଉଲଗ୍ନ ଯୁବତୀମାନେ ଉପସ୍ଥିତ ଥିବା ଇତିହାସରୁ ଜଣାଯାଏ । ୧୪୬୧ ମସିହାରେ ସମ୍ରାଟ୍ ଏକାଦଶ ଲୁଇ ପାରିସ ସହରରେ ପ୍ରବେଶ କଲାବେଳେ ତିନିଜଣ ନଗ୍ନ ନାରୀ ତାହାଙ୍କୁ ସ୍ୱାଗତ ଅଭିନନ୍ଦନ ଜଣାଇବା ଇତିହାସରେ ଲେଖାଅଛି ।

୧୬୨୪ ଶତାବ୍ଦୀ ପର୍ଯ୍ୟନ୍ତ ରୋମ ଓ ପାରିସର ରଙ୍ଗମଞ୍ଚରେ ନାରୀମାନେ ନଗ୍ନ ଅବସ୍ଥାରେ ଅଭିନୟ କରୁଥିବା ଇତିହାସରୁ ଜଣାପଡ଼େ ।

ପେଶାମଞ୍ଚମାନଙ୍କରେ (professional) ଏହି ରକମ ଚଳୁଥିବାବେଳେ ଅନ୍ୟାନ୍ୟ ମଞ୍ଚମାନଙ୍କରେ ନଗ୍ନ ଅବସ୍ଥାରେ ରଙ୍ଗମଞ୍ଚ ଉପରକୁ ଆସିବା କମିଯାଇଥିଲା । ଏହି ଅଭ୍ୟାସ ୧୯ଶ ଶତାବ୍ଦୀବେଳକୁ ପ୍ରାୟ ବନ୍ଦ ହୋଇ-ଯାଇଥିଲା କହିଲେ ଚଳେ । କିନ୍ତୁ ରାଜନଅରମାନଙ୍କରେ ନଗ୍ନ ଯୁବତୀ ନୃତ୍ୟର ଆଦର ଥିଲା । ୧୯୧୮ ସାଲରେ ଜର୍ମାନ ଦେଶରେ ଏକ ଥିଏଟରରେ କୁମାରୀ ଭୋୟାନ (Voyan) ନଗ୍ନ ଶରୀରରେ ରଙ୍ଗମଞ୍ଚ ଉପରକୁ ଅଭିନୟ କରିବା ପାଇଁ ଆସିବାରୁ ତାହାଙ୍କୁ ଜେଲଦଣ୍ଡ ଦିଆଯାଇଥିଲା ।

ହେବର୍ଟ ଲେଖିଛନ୍ତି ଯେ ୧୭ଶ ଶତାବ୍ଦୀରେ ଶ୍ୟାମଦେଶରେ ପୁରୁଷମାନଙ୍କ ଠାରେ ଗୁହ୍ୟମୈଥୁନ ପ୍ରବୃତ୍ତି ଥିଲା । ତେଣୁ ପୁରୁଷମାନଙ୍କୁ ଆକୃଷ୍ଟ କରିବା ନିମନ୍ତେ ନାରୀମାନେ ଏପରି ବେଶଭୂଷା ପିନ୍ଧୁଥିଲେ ଯେ ସାହି ରାସ୍ତାରେ ଚାଲିବାବେଳେ ସେମାନଙ୍କ ଯୋନିମଣ୍ଡଳ ଅନେକ ସମୟରେ ଅନାବୃତ ହୋଇଯାଉଥିଲା ବା ବାହାରକୁ ଦେଖାଯାଉଥିଲା ।

ଆଦିବାସୀ ସମାଜରେ ସୌନ୍ଦର୍ଯ୍ୟ ବୃଦ୍ଧି କରିବା ନିମନ୍ତେ ପୁରୁଷ ଓ ନାରୀ ଉଭୟେ ଶରୀରରେ ଚିତା କୁଟାଇଥାନ୍ତି, ପୁଣି ଅଦ୍ଭୁତ ରକମର ଆକାର ମୁଣ୍ଡବାଳକୁ ଦିଅନ୍ତି । ପୂର୍ବ ଆଫ୍ରିକାର ନିଗ୍ରୋ ସମାଜରେ ମୁଣ୍ଡବାଳକୁ ବିଭିନ୍ନ ଆକାରରେ ସଜାଇବା ଦେଖାଯାଏ । ସାଧାରଣତଃ କଳାନିଗ୍ରୋ ସମାଜରେ ଶରୀରରେ ଚିତା କୁଟାଇବା ପ୍ରଥା ନାହିଁ । କାରଣ ଶରୀରର ବର୍ଣ୍ଣ କଳା ଥିବା ଯୋଗୁଁ ଚିତା ଭଲଭାବେ ଫୁଟି ଉଠେନାହିଁ । ସେହେତୁ ସେହିପରି ସମାଜମାନଙ୍କରେ ଶରୀରରେ ନାନା ରକମ ରଙ୍ଗ ଲଗାଇ ଚିତେଇ ହେବା ଦେଖାଯାଏ ।

ଆଦିବାସୀମାନଙ୍କର ସୌନ୍ଦର୍ଯ୍ୟ ଜ୍ଞାନକୁ ସଭ୍ୟଜଗତର ମାପକାଠିରେ ଦେଖିବା ଉଚିତ ନୁହେଁ । ଆଫ୍ରିକାର ଅନେକ ଆଦିବାସୀ ସମାଜରେ ମୋଟା ଓ ଚଉଡ଼ା ନିତମ୍ବକୁ ପସନ୍ଦ କରାଯାଏ । ସେହେତୁ ଆଫ୍ରିକାରେ ଅନେକ ମୋଟୀ ନାରୀ ଦେଖାଯାଆନ୍ତି । ଯେଉଁ ନାରୀମାନଙ୍କୁ ରାଜାଙ୍କ ସହିତ କିମ୍ବା ସଂପ୍ରଦାୟର ମୁଖିଆ ଲୋକଙ୍କ ସହିତ ବିବାହ କରାଇବାକୁ ସ୍ଥିର ରହେ ସେହିମାନଙ୍କୁ ବାଲ୍ୟାବସ୍ଥାରୁ ଭଲ ଖାଦ୍ୟ ଦେଇ ମୋଟା କରାଇଥାନ୍ତି । ରାଜା ଓ ଯୁବରାଜମାନଙ୍କ ରକ୍ଷିତା

ନାରୀମାନେ ଏତେଦୂର ମୋଟି ବା ଚର୍ବିଯୁକ୍ତ ହୋଇଥାନ୍ତି ଯେ ସେମାନଙ୍କ ମଧ୍ୟରୁ କେତେକ ନିଜ ଗୋଡ଼ରେ ଠିଆହେବା ମଧ୍ୟ ଅସୁବିଧା ହୁଏ ।

ଶରୀରର ଆବରଣ ବା ବେଶଭୂଷାର ଯୌନ ସୌନ୍ଦର୍ଯ୍ୟରେ ବିଶେଷ ସ୍ଥାନ ରହିଛି । ଶରୀରର କେଉଁ ଅଂଶ କେତେ ମାତ୍ରାରେ ବା ଅଂଗର କେଉଁ କେଉଁ ଅଂଶ କପରିଭାବେ ଆବୃତ କରି ରଖିଲେ ସୌନ୍ଦର୍ଯ୍ୟ ବୃଦ୍ଧିହେବ, ଏହି ଚିନ୍ତା ନେଇ ଯୁବକ ଓ ଯୁବତୀ ବିଶେଷତଃ ଯୁବତୀମାନଙ୍କ ବେଶଭୂଷାରେ ବହୁକାଳ ଧରି ପରିବର୍ତ୍ତନ ଚାଲିଛି ।

୨୫——

# ସନ୍ତାନ ଉତ୍ପାଦନ ଓ ଗର୍ଭସଂଗ୍ରହ

ଭାରତରେ ଦୀର୍ଘକାଳ ସନ୍ତାନହୀନ ହୋଇ ବିବାହିତ ଦମ୍ପତି ରହିଲେ ସେମାନଙ୍କୁ ଆଣ୍ଟୁକୁଡ଼ା କହନ୍ତି । ସକାଳେ ଶେଯରୁ ଉଠିବାପରେ ପ୍ରଥମେ ସେମାନଙ୍କ ମୁହଁ ଦେଖିବା ଅଶୁଭ ବୋଲି ଲୋକେ କହନ୍ତି । ପୁତ୍ର ସନ୍ତାନ ପାଇବା ନିମନ୍ତେ ବିବାହିତ ଦମ୍ପତି ନାନା କ୍ଲେଶ ସହି ତପସ୍ୟା କରିବା ପୁରାଣ ଓ ଇତିହାସରୁ ଜଣାଯାଏ ।

ଯୌବନର ଆରମ୍ଭରୁ ଯୌନଶକ୍ତିର ବିଲୟ ଅର୍ଥାତ୍ ୧୫ ବର୍ଷ ବୟସଠାରୁ ୫୦ ବର୍ଷ ବୟସ ପର୍ଯ୍ୟନ୍ତ ନାରୀମାନଙ୍କର ଗର୍ଭସଞ୍ଚାର ହୋଇପାରେ । ଏହି ସମୟ ବା ବୟସକୁ ସେମାନଙ୍କର ଯୌନ ଶକ୍ତିର ସମୟ ବା ଯୌନ ଜୀବନ କୁହାଯାଏ । ଜଳବାୟୁ, ଖାଦ୍ୟ, ପରମ୍ପରା, ଶାରୀରିକ ଗଠନ ବିଭିନ୍ନ ପରିବେଶ, ଅବସ୍ଥା, ଜୀବନଯାତ୍ରା ପ୍ରଣାଳୀ ରଜଃସ୍ରାବର ଆରମ୍ଭ ପ୍ରଭୃତି ପ୍ରଥମ ଓ ପରବର୍ତ୍ତୀ ଗର୍ଭସଞ୍ଚାରଗୁଡ଼ିକ ଉପରେ ପ୍ରଭାବ ପକାଏ । ଏହି ସମସ୍ତ ନାରୀର ରଜସ୍ରାବ ଉପରେ ଯେପରି ପ୍ରଭାବ ପକାଇଥାନ୍ତି ସେହିପରି ଗର୍ଭସଞ୍ଚାର ଉପରେ ମଧ୍ୟ ପ୍ରଭାବ ପକାଇଥାନ୍ତି ।

ଉଷ୍ଣ ଜଳବାୟୁରେ ନାରୀମାନେ ଯେପରି ଶୀଘ୍ର ଯୌବନରେ ପଦାର୍ପଣ କରନ୍ତି ସେହିପରି ସେମାନେ ଶୀଘ୍ର ମାତୃତ୍ୱ ପ୍ରାପ୍ତ ହୋଇଥାନ୍ତି । ଆଠ ବା ନ'ବର୍ଷ ବୟସର ବାଳିକା ଗର୍ଭଧାରଣ କରିବା ମଧ୍ୟ ଜଣାଯାଇଛି । ଯେଉଁ ବାଳିକାମାନେ ଉଚିତ ବୟସ ପୂର୍ବରୁ ଯୌବନରେ ପହଞ୍ଚିଥାନ୍ତି ସେମାନେ ଶୀଘ୍ର ଯୌନଶକ୍ତି ହରାଇ ବସନ୍ତି । ଆଫ୍ରିକା ମହାଦେଶର ଆରବ ସମାଜରେ ଯେଉଁ ବାଳିକାମାନେ ଏଗାର ବର୍ଷ

ବୟସରେ ସନ୍ତାନ ଉତ୍ପାଦନ ଆରମ୍ଭ କରନ୍ତି ୨୦ ବର୍ଷ ବୟସବେଳକୁ ସେମାନେ ଉତ୍ପାଦନ ଶକ୍ତି ହରାଇ ବସିବା ଦେଖାଯାଇଛି ।

କେତେକ ନାରୀଙ୍କର ୫୦ ବର୍ଷ ବୟସ ପରେ ବା ୫୫ ବର୍ଷ ବୟସରେ ମଧ୍ୟ ଗର୍ଭସଞ୍ଚାର ହୋଇଥିବା ଜଣାଯାଏ । ସ୍ୱିଡେନ, ଡେନମାର୍କ, ଆୟରଲାଣ୍ଡ ପ୍ରଭୃତି ପାଶ୍ଚାତ୍ୟ ଦେଶମାନଙ୍କରେ ଏମାନଙ୍କ ସଂଖ୍ୟା କମ୍ ନୁହେଁ ।

ପ୍ରତ୍ୟେକ ବିବାହିତ ନାରୀ ଯୌନଶକ୍ତିର ବିଲୟ ପର୍ଯ୍ୟନ୍ତ ସେମାନଙ୍କର ଉତ୍ପାଦନ ଶକ୍ତିକୁ ବ୍ୟବହାର କରି ନ ଥାନ୍ତି । ଯଦି ଗୋଟିଏ ନାରୀ ତାହାର ଯୌନ ଜୀବନରେ ପ୍ରତ୍ୟେକ ୧୫ ମାସ ବା ଦୁଇବର୍ଷ ବ୍ୟବଧାନରେ (ଗର୍ଭସଞ୍ଚାର ଠାରୁ ପ୍ରସବ ପର୍ଯ୍ୟନ୍ତ ଦଶମାସ ଓ କ୍ଷୀର ଦେବା ଆଉ ଦଶମାସ) ଗୋଟିଏ ଲେଖାଏଁ ସନ୍ତାନ ପ୍ରସବ କରେ ତାହାହେଲେ ସେ ୧୫ ବା ୧୬ଟି ସନ୍ତାନ ସହଜରେ ପ୍ରସବ କରିପାରିବ । କେତେକ ନାରୀ ଜୀବନର ୫୫ ବର୍ଷ ବୟସ ପର୍ଯ୍ୟନ୍ତ ମଧ୍ୟ ସନ୍ତାନ ପ୍ରସବ କରିଥାନ୍ତି ।

ସାଧାରଣତଃ ପ୍ରତ୍ୟେକ ଯୌନସଙ୍ଗମରେ ଗର୍ଭସଞ୍ଚାର ହେବା କଥା; କିନ୍ତୁ ତାହା ହୋଇ ନ ଥାଏ । କାରଣ—(କ) ପୁରୁଷର ଯୌନଶକ୍ତି କ୍ରମେ କମିଯିବା ଯୋଗୁଁ, (ଖ) ଯୌନସଙ୍ଗମର ସଂଖ୍ୟା କମିଯିବା ଯୋଗୁଁ, କିମ୍ବା (ଗ) ଜନ୍ମନିୟନ୍ତ୍ରଣ ପ୍ରଣାଳୀର ଆଶ୍ରୟ ନେବା ଯୋଗୁଁ ।

ପ୍ରସବ ପରେ ନାରୀମାନେ ଶିଶୁକୁ ସ୍ତନ୍ୟଦାନ କଲେ ସେମାନଙ୍କ ଶୀଘ୍ର ଗର୍ଭସଞ୍ଚାର ହୁଏନାହିଁ । ରାଜପରିବାର ବା ଧନୀ ପରିବାରରେ ଯେଉଁଠାରେ ନାରୀମାନେ ସନ୍ତାନକୁ ସ୍ତନ୍ୟଦାନ କରନ୍ତି ନାହିଁ ସେମାନଙ୍କର ଶୀଘ୍ର ଶୀଘ୍ର ଗର୍ଭସଞ୍ଚାର ହେବାର ଦେଖାଯାଏ । ଇଷ୍ଟ ଇଣ୍ଡିସ୍ (Dutch East Indies) ରେ ମହିଳାମାନେ ଏହି କାରଣରୁ ନିଜର ସନ୍ତାନମାନଙ୍କୁ ଅନେକ ବୟସ ପର୍ଯ୍ୟନ୍ତ ସ୍ତନ୍ୟଦାନ କରୁଥିବା ଦେଖାଯାଏ । ଏପରି କି ଛୋଟ ଛୋଟ ପିଲାମାନେ ରାସ୍ତାରେ ଦୌଡ଼ି ଧୂମ ପାନ କରୁଥିବାବେଳେ ମଧ୍ୟ ଦୌଡ଼ିଯାଇ ମଝେ ମଝେ ମାଆ ସ୍ତନ୍ୟ ଖାଉଥିବା ଦେଖାଯାଏ ।

୩୫ ବର୍ଷ ବୟସ ପରେ ନାରୀମାନଙ୍କର ଉତ୍ପାଦନ ଶକ୍ତି କମିଆସେ । ନାରୀମାନଙ୍କୁ ୧୮ ଠାରୁ ୨୦ ବର୍ଷ ବୟସ ବେଳେ ଓ ପୁରୁଷମାନଙ୍କୁ ୨୫ ଠାରୁ ୨୭ ବର୍ଷ ବୟସରେ ଉତ୍ପାଦନ ଶକ୍ତି ଶୀର୍ଷରେ ହେଉଛି ।

୧୮ ବର୍ଷ ବୟସର ଯୁବତୀ ୨୫ ବର୍ଷ ବୟସର ଯୁବକ ସହିତ ବିବାହ କଲେ ଉତ୍ପାଦନ ଭଲ ହୁଏ । ୨୫ ବା ୩୦ ବର୍ଷ ବୟସର ଯୁବତୀ ୨୮ ବର୍ଷ ବୟସର ପୁରୁଷକୁ ବିବାହ କରିବା ଦ୍ୱାରା ଉତ୍ପାଦନ ଶକ୍ତି କମ୍ ରହେ । ପୁଣି ୩୫ ବର୍ଷ ବୟସର ନାରୀ ୨୯ ବର୍ଷ ବୟସର ପୁରୁଷକୁ ବିବାହ କରିବା ଦ୍ୱାରା ଉତ୍ପାଦନର ମାତ୍ରା ଆହୁରି କମିଯାଏ । ଆହୁରି ଜଣାଯାଇଛି ଯେ ୧୮ ବା ୨୦ ବର୍ଷ ବୟସର ଯୁବତୀମାନେ ୭ ବର୍ଷ ଅଧିକ ବୟସର ଯୁବକମାନଙ୍କୁ, ୨୫ ବର୍ଷ ବୟସର ଯୁବତୀମାନେ ୩ ବର୍ଷ ଅଧିକ ବୟସର ଯୁବକମାନଙ୍କୁ, ୨୯ ବର୍ଷ ବୟସର ଯୁବତୀମାନେ ସମବୟସର ଯୁବକମାନଙ୍କୁ, ଏବଂ ୩୦ ବର୍ଷ ବା ତା'ଠାରୁ ଅଧିକ ବୟସର ନାରୀମାନେ ସେମାନଙ୍କ ଠାରୁ କମ୍ ବୟସର ଯୁବକମାନଙ୍କୁ ବିବାହ କଲେ ସେମାନଙ୍କ ଉତ୍ପାଦନ ଶକ୍ତି ପୂର୍ଣ୍ଣମାତ୍ରାରେ ବ୍ୟବହାର ହୋଇପାରେ । କିନ୍ତୁ ପୁରୁଷମାନଙ୍କ ପକ୍ଷେ ସେମାନଙ୍କଠାରୁ କମ୍ ବୟସର ନାରୀମାନଙ୍କୁ ବିବାହ କଲେ ସେମାନଙ୍କ ଉତ୍ପାଦନ ଶକ୍ତି ବୃଦ୍ଧି ହୁଏ । ଏହି କାରଣରୁ ଭାରତୀୟ ହିନ୍ଦୁମାନେ ୧୬ ବର୍ଷ ବୟସର ଯୁବତୀ ସହିତ ୨୫ ବର୍ଷ ବୟସର ଯୁବକ ବିବାହ କରିବା ଉଚିତ ବୋଲି ଗ୍ରହଣ କରନ୍ତି ଏବଂ କୌଣସି ସମୟରେ ନିଜଠାରୁ ଅଧିକ ବୟସର ନାରୀସହିତ ବିବାହ କରିବା ଉଚିତ ନୁହେଁ ବୋଲି କହନ୍ତି ।

ପୁରୁଷର ଶକ୍ତି କ୍ରମେପି ହ୍ରାସହେବା ଯୋଗୁଁ କମ୍ବା ରତିକ୍ରିୟା ନିୟମିତ ଓ ଧାରାବାହିକ ଭାବେ ନ ହେବା ଯୋଗୁଁ କମ୍ବା ରତିକ୍ରିୟା ସମୟରେ ଜନ୍ମନିୟନ୍ତ୍ରଣ ପ୍ରଣାଳୀର ବ୍ୟବହାର ଯୋଗୁଁ କୌଣସି ନାରୀର ଉତ୍ପାଦନ ଶକ୍ତି ପୂର୍ଣ୍ଣମାତ୍ରାରେ ବ୍ୟବହାର ହେବା କ୍ୱଚିତ୍ ଦେଖାଯାଏ ।

ଯୌନଶକ୍ତି ଅନେକ ବର୍ଷ ବୟସ ପର୍ଯ୍ୟନ୍ତ ବଞ୍ଚି ରହିବା ଯୋଗୁଁ ବା ଏକାବେଳକେ ଦୁଇଟି ବା ତତୋଽଧିକ ସନ୍ତାନ ପ୍ରସବ କରିବା ଯୋଗୁଁ ବା ଗୋଟିକ ପରେ ଗୋଟିଏ ସ୍ୱାମୀ ବିବାହ କରିବା ଯୋଗୁଁ

ଗୋଟିଏ ନାରୀ ୨୪ଟି ସନ୍ତାନ ପ୍ରସବ କରୁଥିବା ଜଣାଯାଇଛି । ୧୯୦୧ ମସିହାରେ ବର୍ଲିନ ସହରରେ ଜଣେ ୪୧ ବର୍ଷ ବୟସର ନାରୀ ୨୩ଟି ପର୍ଯ୍ୟନ୍ତ ସନ୍ତାନ ପ୍ରସବ କରିଥିଲେ । ଏହାପରେ ୪୦, ୪୩ ଓ ୪୬ ବର୍ଷ ବୟସର ଯଥାକ୍ରମେ ତିନିଜଣ ନାରୀ ମଧ୍ୟ ୨୩ ଲେଖାଏଁ ସନ୍ତାନ ପ୍ରସବ କରିଥିଲେ । ବୁଦାପେଷ୍ଟର ଜଣେ ମହିଳା ୪୩ ବର୍ଷ ବୈବାହିକ ଜୀବନରେ ୩୨ଟି ସନ୍ତାନ ପ୍ରସବ କରିଥିବା ପତ୍ରପତ୍ରିକାରେ ପ୍ରକାଶ ପାଇଥିଲା । କିନ୍ତୁ ଆଜିକାଲି ଯୁଗରେ ଯୌନ ଜୀବନକୁ ସନ୍ତାନ ପ୍ରସବ କରିବା ଦିଗରେ ପୂର୍ଣ୍ଣମାତ୍ରାରେ ବ୍ୟବହାର କରାଯାଉ ନାହିଁ । ବିବାହିତ ଅବସ୍ଥା, ସାମାଜିକ ଅବସ୍ଥା, ସ୍ୱାମୀ ଓ ସ୍ତ୍ରୀର ସ୍ୱାସ୍ଥ୍ୟ, ରୋଗ ଓ ବ୍ୟାଧି ଏବଂ ଅନ୍ୟାନ୍ୟ କାରଣ ଯୋଗୁଁ ନାରୀମାନଙ୍କ ପୂର୍ଣ୍ଣଜୀବନର ଉତ୍ପାଦନ ଶକ୍ତି ବ୍ୟବହାର ହୋଇପାରେ ନାହିଁ । ପୁଣି ଆଜିକାଲି ଯୁଗର ଅନେକ ନାରୀଙ୍କ ଉତ୍ପାଦନ ଶକ୍ତି ନାନା କାରଣରୁ ଠିକ୍‌ଭାବେ ବର୍ଦ୍ଧିତ ହୁଏ ନାହିଁ ।

ଗବେଷଣାରୁ ଜଣାଯାଇଛି ଯେ ଯେଉଁଠାରେ ସ୍ୱାମୀ ଓ ସ୍ତ୍ରୀର ବୟସ ସମାନ କିମ୍ବା ସ୍ୱାମୀର ବୟସ ସ୍ତ୍ରୀର ବୟସ ଅପେକ୍ଷା ସାମାନ୍ୟ ଅଧିକ ସେଠାରେ ବହୁତ ସନ୍ତାନ ଜନ୍ମ ହୋଇଥାନ୍ତି ଯେଉଁଠାରେ କମ୍ ବୟସରେ ବିବାହ ହୋଇଥାଏ ସେଠାରେ କମ୍ ସଂଖ୍ୟାର ସନ୍ତାନ ଜନ୍ମ ହୋଇଥାନ୍ତି । ଯେଉଁଠାରେ ସ୍ତ୍ରୀର ବୟସ ୨୬ ଓ ପୁରୁଷର ବୟସ ୨୩ ସେଠାରେ ସବୁଠାରୁ ଅଧିକ ସନ୍ତାନ ଜନ୍ମ ହେଉଥିବା ଲକ୍ଷ୍ୟ କରାଯାଇଛି ।

ଗୋଟିଏ ପ୍ରସବ ପରେ ପ୍ରସବଜାତ ସନ୍ତାନ ନାରୀସ୍ତନରୁ କ୍ଷୀର ଖାଉଥିଲେ ନାରୀର ଶୀଘ୍ର ଗର୍ଭସଂଗ୍ରହ ସାଧାରଣତଃ ହୁଏ ନାହିଁ । ପୁଣି କମ୍ ବୟସରେ ବିବାହ କରିବା ନାରୀମାନଙ୍କ ଅପେକ୍ଷା ୨୦ ଠାରୁ ୨୫ ବର୍ଷ ବୟସରେ ବିବାହ କରିବା ନାରୀମାନେ ସାଧାରଣତଃ ବହୁତ ସନ୍ତାନ ଉତ୍ପାଦନ କରିଥାନ୍ତି । ସେହେତୁ ଯେଉଁ ନାରୀମାନେ ୨୦ ବର୍ଷ ବୟସ ପୂର୍ବରୁ ବିବାହ କରନ୍ତି ସେମାନଙ୍କ ଉତ୍ପାଦନ ଶକ୍ତି କମ୍ । ୨୦ ବର୍ଷ ବୟସ ପରେ ବିବାହ କରିଥିବା ଯୁବତୀ ୨୦ ବର୍ଷ ବୟସ ପୂର୍ବରୁ ବିବାହ କରିଥିବା ଯୁବତୀ ଅପେକ୍ଷା ପ୍ରଥମ ଗର୍ଭସଂଗ୍ରହ ନିମନ୍ତେ ଅଳ୍ପ ସମୟ ଅପେକ୍ଷା କରିବାକୁ ହୁଏ । କିନ୍ତୁ ୨୫ ବର୍ଷ ବୟସ ପରେ

ଯେଉଁ ଯୁବତୀମାନେ ବିବାହ କରନ୍ତି ସେମାନେ ଗର୍ଭସଂଗ୍ରହ ନିମନ୍ତେ ଆହୁରି ଅଧିକ ସମୟ ଅପେକ୍ଷା କରିବାକୁ ହୁଏ । ଏହି ପରିସ୍ଥିତିରେ ୨୫ ବର୍ଷ ବୟସ ପରେ ଯୁବତୀର ଯେତିକି ବର୍ଷ ବୟସ ଅଧିକ ହୋଇଥିବ ସେତିକି ଅନୁପାତରେ ଅଧିକ ସମୟ ପ୍ରଥମ ଗର୍ଭସଂଗ୍ରହ ନିମନ୍ତେ ଅପେକ୍ଷା କରିବାକୁ ହୁଏ ।

ନାରୀର ଉତ୍ପାଦନ ଶକ୍ତି ୩୫ ବର୍ଷ ବୟସ ପର୍ଯ୍ୟନ୍ତ ବଳବତ୍ତର ରହେ ଏବଂ ତାହାପରେ ଏହି ଶକ୍ତି କ୍ରମେ ହ୍ରାସ ପାଏ । କିନ୍ତୁ ଯେଉଁ ଯୁବତୀମାନେ ଅବିବାହିତ ରହନ୍ତି ସେମାନଙ୍କ ଉତ୍ପାଦନ ଶକ୍ତି ୨୦ ଠାରୁ ୨୫ ବର୍ଷ ବୟସ ମଧ୍ୟରେ ବୃଦ୍ଧି ପାଇଥାଏ । କମ୍ ବୟସରେ ବିବାହ କରିବା କିମ୍ବା ଅତ୍ୟଧିକ ବୟସରେ ବିବାହ କରିବା ଦ୍ୱାରା ଉତ୍ପାଦନ ଶକ୍ତି କମିଯାଏ । ଅଷ୍ଟ୍ରିଆ ଓ ହଙ୍ଗେରି ଦେଶରେ ପ୍ରତ୍ୟେକ ୧୦୦ ନାରୀଙ୍କର ବିବାହ ବୟସ ଅନୁପାତରେ ବର୍ଷକେ ସନ୍ତାନ ଉତ୍ପାଦନ ନିମ୍ନରେ ଦିଆଗଲା—

| ବୟସ ଅନୁପାତ | ସନ୍ତାନ ଉତ୍ପାଦନ |
|---|---|
| ୧୮ ବର୍ଷ ବୟସରୁ କମ୍ | ୩୭—୩୮ |
| ୧୮ ,, ଠାରୁ ୨୦ ବର୍ଷ ବୟସ | ୪୦ |
| ୨୫ ,, | ୩୨ |
| ୩୦ ,, | ୨୪ |
| ୩୫ ,, | ୧୭ |
| ୪୦ ,, | ୧୦ |

ଏଥିରୁ ଜଣାଯିବ ଯେ ୨୦ ଠାରୁ ୨୨ ବର୍ଷ ବୟସରେ ବିବାହ କରିବା ଉଚିତ ଯେହେତୁ ଯୌନ ଉତ୍ପାଦନ ଯନ୍ତ୍ରଗୁଡ଼ିକ ଉଚିତ ଭାବେ ବର୍ଦ୍ଧିତ ହୋଇଥାଏ । ସେହେତୁ ୨୦ ବର୍ଷ ଠାରୁ ୨୪ ବର୍ଷ ବୟସ ଭିତରେ ସନ୍ତାନ ଉତ୍ପାଦନ କରିବା ନାରୀମାନଙ୍କ ପକ୍ଷେ ଉତ୍କୃଷ୍ଟ ସମୟ । ପୁରୁଷମାନଙ୍କର ମଧ୍ୟ ୨୫ ବା ୨୭ ବର୍ଷ ବୟସରେ ଗର୍ଭସଂଗ୍ରହ କରିବା ଶକ୍ତି ବୃଦ୍ଧି ପାଇ ଶୀର୍ଷରେ ପହଞ୍ଚେ ଓ ୩୫ ବର୍ଷ ବୟସ ପରେ ଯୌନଶକ୍ତି କ୍ରମେ ହ୍ରାସ ପାଇଥାଏ ।

ଗବେଷଣାରୁ ଜଣାଯାଇଛି ଯେ ୧୮ ବର୍ଷ ବୟସର ଯୁବତୀ ୨୫ ବର୍ଷ ବୟସର ଯୁବକକୁ ବିବାହ କରିବା ଦ୍ୱାରା ବହୁତ ସନ୍ତାନ ଉତ୍ପାଦନ ହୁଏ । ୨୫ ଠାରୁ ୩୦ ବର୍ଷ ବୟସର ନାରୀ ୨୮ ବର୍ଷ ବୟସର ପୁରୁଷକୁ ବିବାହ କରିବା ଦ୍ୱାରା ଅପେକ୍ଷାକୃତ କମ୍ ସନ୍ତାନ ଜନ୍ମ ହୁଅନ୍ତି । ୩୫ ବର୍ଷ ବୟସର ନାରୀ ୨୯ ବର୍ଷ ବୟସର ପୁରୁଷକୁ ବିବାହ କଲେ ଆହୁରି କମ୍ ସନ୍ତାନ ଜନ୍ମ ହୁଅନ୍ତି । ସନ୍ତାନ ଉତ୍ପାଦନ ଦିଗରେ କେବଳ ପୁରୁଷ ବା କେବଳ ନାରୀର ବୟସ ନେଲେ ଚଳିବ ନାହିଁ । କମ୍ ବୟସର ଯୁବତୀ ଜଣେ ପ୍ରୌଢ଼ ପୁରୁଷକୁ ବିବାହ କରିବା-ଠାରୁ ଜଣେ ଯୁବକ ସଙ୍ଗେ ବିବାହ କରିବା ଦ୍ୱାରା ସନ୍ତାନ ଉତ୍ପାଦନରେ ପାର୍ଥକ୍ୟ ରହେ । ବିଭିନ୍ନ ବୟସର ନାରୀ ବିଭିନ୍ନ ବୟସର ପୁରୁଷ ସହିତ ବିବାହ କରିବା ଦ୍ୱାରା ଭିନ୍ନ ଭିନ୍ନ ଶକ୍ତିର ଉତ୍ପାଦନ ଆସେ । ୧୮ ବା ୨୦ ବର୍ଷ ବୟସର ଯୁବତୀ ୨୫ ବା ୨୭ ବର୍ଷ ବୟସର ଯୁବକ ସହିତ ବିବାହ କରିବା ଦ୍ୱାରା ସବୁଠାରୁ ଅଧିକ ମାତ୍ରାରେ ଉତ୍ପାଦନ କରିଥାନ୍ତି । ୨୫ ବର୍ଷ ବୟସର ଯୁବତୀ ତା ଠାରୁ ୩ବର୍ଷ ଅଧିକ ବୟସର ପୁରୁଷ ସହିତ (୨୮ ବର୍ଷ ବୟସ), ୨୯ ବର୍ଷ ବୟସର ନାରୀ ସମବୟସର ପୁରୁଷ ସହିତ, ୩୦ ବର୍ଷ ବା ଅଧିକ ବୟସର ନାରୀ ସେମାନଙ୍କଠାରୁ କମ୍ ବୟସର ପୁରୁଷ ସହିତ ବିବାହ କରିବା ଦ୍ୱାରା ସେମାନଙ୍କ ଉତ୍ପାଦନ ଶକ୍ତି ଅଧିକ ମାତ୍ରାରେ କାର୍ଯ୍ୟକାରୀ ହୋଇଥାଏ । କିନ୍ତୁ ପୁରୁଷମାନଙ୍କ ପକ୍ଷେ ନିଜଠାରୁ କମ୍ ବୟସର ନାରୀ ସହିତ ବିବାହ କରିବାଦ୍ୱାରା ସେମାନଙ୍କ ଉତ୍ପାଦନ ଶକ୍ତି ସାଧାରଣତଃ ଅଧିକ ଫଳପ୍ରଦ ହୋଇଥାଏ । ନାରୀ ଓ ପୁରୁଷ ମଧ୍ୟରେ ଉତ୍ପାଦନ ଶକ୍ତିର ପାର୍ଥକ୍ୟ ଥିଲେ ସୁଦ୍ଧା ନାରୀ ୧୮ ଠାରୁ ୨୦ ବର୍ଷ ବୟସରେ ୨୪ ବା ୨୭ ବା ୨୯ ବର୍ଷ ବୟସର ଯୁବକକୁ ବିବାହ କରିବା ଦ୍ୱାରା ଉଭୟଙ୍କ ଉତ୍ପାଦନ ଶକ୍ତି ସବୁଠାରୁ ଅଧିକ ମାତ୍ରାରେ ଫଳପ୍ରଦ ହୋଇଥାଏ ।

ସାମାଜିକ ଅବସ୍ଥା, ଜୀବିକା ନିର୍ବାହ ପ୍ରଣାଳୀ ଉତ୍ପାଦନ ଶକ୍ତି ଉପରେ ବିଶେଷ ପ୍ରଭାବ ପକାଇଥାଏ । ଯୌନବିତ୍ମାନଙ୍କ ମତରେ ୨୦ ବର୍ଷ ବୟସରୁ କମ୍ ଥିବା ନାରୀମାନଙ୍କ ପ୍ରସବ-ଜାତ ସନ୍ତାନ ଦୁର୍ବଳ ହୁଅନ୍ତି । ୧୭ ବର୍ଷ ବୟସରୁ କମ୍ ଥିବା ନାରୀମାନଙ୍କ

ପ୍ରସବଜାତ ସନ୍ତାନ ଅଧିକ ସଂଖ୍ୟାରେ ଶିଶୁ ଅବସ୍ଥାରେ ମରିଯାନ୍ତି । ସେହିପରି କମ୍ ବୟସର ବାପାମା'ମାନଙ୍କର ସନ୍ତାନ ଅଧିକ ସଂଖ୍ୟାରେ ଶୀଘ୍ର ମରିଯାନ୍ତି ।

ଖାଇବା ଖାଦ୍ୟର ମଧ୍ୟ ଉତ୍ପାଦନ ଶକ୍ତି ଉପରେ ପ୍ରଭାବ ରହିଛି । ପ୍ରାଣୀ ଜଗତରେ ଲକ୍ଷ୍ୟ କରାଯାଇଛି ଯେ ଯେଉଁ ପଶୁପକ୍ଷୀ ବେଶି ଖାଦ୍ୟ ଖାଇବାକୁ ପାଆନ୍ତି ସେମାନେ ଅଧିକ ସଂଖ୍ୟାରେ ଛୁଆ ପ୍ରସବ କରିଥାନ୍ତି । କୁକୁରମାନେ ଥରକେ ୬ ଠାରୁ ୧୪ ପର୍ଯ୍ୟନ୍ତ ଛୁଆ ଜନ୍ମକଲାବେଳେ ବାଘ ୫ ଠାରୁ ୭ ଏବଂ ବିଲୁଆ ୪ ଠାରୁ ୬ ଛୁଆ ଥରକେ ଜନ୍ମକରେ । ବଣ ବିରାଡ଼ି ବର୍ଷକେ ୪ ବା ୫ ଛୁଆ ଥରକେ ଜନ୍ମ କଲାବେଳେ ପୋଷା ବିରାଡ଼ି ବର୍ଷକେ ୫ ବା ୬ ଛୁଆ ଏବଂ ବର୍ଷକେ ଦୁଇ ବା ତିନଥର ପ୍ରସବ କରେ । ବରାହ ବର୍ଷକେ ଥରେ ୪, ୮ ବା ୧୦ ଛୁଆ ପ୍ରସବ କଲାବେଳେ ଘୁଷୁରି ଥରକେ ୧୬ଟି ଛୁଆ ପ୍ରସବ କରିବା ଦେଖାଯାଉଛି ଏବଂ ଏହା ମଧ୍ୟ ଦୁଇବର୍ଷ ଭିତରେ ଥରକେ ୧୦ ଛୁଆ ହିସାବରେ ପାଞ୍ଚଥର ପ୍ରସବ କରିବା ଦେଖାଯାଇଛି । ବୈଜ୍ଞାନିକ ଡାରଉଇନ କହନ୍ତି ଯେ ଗୃହପାଳିତ ପଶୁମାନେ ଭଲଭାବେ ଖାଦ୍ୟ ପାଇବା ଯୋଗୁଁ ସମଜାତିର ବନ୍ୟପଶୁମାନଙ୍କ ଅପେକ୍ଷା ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଅଧିକ ଥର ଓ ଅଧିକ ସଂଖ୍ୟାରେ ଛୁଆ ପ୍ରସବ କରିଥାନ୍ତି । ଜଙ୍ଗଲ ଠେକୁଆ ବର୍ଷକେ ୪ ଥର ଏବଂ ପ୍ରତି ଥରରେ ୪ ଠାରୁ ୮ ପର୍ଯ୍ୟନ୍ତ ଛୁଆ ପ୍ରସବ କଲାବେଳେ ଗୃହପାଳିତ ଠେକୁଆ ବର୍ଷକେ ୬ ବା ୭ ଥର ଏବଂ ଥରକେ ୪ ଠାରୁ ୧୧ ପର୍ଯ୍ୟନ୍ତ ଛୁଆ ପ୍ରସବ କରେ । ସେହିପରି ବଣ ହଂସ ବର୍ଷକେ ୫ ଠାରୁ ୧୦ ପର୍ଯ୍ୟନ୍ତ ଅଣ୍ଡା ଦେଲା-ବେଳେ ଗୃହପାଳିତ ହଂସ ବର୍ଷକେ ୮୦ ଠାରୁ ୧୦୦ ପର୍ଯ୍ୟନ୍ତ ଅଣ୍ଡା ଦେଇଥାଏ ।

ବନ୍ୟ ପ୍ରାଣୀମାନଙ୍କ ଠାରୁ ଗୃହପାଳିତ ପ୍ରାଣୀଗୁଡ଼ିକ କମ୍ ପରିଶ୍ରମ କରୁଥିବାରୁ ସେମାନଙ୍କର ଉତ୍ପାଦନ ଶକ୍ତି ବୃଦ୍ଧି ପାଇଥାଏ । ବନ୍ୟ ଜନ୍ତୁଗୁଡ଼ିକ ନିଜର ଖାଦ୍ୟ ସକାଶେ ପରିଶ୍ରମ କଲାବେଳେ ଗୃହପାଳିତ ଜନ୍ତୁଗୁଡ଼ିକ ବିନା ପରିଶ୍ରମରେ ଭଲ ଖାଦ୍ୟ ପାଇଥାନ୍ତି । ପୁଣି ଯେଉଁ ପ୍ରାଣୀଗୁଡ଼ିକ ଭଲ ଖାଦ୍ୟ ପାଆନ୍ତି ସେମାନଙ୍କ ଉତ୍ପାଦନ ଶକ୍ତି ବୃଦ୍ଧି

ପାଉଥିବା ଲକ୍ଷ୍ୟ କରାଯାଇପାରେ । ମନୁଷ୍ୟମାନଙ୍କଠାରେ ମଧ୍ଯ ଏହା ଲକ୍ଷ୍ୟ କରାଯାଇପାରେ । କେତେକ ଦେଶର ଜନଗଣନାରୁ ଜଣାଯାଇଛି ଯେ ଯେଉଁ ବର୍ଷ ଭଲ ଫସଲ ହୁଏ ସେହିବର୍ଷ ଅଧିକ ସନ୍ତାନ ଜନ୍ମ-ହୋଇଥାନ୍ତି । କିନ୍ତୁ ଦୁର୍ଭିକ୍ଷ ବେଳେ ଏତେ ସଂଖ୍ୟାରେ ଶିଶୁ ଜନ୍ମ ହୁଅନ୍ତି ନାହିଁ । ଅଭାବ ଓ କଠିନ ପରିଶ୍ରମ ନାରୀମାନଙ୍କର ଉତ୍ପାଦନ ଶକ୍ତିକୁ କମାଇଦିଏ । ଆଫ୍ରିକା ଦେଶର ବୋଏର ସ୍ତ୍ରୀମାନେ ଭଲଭାବେ ଖାଦ୍ୟ ପାଇ ଆଳସ୍ୟ ଜୀବନ ଯାପନ କରିବା ଯୋଗୁଁ ଅଧିକ ସନ୍ତାନ ଉତ୍ପାଦନ କରିଥାନ୍ତି । କିନ୍ତୁ ହଟେନଟଟ୍ ନାରୀମାନେ ଅଧିକ ପରିଶ୍ରମ କରି ଭଲ ଖାଦ୍ୟ ପାଉ ନ ଥିବା ଯୋଗୁଁ ଜଣେ ନାରୀ ଜୀବନରେ ତିନୋଟିରୁ ଅଧିକ ସନ୍ତାନ ପ୍ରସବ କରିବା କମ୍ ଦେଖାଯାଏ । ବିନା ପରିଶ୍ରମରେ ଖାଦ୍ୟ ଓ ସହଜ ଜୀବନଯାତ୍ରା ପ୍ରଣାଳୀ ହେଲେ ମନୁଷ୍ୟମାନେ ଅଧିକ ସନ୍ତାନ ଜନ୍ମ କରିବା ଦେଖାଯାଏ । ସେଡ଼ଲର (Sadler) କହନ୍ତି ଯେ ଖାଦ୍ୟ ଜିନଷର ମୂଲ୍ୟ ବୃଦ୍ଧି ପାଇଲେ ମନୁଷ୍ୟର ଉତ୍ପାଦନ ଶକ୍ତି କମି ନ ଯାଇ ବରଂ ବୃଦ୍ଧି ହୁଏ । କିନ୍ତୁ ଦରଦାମର ବୃଦ୍ଧି ଯୋଗୁଁ ବିବାହର ସଂଖ୍ୟା କମିଯାଇପାରେ । କାରଣ ଖାଦ୍ୟଜିନଷର ମୂଲ୍ୟବୃଦ୍ଧି ହେବା ଯୋଗୁଁ ମଜୁରିଆଙ୍କ ମଜୁରୀ ବୃଦ୍ଧି ହୁଏ । ସେହେତୁ ସେମାନଙ୍କ ଖାଇବାରେ ବିଶେଷ ବାଧା ଆସେ ନାହିଁ । ରୋଗ ଓ ଦୁର୍ଭିକ୍ଷ ମନୁଷ୍ୟ ଉତ୍ପାଦନ ଶକ୍ତିକୁ କମାଇଦିଏ । ବାପାମା ଉଚିତ ଖାଦ୍ୟ ନ ପାଇଲେ ପ୍ରସବଜାତ ସନ୍ତାନ ଦୁର୍ବଳ ହୁଅନ୍ତି ।

ଯେଉଁ ଦେଶରେ ଗୋ-ଚାରଣ ଭୂମି ଅଧିକ ସେହି ଦେଶରେ ଜନସଂଖ୍ୟା କମ୍ । କିନ୍ତୁ ଯେଉଁ ଦେଶରେ ଗହମଚାଷ ବେଶି ହୁଏ ସେଠାରେ ଜନସଂଖ୍ୟା ଅନୁପାତରେ ଶୀଘ୍ର ବୃଦ୍ଧିପାଏ । ଯେଉଁ ଦେଶରେ ଧାନଚାଷ ହୁଏ ସେହି ଦେଶରେ ଗହମଚାଷ ଦେଶ ଅପେକ୍ଷା ଜନସଂଖ୍ୟା ଅଧିକ ହୁଏ ।

ନାରୀମାନେ ଅତ୍ୟଧିକ ମଦ୍ୟପାନ କରିବାଦ୍ୱାରା ସେମାନଙ୍କ ଉତ୍ପାଦନ ଶକ୍ତି ହ୍ରାସପାଏ । ମଦ୍ୟପାନ ସେମାନଙ୍କ ଶରୀରରେ ଅନ୍ୟାନ୍ୟ ଅସୁବିଧା ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଉତ୍ପାଦନ ଯନ୍ତ୍ର ଉପରେ ବିଶେଷ ପ୍ରଭାବ ପକାଏ । ଦୈନନ୍ଦିନ ମାଛ ଖାଇବା ଦ୍ୱାରା ଯୌନ ପ୍ରବୃତ୍ତି ବୃଦ୍ଧି

ହୁଏ ଏବଂ ଉତ୍ପାଦନ ଶକ୍ତି ବୃଦ୍ଧି କରେ । ଭାତ ଓ ଵନଲିଆଳୁ ଖାଦ୍ୟ ଉତ୍ପାଦନ ଶକ୍ତିକୁ ବୃଦ୍ଧିକରେ (ଚୀନା ଓ ଭାରତୀୟମାନେ) । ଯୌନବିତ୍ ଡେଭି (Davy) ଙ୍କ ମତରେ ଯେଉଁ ଦେଶରେ ବେଶି ପରିମାଣରେ ମାଛ ଖାଆନ୍ତି ସେହି ଦେଶ ବା ଜାତିର ନାରୀମାନେ ଅଧିକ ସୁନ୍ଦର ଓ ଅଧିକ ଉତ୍ପାଦନ ଶକ୍ତିସମ୍ପନ୍ନ । ଏଥିଯୋଗୁଁ ଚିନ ଓ ଜାପାନର ସମୁଦ୍ର ଉପକୂଳ ଅଞ୍ଚଳମାନଙ୍କରେ ଜନସଂଖ୍ୟା ବେଶି ଦେଖାଯାଏ । ବେଶି ପରିମାଣରେ ମାଂସ ଖାଇବା ଦ୍ୱାରା ଉତ୍ପାଦନ ଶକ୍ତି ହ୍ରାସ ପାଏ । ସେଥିଯୋଗୁଁ ଯେଉଁ ଦେଶର ଲୋକମାନେ ବେଶି ସମୟ ଶିକାର କରି ବଞ୍ଚନ୍ତି ସେଠାରେ ଗୋଟିଏ ପରିବାରରେ ଜନସଂଖ୍ୟା କମ ଥିବା ଦେଖାଯାଏ । କିନ୍ତୁ ଆଜି କେତେକ ଯୌନବିତ୍ ମାଂସ ଖାଦ୍ୟ ନାରୀମାନଙ୍କ ଉତ୍ପାଦନ ସଂଖ୍ୟା ହ୍ରାସ କରିବା ତଥ୍ୟର ବିପକ୍ଷରେ ମତ ଦେଇଥାନ୍ତି । ସେମାନେ ଉଦାହରଣରେ କହନ୍ତି ଯେ ବିଲାତର ରମଣୀମାନେ ଅନ୍ୟ କେତେକ ଦେଶର ରମଣୀମାନଙ୍କ ଠାରୁ ଅଧିକ ମାଂସ ଖାଉଥିଲେ ସୁଦ୍ଧା ସେମାନଙ୍କର ଉତ୍ପାଦନ ଶକ୍ତି କମ୍ ନୁହେଁ ।

ଜୀବନଯାତ୍ରା ପ୍ରଣାଳୀ, ବଂଶପରମ୍ପରା, ଜଳବାୟୁ, ଉତ୍ତମ ଖାଦ୍ୟର ପ୍ରଭାବ ଉତ୍ପାଦନ ଶକ୍ତି ଉପରେ ରହେ । ବିଳାସ ଓ ପ୍ରାଚୁର୍ଯ୍ୟରେ ଜୀବନଯାପନ, ମଦ୍ୟପାନ, କଠିନ ମାନସିକ ପରିଶ୍ରମ, ଅତ୍ୟଧିକ ଯୌନରତି ପ୍ରଭୃତି ଉତ୍ପାଦନ ଶକ୍ତିକୁ ହ୍ରାସ କରେ ।

ଉତ୍ପାଦନ ଶକ୍ତି ଉପରେ ଜଳବାୟୁର ପ୍ରଭାବ ରହେ । ଉଷ୍ଣ ଜଳବାୟୁର ନାରୀମାନେ ଅଧିକ ସନ୍ତାନ ଉତ୍ପାଦନ କରିଥାନ୍ତି । ଥଣ୍ଡା ଜଳବାୟୁରୁ ପଶୁମାନଙ୍କୁ ଉଷ୍ଣ ଜଳବାୟୁକୁ ଆଣିବାଦ୍ୱାରା ସେମାନଙ୍କର ଶୀଘ୍ର ମଦକାଳ ପହଞ୍ଚିଥାଏ । ଶରତ୍ ଓ ବସନ୍ତ ଋତୁରେ ଅଧିକାଂଶ ନାରୀମାନଙ୍କର ଗର୍ଭ ସଞ୍ଚାର ହୋଇଥାଏ । କାରଣ ଏହି ସମୟରେ ଜଳବାୟୁ ବଦଳିବା ସଙ୍ଗେ ସଙ୍ଗେ ପରିବାରମାନଙ୍କରେ ଖାଦ୍ୟର ଅଭାବ ନ ଥାଏ । ସାଧାରଣତଃ ଗ୍ରୀଷ୍ମ ଓ ଶୀତ ଋତୁ ପୂର୍ବରୁ ଅଧିକାଂଶ ନାରୀଙ୍କ ଗର୍ଭସଞ୍ଚାର ହେଉଥିବା ଲକ୍ଷ୍ୟ କରାଯାଇଛି ।

ଜୀବନଯାତ୍ରା ପ୍ରଣାଳୀରେ ହଠାତ୍ ଓ ବିଶେଷ ପରିବର୍ତ୍ତନ ହେଲେ ଉତ୍ପାଦନ ଶକ୍ତି ଉପରେ ବିପରୀତ ପ୍ରଭାବ ପଡ଼େ । ବୈଜ୍ଞାନିକମାନେ

ଲକ୍ଷ୍ୟ କରିଛନ୍ତି ଯେ ଶୁଖିଲା ଖାଦ୍ୟ ଖାଇ ରହୁଥିବା ମାଈଘୋଡ଼ାକୁ କଞ୍ଚା ଘାସ ଖାଇବାକୁ ଦେବାଦ୍ୱାରା ତାହାର କେତେଦିନ ପର୍ଯ୍ୟନ୍ତ ଗର୍ଭସଞ୍ଚାର ହୁଏ ନାହିଁ । ସେହିପରି ଇଉରୋପୀୟମାନେ ଗ୍ରୀଷ୍ମମଣ୍ଡଳର ଦେଶମାନଙ୍କୁ ରହିବା ନିମନ୍ତେ ଆସିଲେ ଜଳବାୟୁର ପରିବର୍ତ୍ତନ ଯୋଗୁଁ ସେମାନଙ୍କ ଉତ୍ପାଦନ ଶକ୍ତି କମିବା ଲକ୍ଷ୍ୟ କରାଯାଇଛି । ୟୁରୋପୀୟ ନାରୀମାନେ ଗ୍ରୀଷ୍ମମଣ୍ଡଳ ଦେଶମାନଙ୍କରେ ରହିବା ନିମନ୍ତେ ଆସିଲେ ସେମାନଙ୍କ ଉତ୍ପାଦନ ଶକ୍ତି କ୍ରମେ କ୍ରମେ କମିଆସେ, କିନ୍ତୁ ରହିବାର କେତେ ପୁରୁଷ ପରେ ଆସେ ଆସେ ଅବସ୍ଥା ସୁଧୁରିଯାଏ ।

ବହୁତ ନିକଟ ରକ୍ତ ସମ୍ପର୍କୀୟ ନାରୀ ଓ ପୁରୁଷ ବିବାହ କରିବା ଦ୍ୱାରା ଉତ୍ପାଦନ ହ୍ରାସ ପାଏ । ପଶୁମାନଙ୍କ ଠାରେ ଦେଖାଯାଇଛି ଯେ ନିକଟ ରକ୍ତ ସମ୍ପର୍କୀୟ ପଶୁମାନେ ନିମ୍ନ ଶ୍ରେଣୀର ଛୁଆ ଜନ୍ମ କରିଥାନ୍ତି ।

ଶରୀର ଗଠନ ଓ ମାନସିକ ଚିନ୍ତାଧାରା ବା ସ୍ୱଭାବ ଉତ୍ପାଦନ ଶକ୍ତି ଉପରେ ପ୍ରଭାବ ପକାଏ । ସ୍ୱାମୀ ଓ ସ୍ତ୍ରୀର ଶାରୀରିକ ଗଠନ ଓ ସ୍ୱଭାବରେ ସାମଞ୍ଜସ୍ୟ ନ ରହିଲେ ସେମାନଙ୍କ ଉତ୍ପାଦନ ଶକ୍ତି ବୃଦ୍ଧିପାଏ, ଯଥା କୃଷ୍ଣବର୍ଣ୍ଣ ଓ ଚଞ୍ଚଳସ୍ୱଭାବର ପୁରୁଷ ସହିତ ଶ୍ୱେତାଙ୍ଗୀ ଓ ଆଳସ୍ୟ-ପରିପୂର୍ଣ୍ଣ ନାରୀର ବିବାହ ହେଲେ ଉତ୍ପାଦନ ଶକ୍ତିର ଯେତିକ ସୁବିଧା ରହେ, ଉଭୟେ ଚଞ୍ଚଳ ଓ କର୍ମଠ ହେଲେ ସେତିକ ସୁବିଧା ରହେ ନାହିଁ ।

ସହରରେ ମଫସଲ ଅପେକ୍ଷା ବ୍ୟଭିଚାରର ପ୍ରସବ ବେଶି । ଶିଳ୍ପ ସହରମାନଙ୍କର ଶ୍ରମିକ ସମାଜରେ ଶକ୍ତିହୀନ ସନ୍ତାନ ବେଶି ଜନ୍ମ ହୁଅନ୍ତି । ଏହା ଫଳରେ ଜନସମାଜର କ୍ରମେ ଉତ୍ପାଦନ ଶକ୍ତି କ୍ଷୟ ହୁଏ । କିନ୍ତୁ କୃଷକ ସମାଜରେ ଏହାର ବିପରୀତ ଲକ୍ଷଣ ଦେଖାଯାଏ ।

ପ୍ରତ୍ୟେକ ମାସରେ ବା ଚାରି ସପ୍ତାହ ଅନ୍ତରରେ ଗୋଟିଏ ଡିମ୍ବାଣୁ ନାରୀର ଡିମ୍ବକୋଷରୁ ବାହାରେ । ପୁରୁଷର ଶୁକ୍ରକୋଷରୁ ଅସଂଖ୍ୟ ଶୁକ୍ରାଣୁ ନିଃସୃତ ହୁଅନ୍ତି । ରତି ସମୟରେ ପୁରୁଷର ଶୁକ୍ର ଲିଙ୍ଗଦେଇ ନାରୀର ଯୋନିନାଳୀ ଭିତରେ ଏବଂ ଗର୍ଭାଶୟ ନିକଟରେ ନିର୍ଗତ ହୁଏ ।

ଡିମ୍ବାଣୁଟି ଆକାରରେ ଗୋଲ ଓ ଶୁକ୍ରାଣୁ ଅପେକ୍ଷା ଅନେକ ଗୁଣରେ ବଡ଼ । ତାହା ଭିତରେ ପୁଷ୍ଟିକର ଖାଦ୍ୟ ମଧ୍ୟ ଥାଏ । ଡିମ୍ବାଣୁ ଓ ଶୁକ୍ରାଣୁର ମିଳନ ବା ନିଷେକ ହେବା ପରେ ଜୀବକୋଷର ଆରମ୍ଭ ହୁଏ । ଜୀବକୋଷ ଗର୍ଭାଶୟକୁ ସଂଯୁକ୍ତ ହୋଇ ମାତୃ ଶରୀରରୁ ଖାଦ୍ୟ ପାଇବା ପର୍ଯ୍ୟନ୍ତ ଡିମ୍ବାଣୁ ଭିତରେ ଥିବା ପୁଷ୍ଟିସାର ଖାଦ୍ୟ ସାହାଯ୍ୟ କରେ ।

ପ୍ରତ୍ୟେକ ଋତୁ ସପ୍ତାହରେ ଅର୍ଥାତ୍ ଦୁଇଟି ମାସିକ ଋତୁର ମଧ୍ୟଭାଗରେ ଗୋଟିଏ ଡିମ୍ବାଣୁ ଡିମ୍ବକୋଷରୁ ବାହାରିପଡ଼େ ଓ ନିକଟରେ ଥିବା ଡିମ୍ବବାହୀ ନାଳୀ ଭିତରକୁ ଠେଲିପଡ଼େ ବା ଖସିପଡ଼େ । ଡିମ୍ବାଣୁ ଗତିଶୀଳ ନୁହେ । ଡିମ୍ବବାହିନୀ ଡିମ୍ବାଣୁକୁ ଠେଲି ଠେଲି ଗର୍ଭାଶୟରେ ପହଞ୍ଚାଇଦିଏ ।

ଡିମ୍ବବାହିନୀରେ ଡିମ୍ବାଣୁ ଧୀରେ ଧୀରେ ଗଡ଼ି ଗଡ଼ି ଅଗ୍ରସର ହେଲାବେଳେ ନାଳୀର ନିଃସୃତ ରସଦ୍ୱାରା ତାହାର ଉପରେ କେତେକ ପରସ୍ତର ଗୋଟିଏ ଆବରଣ ଜମିଯାଏ । ଏହି ଆବରଣ ଡିମ୍ବାଣୁକୁ ବିପଦରୁ ରକ୍ଷା କରିବା ସଙ୍ଗେ ସଙ୍ଗେ ଖାଦ୍ୟସାର ମଧ୍ୟ ଯୋଗାଏ । ପୁଣି ଏହି ଆବରଣ ଯୋଗୁଁ ଶୁକ୍ରାଣୁ ଡିମ୍ବାଣୁ ନିକଟରେ ସହଜେ ପହଞ୍ଚି ପାରେନାହିଁ । ସେହେତୁ ଅନେକ ଡାକ୍ତର କହନ୍ତି ଯେ ଡିମ୍ବବାହିନୀର ଉପର ଭାଗରେ ଡିମ୍ବାଣୁ ଓ ଶୁକ୍ରାଣୁର ସାଧାରଣତଃ ମିଳନ ହୋଇଥାଏ ।

ଗର୍ଭାଶୟରେ ପହଞ୍ଚିବା ପୂର୍ବରୁ ବା ପହଞ୍ଚିବା ପରେ ଡିମ୍ବାଣୁର ନିଷେକ ବା ଶୁକ୍ରାଣୁ ସହିତ ମିଳନ ନ ହେଲେ ଡିମ୍ବାଣୁ ଗର୍ଭାଶୟରେ ମିଳେଇ ଯାଏ । ଏହାର ପ୍ରାୟ ଦଶଦିନ ପରେ ନାରୀର ଯେଉଁ ମାସିକ ଋତୁସ୍ରାବ ହୁଏ ସେହି ରଜଃସ୍ରାବରେ ଏହା ପଦାକୁ ବାହାରିପଡ଼େ ।

ଶୁକ୍ରାଣୁ ନିର୍ଗତ ହୋଇ ଯୋନିନାଳୀରେ ପହଞ୍ଚିଲା ବେଳକୁ ଗତିଶୀଳ ହୋଇଥାଏ । ଯେଉଁ କୋଟି କୋଟି ଶୁକ୍ରାଣୁ ଏକାବେଳକେ ଯୋନିନାଳୀରେ ପହଞ୍ଚିଯାନ୍ତି ସେମାନେ ସାଙ୍ଗେ ସାଙ୍ଗେ ଡିମ୍ବାଣୁର ଅନୁସନ୍ଧାନରେ ବାହାରିପଡ଼ନ୍ତି ଓ ଏଥି ନିମନ୍ତେ ସେମାନଙ୍କ ମଧ୍ୟରେ ପ୍ରତିଯୋଗିତା ଆରମ୍ଭ ହୁଏ ।

ଗର୍ଭାଶୟରୁ ଡିମ୍ବାଣୁ ନିକଟରେ ପହଞ୍ଚିବା ନିମନ୍ତେ ଶୁକ୍ରାଣୁକୁ ପ୍ରାୟ ପାଞ୍ଚଇଞ୍ଚ ଲମ୍ବର ରାସ୍ତା ଯିବାକୁ ପଡ଼େ । ଏହି ରାସ୍ତା ସିଧା ବା ସହଜ ନୁହେଁ । ଗର୍ଭାଶୟର ଶ୍ଳେଷ୍ମଝିଲ୍ଲି ପରଦାରେ ଭଙ୍ଗ ରହେ । ସେହେତୁ ମଣିଷ ପାହାଡ଼, ପର୍ବତ, ଗିରିକନ୍ଦର ଦେଇ ଗଲାଭଳି ପରି ଶୁକ୍ରାଣୁକୁ ଗର୍ଭାଶୟର ଶ୍ଳେଷ୍ମଝିଲ୍ଲି ପରସ୍ତ ଉପରେ ଯିବାକୁ ପଡ଼େ । ଗର୍ଭାଶୟର ଶେଷରେ ରହେ ଡିମ୍ବବାହୀ ନାଳୀ ବା ଡିମ୍ବବାହିନୀ । ଡିମ୍ବବାହୀ ନାଳୀର ଲୋମଗୁଡ଼ିକ ଗର୍ଭାଶୟଆଡ଼େ ଢଳି ରହିଥାନ୍ତି । ଗର୍ଭାଶୟରୁ ବାହାରି ଡିମ୍ବବାହିନୀରେ ଗତି କଲାବେଳକୁ ନାଳୀର ଲୋମଗୁଡ଼ିକ ବାଧା ସୃଷ୍ଟି କରନ୍ତି । ଶୁକ୍ରାଣୁ ଯୋନିରେ ପହଞ୍ଚିବାଠାରୁ ଡିମ୍ବାଣୁ ନିକଟରେ ପହଞ୍ଚିବା ପର୍ଯ୍ୟନ୍ତ କେତେ ସମୟ ନିଏ ତାହା ସଠିକ୍ କହିବା କଷ୍ଟସାଧ୍ୟ । କିନ୍ତୁ ଅନୁମାନ କରାଯାଏ ଯେ ତାହାକୁ ପ୍ରାୟ ତିନିଘଣ୍ଟାରୁ ଦଶଘଣ୍ଟା ପର୍ଯ୍ୟନ୍ତ ଲାଗେ । ଏହି ଯାତ୍ରାର ପଥ କଷ୍ଟସାଧ୍ୟ ହେଲେ ସୁଦ୍ଧା ଶ୍ଳେଷ୍ମଝିଲ୍ଲିରୁ ଯେଉଁ ରସ ନିଃସୃତ ହୁଏ, ତାହା ଶୁକ୍ରାଣୁକୁ ବହୁତ ସାହାଯ୍ୟ କରେ ।

କେତେକୋଟି ଶୁକ୍ରାଣୁ ଗୋଟିଏ ଡିମ୍ବାଣୁକୁ ଖୋଜି ପାଇବାରେ ସେତେଦୂର ଅସୁବିଧା ରହେ ନାହିଁ । ଡିମ୍ବାଣୁର ମଧ୍ୟ ତେଜ ବିକୀରଣ ଶକ୍ତି ରହିଛି । ଡିମ୍ବାଣୁ ଏହାଦ୍ଵାରା ଶୁକ୍ରାଣୁଗୁଡ଼ିକୁ ଆକର୍ଷଣ କରେ । ପ୍ରକୃତି ଗୋଟିଏ ଉପାୟରେ ସନ୍ତୁଷ୍ଟ ନ ହୋଇ ସେଠାରେ ଏକାଧିକ ଉପାୟର ବ୍ୟବସ୍ଥା ରଖିଛି ।

ଡିମ୍ବାଣୁ ନିକଟରେ ଶୁକ୍ରାଣୁମାନେ ପହଞ୍ଚିବା ସଙ୍ଗେ ସଙ୍ଗେ ଚତୁଃପାର୍ଶ୍ଵରେ ଘେରି ତାହାର ଭିତରେ ପ୍ରବେଶ କରିବାକୁ ଚେଷ୍ଟା କରନ୍ତି । ଡିମ୍ବାଣୁର ବାହାର ପାଖରେ ଗୋଟିଏ ସୂକ୍ଷ୍ମ ପର୍ଦ୍ଦାର ଆବରଣ ଥାଏ । ଶୁକ୍ରାଣୁମାନେ ମୁଣ୍ଡ ସାହାଯ୍ୟରେ ସେହି ସୂକ୍ଷ୍ମ ଆବରଣକୁ ଫୋଡ଼ି ତା' ଭିତରେ ପଶିବାକୁ ଚେଷ୍ଟା କରନ୍ତି । କିନ୍ତୁ ତାହା ସହଜ ହୁଏ ନାହିଁ ଏବଂ କୌଣସିଟି ଜୟଯୁକ୍ତ ହୁଅନ୍ତି ନାହିଁ । ଏହା ପରେ ଡିମ୍ବାଣୁର ଗୋଟିଏ ପାଖ ଅଳ୍ପ ଫୁଲିଉଠେ । ସେତିକିବେଳେ ସେହି ନିକଟରେ ଥିବା ଶକ୍ତିଶାଳୀ ଶୁକ୍ରାଣୁ ଆବରଣକୁ ଫୋଡ଼ିଦେଇ ଭିତରେ ପ୍ରବେଶ କରେ । ଶୁକ୍ରାଣୁର ମୁଣ୍ଡଟି ଡିମ୍ବାଣୁ ଭିତରକୁ ଚାଲିଯାଏ ଓ

ଲିଙ୍ଗଟି ମୂତ୍ରରୁ ଖସିଯାଇ ବାହାରେ ରହେ । ଶୁକ୍ରାଣୁକୁ ଆଗେଇ ନେବାରେ ଲିଙ୍ଗଟି କେବଳ ସାହାଯ୍ୟ କରିଥାଏ; ସେହେତୁ ତାହାର ଆଉ ଆବଶ୍ୟକତା ରହେ ନାହିଁ ।

ଡିମ୍ବାଣୁ ମଧ୍ୟରେ ଗୋଟିଏ ଶୁକ୍ରାଣୁ ପ୍ରବେଶ କଲାପରେ ଅନ୍ୟ ଶୁକ୍ରାଣୁମାନେ ପ୍ରବେଶ କରିବା ନିମନ୍ତେ ରାସ୍ତା ବନ୍ଦ ହୋଇଯାଏ । ସେହେତୁ ଅନ୍ୟ ଶୁକ୍ରାଣୁଗୁଡ଼ିକ ପ୍ରବେଶ କରି ନ ପାରି ନଷ୍ଟ ହୋଇ ଡିମ୍ବବାହିନୀର ଶ୍ଳେଷ୍ମଝିଲ୍ଲି ପରସ୍ତରେ ମିଳେଇଯାନ୍ତି ।

ଗର୍ଭାଶୟରେ ପହଞ୍ଚିବାବେଳେ ଡିମ୍ବାଣୁର ଯଦି ନିଷେକ ବା ସଂଯୋଗ ହୋଇ ନ ଥାଏ ତାହାହେଲେ ଗର୍ଭାଶୟର ଶ୍ଳେଷ୍ମ ଝିଲ୍ଲିରେ ତାହା ନଷ୍ଟ ହୋଇଯାଏ । ନାରୀର ମାସିକ ରଜଃସ୍ରାବବେଳେ ଗର୍ଭାଶୟରୁ ଏସବୁ ପଦାକୁ ବାହାରିପଡ଼େ । ମାସିକ ରଜଃସ୍ରାବ ବନ୍ଦ ହେବାପରେ ଗର୍ଭାଶୟ ପୁଣି ନିଷିକ୍ତ ଡିମ୍ବାଣୁର ଆଗମନକୁ ପ୍ରସ୍ତୁତ ହୁଏ । ପରେ ଚାରି ସପ୍ତାହ ଭିତରେ ଗର୍ଭସଞ୍ଚାର ନ ହେଲେ ପୁଣି ମାସିକ ରଜଃସ୍ରାବ ହୁଏ । ଗର୍ଭସଞ୍ଚାର ହେବା ପର୍ଯ୍ୟନ୍ତ ନାରୀର ମାସିକ ରଜସ୍ରାବ ଏହିପରି ବରାବର ହେଉଥାଏ । ଗର୍ଭସଞ୍ଚାର ହେବା ପରଠାରୁ ଛୁଆ ପ୍ରସବ ହୋଇ ମାତୃସ୍ତନ୍ୟ ଛାଡ଼ିବା ପର୍ଯ୍ୟନ୍ତ ମାସିକ ରଜଃସ୍ରାବ ବନ୍ଦ ରହେ ।

ଏଥିରୁ ସହଜରେ ଅନୁମାନ କରାଯାଇପାରେ ଯେ ନାରୀର ଜୀବନସାରା ରଜଃସ୍ରାବ ନ ହେବାର ମଧ୍ୟ ସମ୍ଭାବନା ରହିଛି ଯେହେତୁ ରଜଃସ୍ରାବ ପୂର୍ବରୁ ଗର୍ଭସଞ୍ଚାର ହୋଇଥାଏ । ଥରେ ଗର୍ଭସଞ୍ଚାର ହେଲେ ତା'ପରେ ପ୍ରସବ ହୋଇ ଛୁଆ ସ୍ତନ୍ୟ ଛାଡ଼ିବାପୂର୍ବରୁ ପୁଣି ଯଦି ଗର୍ଭସଞ୍ଚାର ହୁଏ ଏବଂ ଏହିପରି ଯଦି ବରାବର ଚାଲେ ତାହାହେଲେ ନାରୀର ମାସିକ ରଜଃସ୍ରାବ ହେବା ଅସମ୍ଭବ । ନାରୀର କେତେକ ବର୍ଷ ବୟସ ପରେ ଯୌନଶକ୍ତିର ଅବସାନ ହୁଏ । ସେତେବେଳେ ମାସିକ ରଜଃସ୍ରାବ ପୂରାପୂରି ବନ୍ଦ ହୋଇଯାଏ । ତେଣୁ ଜୀବନସାରା ନାରୀର ରଜଃସ୍ରାବ ନ ହେବା ଅସମ୍ଭବ ନୁହେ । କିନ୍ତୁ ବାସ୍ତବ କ୍ଷେତ୍ରରେ ଏହିପରି ଦୃଷ୍ଟାନ୍ତ ସାଧାରଣତଃ ଦେଖାଯାଏ ନାହିଁ ।

ରଜଃସ୍ରାବ ବନ୍ଦ ହେବାର ଆଠ ବା ଦଶଦିନ ଭିତରେ ଯୌନ ସଙ୍ଗମ କଲେ ସାଧାରଣତଃ ନାରୀମାନଙ୍କର ଗର୍ଭସଞ୍ଚାର ହୁଏ ବୋଲି ଡାକ୍ତରମାନେ କହନ୍ତି । କିନ୍ତୁ ଯୌନବିତ୍ ହସଲ (Hasler) ଗବେଷଣା କରି କହିଛନ୍ତି ଯେ ଅଧିକାଂଶ ନାରୀ ରଜଃସ୍ରାବ ବନ୍ଦ ହେବା ପରେ ୧୪ଦିନରେ ଯୌନସଙ୍ଗମ କରି ଗର୍ଭବତୀ ହୋଇଛନ୍ତି ।

ଭାରତୀୟ କାମସୂତ୍ରରେ ଲେଖାଅଛି ଯେ ନାରୀର ରଜଃସ୍ରାବ ବନ୍ଦ ହେବା ପରେ ପରେ ତାହାର ଗର୍ଭସଞ୍ଚାର ନିମନ୍ତେ ଉତ୍କୃଷ୍ଟ ସମୟ ଆସେ । ଚତୁର୍ଥ ଦିନ ସ୍ନାନ କରି ଶୁଦ୍ଧି ହୋଇ ଆସିବା ପରେ ସେହିଦିନ ରାତିରେ ସ୍ୱାମୀ ଉପସ୍ଥିତ ରହି ଯୌନସଙ୍ଗମ ନ କରିବା ପାପ ବୋଲି କୁହାଯାଇଛି ଏବଂ ଏହିଦିନ ଠାରୁ ବାର ରାତି ପର୍ଯ୍ୟନ୍ତ ନାରୀର ଗର୍ଭସଞ୍ଚାର ହୋଇପାରେ ।

ୟୁହୁଦିମାନଙ୍କର ଧର୍ମଗ୍ରନ୍ଥ ଅନୁଯାୟୀ ରଜଃସ୍ରାବର ପୂର୍ବ ଦିବସ ଏବଂ ରଜଃସ୍ରାବ ବନ୍ଦ ହେବାର ପର ଦିବସ ଗର୍ଭସଞ୍ଚାର ନିମନ୍ତେ ଉତ୍କୃଷ୍ଟ । କିନ୍ତୁ ରଜଃସ୍ରାବ କାଳରେ ଯୌନସଙ୍ଗମ ବାରଣ କରିବା ନିମନ୍ତେ ମୃତ୍ୟୁ-ଦଣ୍ଡର ବିଧାନ ଥିଲେ ସୁଦ୍ଧା ସେ ସମୟରେ ରତିକ୍ରିୟା ଦ୍ୱାରା ଗର୍ଭସଞ୍ଚାର ହୋଇପାରେ ବୋଲି ସେମାନେ ମାନନ୍ତି । ରଜଃସ୍ରାବ ବନ୍ଦ ହେବା ପରେ ୧୨ ଦିନ ପର୍ଯ୍ୟନ୍ତ ନାରୀ ରତିଯୋଗ୍ୟା ନୁହେଁ ବୋଲି ସେମାନଙ୍କ ଧର୍ମଶାସ୍ତ୍ର କହେ ।

ଜାପାନର ଲୋକମାନେ ବିଶ୍ୱାସ କରନ୍ତି ଯେ ରଜଃସ୍ରାବ ବନ୍ଦ ହେବାପରେ ପ୍ରଥମ ଦଶଦିନ ଭିତରେ ନାରୀର ଗର୍ଭସଞ୍ଚାର ହୋଇଥାଏ । କିନ୍ତୁ ରଜଃସ୍ରାବ ବନ୍ଦ ହେବା ଦିନଠାରୁ ନବମ ଦିନ ବହୁତ ନାରୀଙ୍କର ଗର୍ଭସଞ୍ଚାର ହେଉଥିବା ଯୌନବିତ୍‌ମାନେ ଗବେଷଣାରୁ କହନ୍ତି ।

ଗର୍ଭସଞ୍ଚାର ସମୟରେ ବାପମା'ର ମାନସିକ ଅବସ୍ଥା ଗର୍ଭସ୍ଥ ଶିଶୁ ଉପରେ ବିଶେଷ ପ୍ରଭାବ ପକାଏ ବୋଲି ଡାକ୍ତରମାନେ କହନ୍ତି । ପାରିପାର୍ଶ୍ୱିକ ଅବସ୍ଥା ବାପା ଓ ମା'ର ମନରେ ପ୍ରଭାବ ପକାଇଥାଏ । ସେହେତୁ ଡାକ୍ତରମାନେ ଖୋଲା ପବନ, ସୁନ୍ଦର ସାଜସଜ୍ଜା ଓ ପରିଷ୍କାର ଘରେ ରହିବାପାଇଁ କହନ୍ତି । ଅପରିଷ୍କାର ଓ ଦୁର୍ଗନ୍ଧଯୁକ୍ତ ନାରୀମାନେ

ସେହେତୁ କୁରୂପ ସନ୍ତାନ ଜାତ କରନ୍ତି ବୋଲି କୁହାଯାଏ । **Dr. Marie Stopes** (ଡକ୍ଟର ମେରି ଷ୍ଟୋପସ) କହିଛନ୍ତି, ଋତୁସ୍ନାନ ପରେ ନାରୀ ଗର୍ଭସଞ୍ଚାର ଓ ଗର୍ଭଧାରଣ ଇଚ୍ଛା କଲେ ନିଜର ମୁହଁକୁ ପ୍ରଥମେ ଦର୍ପଣରେ ଦେଖିବା ଭଲ ବା ଯେଉଁ ରକମ ପୁତ୍ର ବା କନ୍ୟା ଇଚ୍ଛା କରିବ ସେହି ରକମ ବ୍ୟକ୍ତିକୁ ଦେଖିବା ବା କଳ୍ପନା କରିନେବା ଉଚିତ । କାରଣ ସେହି ମାନସିକ ପ୍ରଭାବ ଗର୍ଭସ୍ଥ ଭ୍ରୂଣ ଉପରେ ବରାବର ରହେ ।

ମନୁଷ୍ୟ ମଧ୍ୟ ଯେଉଁ ପେଶା ବା ଗୁଣରେ ତନ୍ମୟ ରହେ ତାହାର ସନ୍ତାନମାନଙ୍କଠାରେ ସେହି ଗୁଣ ପ୍ରତିଫଳିତ ହୋଇଥାଏ । ସେଥି ନିମନ୍ତେ କଥାରେ କହନ୍ତି, ବଢ଼େଇର ପୁଅ ବଢ଼େଇ ହୁଏ ଏବଂ କମାରର ପୁଅ କମାର ହୁଏ ।

ଗର୍ଭରେ ଶିଶୁ ଥିବା ସମୟରେ ମଧ୍ୟ ମା'ମାନେ ଆନନ୍ଦରେ ରହିବା ଆବଶ୍ୟକ । ମା'ର ମନରେ କଷ୍ଟ ବା ଦୁଃଖ ହେଲେ ତାହା ଗର୍ଭସ୍ଥ ଶିଶୁ ଉପରେ ପ୍ରଭାବ ପକାଏ । ଶିଶୁଠାରେ ମଧ୍ୟ ପ୍ରସବ ପରେ ସେହି ରକମ ପ୍ରବୃତ୍ତି ରହେ ବୋଲି ଯୌନବିତ୍‌ମାନେ କହନ୍ତି ।



## ଶୀଳତା ଓ ସତୀତ୍ୱ

ଯୌନବତ୍ତମାନେ କହନ୍ତି ଯେ ଯୌନଶକ୍ତି ଯୋଗୁଁ ଧନ, ଆସନ ଓ ମର୍ଯ୍ୟାଦା ପାଇବା ନିମନ୍ତେ ମନୁଷ୍ୟ ଇଚ୍ଛା କରିଥାଏ । ଯୌନଶକ୍ତି ହେଉଛି ଜୀବନର ମେରୁଦଣ୍ଡ । ନାରୀମାନେ ଏହି ଶକ୍ତି ଯୋଗୁଁ ବଞ୍ଚିବାକୁ ଇଚ୍ଛା କରିଥାନ୍ତି ।

ଜୀବନର ପ୍ରଥମ ଅବସ୍ଥାରେ ବାଳକବାଳିକାମାନଙ୍କର ଯୌନ ପ୍ରବୃତ୍ତି ନ ଥାଏ । କିନ୍ତୁ ଫ୍ରଏଡ଼ ପ୍ରଭୃତି କେତେକ ଯୌନବିତ୍ ବାଳକ ବାଳିକାମାନଙ୍କ ଠାରେ ମଧ୍ୟ ଯୌନପ୍ରବୃତ୍ତି ଲକ୍ଷ୍ୟ କରିଥିବା କହିଛନ୍ତି । ତଥାପି ବାଳକବାଳିକାମାନଙ୍କଠାରେ ଯେଉଁ ରକମ ଯୌନ ପ୍ରବୃତ୍ତି ରହେ, ତାହା ଯୁବକ ଓ ଯୁବତୀଙ୍କ ଠାରେ ରହିଥିବା ଯୌନପ୍ରବୃତ୍ତି ଠାରୁ ଅନେକ ଭିନ୍ନ । କାରଣ ବାଳକବାଳିକାମାନଙ୍କଠାରେ ଯୌନସଙ୍ଗମ ବା ଯୌନତୃପ୍ତିର ପ୍ରବୃତ୍ତି ରହେ ନାହିଁ ଯାହା କି ଯୁବକ ଓ ଯୁବତୀଠାରେ ଦେଖାଯାଏ ।

କେତେକ ବାଳିକାଙ୍କର ପେଟରେ କୃମି ଜାତ ହୋଇ ମଳଦ୍ୱାର ଦେଇ ବାଳିକାର ଜନନେନ୍ଦ୍ରିୟରେ ପ୍ରବେଶ କରନ୍ତି । ଫଳରେ ବାଳିକା ଜନନେନ୍ଦ୍ରିୟରେ କଣ୍ଡୁ ଅନୁଭବ କରେ । ସେହେତୁ ସେ ନିଜର ଜନନେନ୍ଦ୍ରିୟକୁ କୁଣ୍ଡାଇ ସୁଖ ଅନୁଭବ କରିବାକୁ ଚେଷ୍ଟା କରେ । ଏହା ଅଭ୍ୟାସରେ ପରିଣତ ହୋଇ ସୁଖ ବା କୌତୁକ ନିମନ୍ତେ ସେ ନିଜର ଜନନେନ୍ଦ୍ରିୟରେ ଅଙ୍ଗୁଳି ପ୍ରବେଶ କରାଇଥାଏ । ନତୁବା ସାଙ୍ଗସାଥିଙ୍କଠାରୁ ବାଳକବାଳିକାମାନେ ଏହା ଶିକ୍ଷା କରିଥାନ୍ତି ।

କେତେକ ନିଗ୍ରୋସମାଜରେ ୬ ଠାରୁ ୮ ବର୍ଷ ବୟସର ବାଳିକାମାନେ ପିତାମାତା ବା ଅନ୍ୟାନ୍ୟ ଲୋକଙ୍କ ସମ୍ମୁଖରେ ୧୦ ବା ୧୨ ବର୍ଷ ବୟସର ବାଳକ ସହିତ ଯୌନସଙ୍ଗମ କରିବା ଦେଖାଯାଏ । ଏହି ସମାଜର ବାଳିକାମାନଙ୍କର ପ୍ରାୟ ଦଶବର୍ଷ ବୟସରେ ପ୍ରଥମ

ରଜଃସ୍ରାବ ଦେଖାଦିଏ । ଯେଉଁ ବାଳିକା ସହିତ ଯେଉଁ ବାଳକର ବିବାହ ନିର୍ବନ୍ଧ ହୋଇଥାଏ ନିର୍ଦ୍ଦିଷ୍ଟ ଦିନଠାରୁ ସେମାନଙ୍କ ମଧ୍ୟରେ ଯୌନସଙ୍ଗମ କରିବାରେ କାହାର ଆପତ୍ତି ରହେ ନାହିଁ । ଏହି ସମାଜମାନଙ୍କରେ ବାଳିକାର ରଜଃସ୍ରାବ ଆରମ୍ଭ ହେଲେ ବାଳକ ସହିତ ବିବାହ କରିଦିଅନ୍ତି ।

ଯୌନସଙ୍ଗମ ବା ହସ୍ତମୈଥୁନ ଯୋଗୁଁ କମ ବୟସରୁ ଯୌନ ଉତ୍ତେଜନା ଓ ପ୍ରବୃତ୍ତି ବୃଦ୍ଧି ପାଏ ।

ସଭ୍ୟ ସମାଜରେ ବାଳକ ଓ ବାଳିକାମାନେ ଶୀଳତା ଯେପରି କିଛି ଜାଣନ୍ତି ନାହିଁ ସେହିପରି ଆଦିବାସୀ ସମାଜରେ ଶୀଳତା ପ୍ରତି ବିଶେଷ ଲକ୍ଷ୍ୟ ଦିଆଯାଏ ନାହିଁ । ଯୌନବିତ୍ ଷ୍ଟେନଡଲ (Stendhal) କହିଛନ୍ତି ଯେ ଲଜ୍ଜା ଓ ଶୀଳତା ସଭ୍ୟଯୁଗର ମନୁଷ୍ୟସମାଜକୁ ଅବଦାନ ଓ ତଦ୍ଦ୍ୱାରା ରହେ ଭବିଷ୍ୟତ ଜୀବନର ସୁଖ । ସଭ୍ୟତା ଓ ଶିକ୍ଷାରୁ ଲଜ୍ଜାର ଆରମ୍ଭ ଏବଂ ଯୌବନର ଆରମ୍ଭରେ ଏହି ସ୍ୱଭାବ ବୃଦ୍ଧିହୁଏ । ପ୍ରଥମେ ବାଳକବାଳିକାମାନେ କେତେକ ବିଷୟ ବା ଶରୀରର କେତେକ ଅଂଶ ବା କେତେକ ଶାରୀରିକ କ୍ରିୟା ଅନ୍ୟମାନଙ୍କଠାରୁ ଲୁଚାଇ ବା ଘୋଡ଼ାଇ ରଖିବା ଉଚିତ । ଏହି ବିଷୟଗୁଡ଼ିକ ଅଚିହ୍ନା ଲୋକଙ୍କୁ ପ୍ରକାଶ କରିବା ଉଚିତ ନୁହେ । ବାଳକମାନେ ଏହିପରି କଥାର ମର୍ମ ପ୍ରଥମେ ବୁଝି ନ ପାରିଲେ ମଧ୍ୟ ପିତାମାତାଙ୍କ କଥାକୁ ମାନି କାର୍ଯ୍ୟ କରନ୍ତି । ପ୍ରଥମେ କେତେଦିନ ପର୍ଯ୍ୟନ୍ତ ଏହିପରି ନିୟମର ପ୍ରତିବୋଧ କରନ୍ତି ଏବଂ ତାହାର କାରଣ ବୁଝିବାକୁ ଇଚ୍ଛା କରନ୍ତି ; କିନ୍ତୁ ଅଭ୍ୟାସବଶତଃ କାର୍ଯ୍ୟ କରୁଥିବା ଯୋଗୁଁ ବୟସରେ ବୃଦ୍ଧି ପାଇ ବଡ଼ ହେବାବେଳକୁ ତାହା ପୂରାପୂରି ଅଭ୍ୟାସରେ ପରିଣତ ହୋଇଯାଇଥାଏ ଯାହା କି ଜୀବନସାରା ରହିଯାଏ । ଅଭ୍ୟାସର ମାତ୍ରା ବୃଦ୍ଧି ହୋଇ ସଭ୍ୟଜଗତରେ ବେଶଭୂଷା ପ୍ରଭୃତିର ଆକାର ଧାରଣ କରେ ।

ଲଜ୍ଜା ଓ ଶୀଳତା ସମାଜର ମାନଦଣ୍ଡ ଉପରେ ନିର୍ଭର କରେ । ଅଙ୍ଗର ଆବରଣ ଓ ବେଶଭୂଷାରେ ଲଜ୍ଜା ଓ ଶୀଳତାର ପ୍ରଭାବ ରହେ । କିନ୍ତୁ ସମାଜର ଶିକ୍ଷା ଓ ସଭ୍ୟତା ଉପରେ ନିର୍ଭର କରେ ଲଜ୍ଜା ଓ ଶୀଳତାର ମାତ୍ରା ଓ ପ୍ରକାର । ଯୌନବିତ୍ ମଣ୍ଟିଗାଜା( Montegassa)

ଲେଖିଛନ୍ତି ଯେ ସୁଆଁଗୋ (Suango) ନିଗ୍ରୋ ସମାଜର ନାରୀମାନେ ବିଦେଶୀମାନଙ୍କୁ ଦେଖିଲେ ହାତରେ ଗୁହ୍ୟକୁ ଆବୃତ କରିଦେଇଥାନ୍ତି । ସେମାନେ ଗାଧୋଇବାବେଳେ ବିଦେଶୀମାନେ ଆସିବାର ଦେଖିଲେ ନ ଆସିବା ପାଇଁ ପାଟିକରିଥାନ୍ତି । କିନ୍ତୁ ସେହି ଅବସ୍ଥାରେ ନିଜ ସମାଜର କୌଣସି ପୁରୁଷ ଆସିଲେ ଏହିପରି ପାଟି କରି ନ ଥାନ୍ତି ।

ଲିଭିଙ୍ଗଷ୍ଟୋନ ଲେଖିଥିଲେ ଯେ ବେଲୋଣ୍ଡା (Balonda) ସମାଜର ରାଣୀ ତାହାଙ୍କ ସହିତ ଦେଖା କରିବାକୁ ଆସିଲାବେଳେ ସେ ନଗ୍ନ ଶରୀରରେ ଆସି ପହଞ୍ଚିଥିଲେ । କିନ୍ତୁ ରାଣୀଙ୍କର ଗ୍ରୀବାରେ ଲାଲରଙ୍ଗ ମଖାଯାଇଥିଲା ଓ ବେକରେ ସେ ଅଳଙ୍କାର ପିନ୍ଧିଥିଲେ । ସେହି ସମାଜର ଅନ୍ୟାନ୍ୟ ନାରୀମାନେ ଲଙ୍ଗଳା ରହୁଥିଲେ । ବିଦେଶୀ ରମଣୀମାନଙ୍କ ପୋଷାକ ଲଜ୍ଜା ନିବାରଣ ନିମନ୍ତେ ନ ପିନ୍ଧି ସେମାନେ ନିଜକୁ ସଜେଇବାପାଇଁ ପିନ୍ଧିଥିଲେ । ଲିଭିଙ୍ଗଷ୍ଟୋନ ଆଫ୍ରିକାରେ ଜଣେ ଆଦିବାସୀ ନିଗ୍ରୋ ପୁରୁଷକୁ ଶ୍ଳୀଳତାର ଶିକ୍ଷାଦେବା ନିମନ୍ତେ ପିନ୍ଧିବାକୁ କହିବାରୁ ସେ କିଛି ବୁଝି ନ ପାରି ଲିଭିଙ୍ଗଷ୍ଟୋନଙ୍କ କଥା ମାନିବାକୁ ଯାଇ ଶରୀରରେ ଲୁଗା ପିନ୍ଧିବା ବଦଳରେ ମୁଣ୍ଡରେ ଟୋପି ଓ ଗୋଡ଼ରେ ଜୋତା କେବଳ ବ୍ୟବହାର କରିଥିଲା । ତଥାପି ଆଫ୍ରିକାରେ ଆଜି କେତେକ ଆଦିବାସୀ ସମାଜରେ ଲଜ୍ଜାର ପ୍ରଭାବ ଏତେ ବେଶୀ ଯେ ରୋଗ ହୋଇଗଲେ ମଧ୍ୟ ପୁରୁଷମାନେ ନିଜର ଲିଙ୍ଗ ଓ ନାରୀମାନେ ନିଜର ସ୍ତନ ଡାକ୍ତରକୁ ମଧ୍ୟ ପରୀକ୍ଷା କରିବା ନିମନ୍ତେ ଦେଖାଇ ନ ଥାନ୍ତି ।

ମଧ୍ୟ-ଆଫ୍ରିକାର ମୁଷ୍ଗୋ (Musgo)ର ନାରୀମାନେ ନିତମ୍ବକୁ ଭଲଭାବେ ଘୋଡ଼ାଇଲାବେଳେ ଆଗ ପାଖଟି ଖୋଲା ଛାଡ଼ି ଦେଇଥାନ୍ତି । ବଙ୍ଗିଜ (Bonge:e)ର ନାରୀମାନେ ଘାସ ବା ପତ୍ର ଅଣ୍ଟାରେ ବାନ୍ଧି ଲଜ୍ଜା ନିବାରଣ କରିଥାନ୍ତି । କିନ୍ତୁ ଏହି ସମାଜର ପିଲାମାନେ ମାତୃସ୍ତନ୍ୟ ଛାଡ଼ିବା ଦିନଠାରୁ ବାପା-ମା'ଙ୍କ ଠାରୁ ଅଲଗା ହୋଇ ଶୁଅନ୍ତି ଏବଂ ବଡ଼ ପିଲାଙ୍କର ଶୋଇବା ପାଇଁ ଅଲଗା କୁଡ଼ିଆ ରହେ । ମୁମ୍ବଟୋ (Mumbutto)ର ନାରୀମାନେ ପ୍ରାୟ ଲଙ୍ଗଳା ରହନ୍ତି କହିଲେ ଚଳେ । ସେମାନେ କେବଳ ହାତପାପୁଲି ଆକାର ଚଟର ବା ବଳ୍କଳରେ

ଲଜ୍ଜା ନିବାରଣ କରିଥାଆନ୍ତି । ଏହି ସମାଜରେ ନାରୀମାନଙ୍କ ବ୍ୟଭିଚାରର ସୀମା ରହେ ନାହିଁ ।

ବେଣ୍ଡାସ-ପେଜିସ (Bendas-Pezis)ର ନାରୀମାନେ ଉଲଗ୍ନ ରହନ୍ତି । ଲିଭିଙ୍ଗଷ୍ଟୋନ ଦୁଇଟି ବାଳିକାର ଶରୀରରେ ଲୁଗାର ଆବରଣ ଲଗାଇଦେବା ଫଳରେ ସେମାନଙ୍କର ଲଜ୍ଜା ଆରମ୍ଭ ହୋଇଯାଇଥିଲା । ତଉଦହନ ବେଳକୁ ସେ ଦୁହିଁଙ୍କର ଶଯ୍ୟନଗୃହକୁ କେହି ଆସିବାର ଦେଖିଲେ ସେମାନେ ନିଜ ଗୁଡିକୁ ଘୋଡ଼ାଇବା ଆରମ୍ଭ କରିଥିଲେ । ଏନଙ୍କାଇଟଦ୍ୱୀପ (Anchorite Islands)ର ନାରୀମାନେ ଭଲଭାବେ ପିନ୍ଧି ଲଜ୍ଜାନିବାରଣ କରିଥାନ୍ତି । କିନ୍ତୁ ପୁରୁଷମାନେ ସରୁ ବକଳ ଖଣ୍ଡେ ଜଙ୍ଘ ସନ୍ଧିରେ ପୂରାଇ ଅଣ୍ଟାକୁ ବାନ୍ଧିଦିଅନ୍ତି । ଏହା ଫଳରେ ପୁରୁଷ-ଲିଙ୍ଗ ସାମାନ୍ୟ ଘୋଡ଼ିହୋଇ ରହେ । ଏହି ସମାଜର ନାରୀମାନେ ବହୁତ ବ୍ୟଭିଚାର କରିଥାନ୍ତି ।

ନିଉ ହାନୋଭର (New Hanover)ରେ ଅବିବାହିତା ଯୁବତୀମାନେ ଲଙ୍ଗଳା ହୋଇ ରହନ୍ତି । ଏକରକମ ଅଣ୍ଟା ଆବରଣରୁ ନାରୀ ବିଧବା କି ବିବାହିତା ତାହା ଜଣାପଡେ । ପୁରୁଷମାନେ ହାତ ସାହାଯ୍ୟରେ ଲଜ୍ଜାନିବାରଣ କରିଥାନ୍ତି । ପେରଗୁଏରେ ମଧ୍ୟ ଅବିବାହିତା ବାଳିକା ବା ଯୁବତୀମାନେ ଲଙ୍ଗଳା ରହନ୍ତି ।

ଚୀନାର ବାଳିକା ବା ଯୁବତୀମାନେ ନିଜର ପାଦ ଅନ୍ୟକୁ ଦେଖାଇବାକୁ ଖୁବ୍ ଲଜ୍ଜା ଅନୁଭବ କରନ୍ତି । ମଫସଲ ବାଳିକା ବା ଯୁବତୀମାନଙ୍କଠାରେ ସହରର ବାଳିକା ବା ଯୁବତୀମାନଙ୍କ ଅପେକ୍ଷା ଲଜ୍ଜାର ମାତ୍ରା କମ୍ ଦେଖାଯାଏ । ବାସଗୃହର ଅସୁବିଧା, ପଶୁପକ୍ଷିମାନଙ୍କର ଯୌନ ଜୀବନର ଦୃଶ୍ୟ, ବାଳକ ଓ ବାଳିକାମାନଙ୍କ ମଧ୍ୟରେ ଘରେ ଓ ବାହାରେ ଅଗାଧ ମିଳାମିଶା ଏହାର କାରଣ ବୋଲି କହନ୍ତି ।

ଚୀନଦେଶରେ ବାଲ୍ୟକାଳରୁ ବାଳିକାମାନଙ୍କୁ ବାଳକମାନଙ୍କଠାରୁ ଅଲଗା ରହିବା ନିମନ୍ତେ ଶିକ୍ଷା ଦିଆଯାଏ । ପୁରୁଷ ଓ ନାରୀ ଏକାଠି ଗୋଟିଏ ବିଛଣାରେ ବସିବା, କିମ୍ବା ଏକାଠି ଗୋଟିଏ ସ୍ଥାନରେ ଉଭୟଙ୍କର ଲୁଗାପଟା ରଖିବା ବା ଏକାଠି ଗୋଟିଏ ସ୍ଥାନରେ

ଗାଧୋଇବା ବା ଜଣେ ଅପରକୁ ସ୍ପର୍ଶ କରି ହାତରୁ ହାତକୁ ଜିନିଷ ଦେବା ନିଷେଧ । ଏପରି କି ଯୁବତୀ ପକ୍ଷେ ନିଜର ସ୍ୱାମୀ ଓ ଭାଇଠାରୁ ମଧ୍ୟ ସାମାନ୍ୟ ଦୂରରେ ରହିବା ନିମନ୍ତେ କୁହାଯାଏ ।

ଜାପାନ ସମାଜର ନର-ନାରୀ ଏକାଠି ରାସ୍ତା ମଧ୍ୟରେ ଲଙ୍ଗଳା ହୋଇ ଗାଧୋଇଥାଆନ୍ତି । ନାରୀମାନେ ରାସ୍ତା ମଧ୍ୟରେ ଲଙ୍ଗଳା ହୋଇ ଗାଧୋଇବାବେଳେ ସେହି ରାସ୍ତା ଦେଇ ଯିବାଆସିବା ଲୋକ ସହିତ ଥଟ୍ଟା ମଧ୍ୟ କରିଥାନ୍ତି ।

ଜାପାନରେ ପୁରୁଷ ଓ ନାରୀ ଲଙ୍ଗଳା ହୋଇ ଏକାଠି ଗାଧୋଉ ଥାଆନ୍ତି । ସେଥିରେ ସେମାନଙ୍କୁ ଲଜ୍ଜା ଲାଗେ ନାହିଁ । କିନ୍ତୁ ଶୀଳତା ଦୃଷ୍ଟିରୁ ଅଙ୍ଗର ସୌନ୍ଦର୍ଯ୍ୟକୁ ଘୋଡ଼ାଇ ରଖିବା ପାଇଁ ଢିଲା ଜାମା ବ୍ୟବହାର କରିଥାନ୍ତି । ପାଶ୍ଚାତ୍ୟ ଦେଶରେ ପୁରୁଷ ଓ ନାରୀ ଲଙ୍ଗଳା ହୋଇ ଏକାଠି ଗାଧୋଇବା ପ୍ରଥାକୁ ଶୀଳତା ଦୃଷ୍ଟିରୁ ଘୃଣା କଲେ ମଧ୍ୟ ଶରୀରରେ ସୌନ୍ଦର୍ଯ୍ୟ ବା ଅଙ୍ଗର ସୌନ୍ଦର୍ଯ୍ୟ ବୃଦ୍ଧି କରି ଦେଖାଇବା ନିମନ୍ତେ ଓ ସେଥିରେ ବକ୍ଷର ସୌନ୍ଦର୍ଯ୍ୟ ଦେଖାଇବା ନିମନ୍ତେ ମଧ୍ୟ ନାରୀମାନେ ଭିଡ଼ ବା ଚିପାଜାମା ବ୍ୟବହାର କରିଥାଆନ୍ତି ।

ଅନେକ ଆଦିବାସୀ ସମାଜରେ ପୁରୁଷମାନେ ଲିଙ୍ଗର ମଣିକୁ ଧାତୁ ତିଆରି ଖୋଳ କିମ୍ବା ମଣିଚର୍ମକୁ ଟାଣି ବାହାରେ ବାନ୍ଧିଦେବା ପ୍ରଥା ପ୍ରଚଳନ ଥିଲା । ଯୌନଉତ୍ତେଜନା କମାଇବା ନିମନ୍ତେ ସେମାନେ ଏହିପରି କରୁଥିଲେ ।

ଏଡ୍‌ମିରାଲଟି ଦ୍ୱୀପର ଆଦିବାସୀ ପୁରୁଷମାନେ ବକଳ ନ ପିନ୍ଧିଥିବାବେଳେ ଶାମୁକାର ଖୋଳଟିଏ ଲିଙ୍ଗ ଉପରେ ଲଗାଇ ଦେଉ-ଥିଲେ । ଶାମୁକାର ମଝିଭାଗଟି ଗୋଲାକାରରେ କଟାଯାଇଥିବାରୁ ପୁରୁଷମାନେ ସହଜରେ ଏହାକୁ ଲିଙ୍ଗ ଉପରେ ପିନ୍ଧିପାରୁଥିଲେ । ଅନେକ ସମୟରେ ଏହି ଶାମୁକାଗୁଡ଼ିକ ଚିତ୍ରିତ ହେଉଥିଲା । ଡର୍-ଗିନିର ଉତ୍ତର ଉପକୂଳ ଅଞ୍ଚଳର ଆଦିବାସୀମାନେ ଲିଙ୍ଗରେ ଗୋଟିଏ ଖୋଳ ବା ଖୋପ ବ୍ୟବହାର କରିଥାନ୍ତି । ଅନେକ ସମୟରେ ସେମାନଙ୍କ ଶରୀରରେ ଏହି ଖୋପଟି ଛଡ଼ା ଅନ୍ୟ କୌଣସି ଆବରଣ ନ ଥାଏ । ଖୋପଟି ସାଧାରଣତଃ

ବାଉଁଶରୁ ତିଆରି ହୋଇଥାଏ । ବ୍ରାଜିଲର ଆଦିବାସୀମାନେ ଲିଙ୍ଗର ମଣିଚର୍ମକୁ ଟାଣି ଟାଣି ଲମ୍ବା କରିଥାନ୍ତି । ଫିଲିପାଇନର ଆଦିବାସୀମାନେ ଲିଙ୍ଗରେ କପଡ଼ା ବା କଦଳୀପତ୍ର ଦେଇ ବାନ୍ଧନ୍ତି । ତାପରେ ଦେଢ଼ ଫୁଟ ଠାରୁ ଦୁଇଫୁଟ ଲମ୍ବା ଓ ଛ' ଇଞ୍ଚଠାରୁ ଆଠ ଇଞ୍ଚ ଚୌଡ଼ାର ବକଳ ବା ପତରରେ ବୁଣାହୋଇଥିବା ପଟି ଅଣ୍ଟା ଦଉଡ଼ିରୁ ଝୁଲି ଲିଙ୍ଗ ଉପରେ ଘୋଡ଼ାଇ ରହେ ।

ଦକ୍ଷିଣପୂର୍ବ ଆଫ୍ରିକାର ଆଦିବାସୀମାନେ ଲିଙ୍ଗରେ କପା ବା ଘାସ ଗୁଡ଼େଇ ତା ଉପରେ ଘାସରୁ ତିଆରି ହୋଇଥିବା ଖୋପ ଲଗାନ୍ତି । ନିଉଜିଲ୍ୟାଣ୍ଡର ଆଦିବାସୀମାନେ ଲିଙ୍ଗର ମଣିଚର୍ମକୁ ବାହାରକୁ ଟାଣି ସୂତାରେ ବାନ୍ଧି ଦିଅନ୍ତି ଯାହା ଫଳରେ ଲିଙ୍ଗର ମଣି ପଦାକୁ ଦିଶେ ନାହିଁ ।

ଦକ୍ଷିଣ ଆଫ୍ରିକାର ଆଦିବାସୀମାନେ ଚମଡ଼ା ବା ଅନ୍ୟ କୌଣସି ଜିନିଷରେ ତିଆରି ଗୋଟିଏ ଖୋପ ମଣିବନ୍ଧକୁ ଘୋଡ଼ାଇ ବ୍ୟବହାର କରନ୍ତି । ଏହି ଖୋପଗୁଡ଼ିକ କାଠ ବା ଘାସରୁ ତିଆରି ହୋଇଥାଏ । ବ୍ରାଜିଲର ଆଦିବାସୀମାନେ ମଧ୍ୟ ମଣିବନ୍ଧ ପର୍ଯ୍ୟନ୍ତ ଘୋଡ଼ାଇବା ନିମନ୍ତେ ଖୋପ ବ୍ୟବହାର କରିଥାନ୍ତି । ଏସ୍କିମୋ ଜାତିର ନାରୀ ଓ ପୁରୁଷ ଏକାଠି ଲଙ୍ଗଳା ହୋଇ ଗାଧୋଇଥାନ୍ତି । ନାରୀମାନଙ୍କୁ ଲଙ୍ଗଳା ଦେଖିଲେ ଉତ୍ତେଜନା ବଢ଼ିବା ଆଶଂକାରେ ପୁରୁଷମାନେ ମଣିଚର୍ମକୁ ବାହାରକୁ ଟାଣି ତାହାକୁ ସୂତାରେ ବାନ୍ଧି ଦେଇଥାନ୍ତି ।



୨୭ --

# ବିଭିନ୍ନ ସମାଜରେ ସତୀତ୍ୱର ଧାରଣା

ପ୍ରାଚୀନ ବେବିଲୋନିଆରେ ପ୍ରତ୍ୟେକ ନାରୀ ଜୀବନରେ ଥରେ ଭେନସ (Venus) ଦେବୀଙ୍କ ମନ୍ଦିରକୁ ଯାଇ ମନ୍ଦିରପ୍ରାଙ୍ଗଣରେ ଅଚିହ୍ନା ଲୋକ ସହିତ ରତି କରିବାର ପ୍ରଥା ଥିଲା । ଧନୀ ମହିଳାମାନେ ଆବୃତ ଗାଡ଼ିରେ ବସି ମନ୍ଦିରକୁ ଯାଇ ମନ୍ଦିରପ୍ରାଙ୍ଗଣରେ ଧାଡ଼ି ଧାଡ଼ି ହୋଇ ମୁଣ୍ଡରେ ଫୁଲମାଳଟିଏ ଗୁଡ଼ାଇ ବସୁଥିଲେ । ଏହିମାନଙ୍କୁ ଦେଖିବା ଓ ବାଛିବା ନିମନ୍ତେ ବହୁତ ପୁରୁଷ ଯିବାଆସିବା କରୁଥିଲେ । ଯେଉଁ ନାରୀ ଏଥିନିମନ୍ତେ ଥରେ ମନ୍ଦିର ପ୍ରାଙ୍ଗଣରେ ପ୍ରବେଶ କରୁଥିଲା ସେ କୌଣସି ପୁରୁଷ ସହିତ ରତି ନ କରିବାଯାଏ ସେଠାରୁ ଫେରୁ ନ ଥିଲା । ଦେଖିବା ପରେ ଯେଉଁ ନାରୀ ପ୍ରତି ଯେଉଁ ପୁରୁଷ ଆକୃଷ୍ଟ ହେଉଥିଲା ସେ ନାରୀ ଉପରକୁ ରୁପା ମୁଦ୍ରାଟିଏ ଫିଙ୍ଗି ଦେଉଥିଲା ଏବଂ 'ଦେବୀ ତୁମର ମଙ୍ଗଳ କରନ୍ତୁ' କହି ରତି କରିବା ନିମନ୍ତେ ତାହାକୁ ସଙ୍ଗରେ ଧରି ଚାଲିଯାଉଥିଲା । ରୁପା ମୁଦ୍ରାର ମୂଲ୍ୟ ଯାହାହେଲେ ସୁଦ୍ଧା ତାହା ନାରୀ-ପକ୍ଷେ ଅଗ୍ରାହ୍ୟ କରିବା କଥା ବିରୁଦ୍ଧ ଥିଲା । ଯେଉଁ ପୁରୁଷ ପ୍ରଥମେ ରୁପାମୁଦ୍ରା ଦେଉଥିଲା ତାହା ସହିତ ବିନା ଆପତ୍ତିରେ ନାରୀ ଚାଲିଯାଉ-ଥିଲା ଏବଂ ଏହା ଦ୍ୱାରା ସେ ଭେନସ ଦେବୀଙ୍କୁ ସନ୍ତୋଷ କରେ ବୋଲି ବିଶ୍ୱାସ କରୁଥିଲା । କାର୍ଯ୍ୟ ଶେଷ କରି ମନ୍ଦିରରୁ ଗୃହକୁ ଫେରିଲା ପରେ ଯେତେ ମୂଲ୍ୟର ଉପହାର ପାଇଲେ ସୁଦ୍ଧା ଅନ୍ୟ ପୁରୁଷ ସହିତ ରତି କରିବା ନିମନ୍ତେ ରାଜି ହେଉ ନ ଥିଲା । ଯେହେତୁ ଯେଉଁ ରମଣୀମାନଙ୍କର ଶାରୀରିକ ଗଠନ ଓ ଚେହେରା ଦେଖିବାକୁ ସୁନ୍ଦର ଥିଲା ସେମାନେ ନିଜ ଗୃହକୁ ଶୀଘ୍ର ଫେରିପାରୁଥିଲେ । କିନ୍ତୁ ଯେଉଁ ରମଣୀମାନେ ଅସୁନ୍ଦର ଓ କଦାକାର ସେମାନଙ୍କୁ ମନ୍ଦିର ପ୍ରାଙ୍ଗଣରେ ଅନେକ ଦିନ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ହେଉଥିଲା । ଏପରି କି କେତେକ ରମଣୀମାନଙ୍କୁ ତିନି ଚାରିବର୍ଷ ପର୍ଯ୍ୟନ୍ତ ଦେବୀଙ୍କ ମନ୍ଦିର ପ୍ରାଙ୍ଗଣରେ ଅପେକ୍ଷା କରିବାକୁ

ହେଉଥିଲା । ଏହିପରି ଗୋଟିଏ ପ୍ରଥା ସାଇପ୍ରେସ (Cypres) ଦ୍ୱୀପରେ ମଧ୍ୟ ଦେଖାଯାଏ ।

କୋରିଆ ରାଜ୍ୟରେ ବିବାହିତା ନାରୀ ନିଜର ସ୍ୱାମୀକୁ ବାଦ ଦେଇ ଓ ଅବିବାହିତା ନାରୀ ଯେ କୌଣସି ପୁରୁଷର ଶରୀର ସ୍ପର୍ଶ କରିବା ମାତ୍ରେ ପାପୀ ବୋଲି ଦଣ୍ଡିତ ହେଉଥିଲେ । ଏହିପରି ସ୍ପର୍ଶ କରିଥିବା କେତେକ ନାରୀ ମୃତ୍ୟୁଦଣ୍ଡ ଭୋଗିଥିଲେ । ବନ୍ଧୁବାନ୍ଧବ ବା ସାଙ୍ଗସାଥୀ ଘରର ନାରୀମାନଙ୍କ ସ୍ୱାସ୍ଥ୍ୟ ପ୍ରଭୃତି ସମ୍ବନ୍ଧରେ କେଯ କୌଣସି ପ୍ରଶ୍ନ ପଚାରିବା ନିଷେଧ ।

କୁକ୍ (Cook) ଲେଖିଛନ୍ତି ଯେ ପଲିନେସିଆର (Polynesia) ସମାଜରେ ପୁରୁଷମାନେ ନିଜର ବିବାହିତା ସ୍ତ୍ରୀକୁ ଧାର ଦେବାର ପ୍ରଥା ଅଛି । ଏହି ଦେଶରେ ସର୍ବସାଧାରଣଙ୍କ ପ୍ରବେଶ ଜାଗାରେ ନାରୀ ସହିତ ରତିକ୍ରିୟା କରିବା ଗୋଟିଏ ସାଧାରଣ ବା ମାମୁଲି କଥା । ସେଠାର ପୁରୁଷମାନଙ୍କ ମତରେ ନାରୀମାନେ କେବଳ ଯୌନତୃପ୍ତିର ସୁବିଧା ନିମନ୍ତେ ଉଦ୍ଦିଷ୍ଟ । ସେହେତୁ ପୁରୁଷର ଯୌନଇଚ୍ଛା ହେବାମାତ୍ରେ ସେ ପାଇଯିବା ଦରକାର ।

ଏସ୍କିମୋ ସମାଜରେ ନାରୀ ଓ ପୁରୁଷମାନେ ଲଙ୍ଗଳା ଓ ଲଗାଲଗି ହୋଇ ଶିଲ ଚମଡ଼ା ଭିତରେ ଏକାଠି ଶୁଅନ୍ତି । କୌଣସି ଅତିଥି ବ୍ୟକ୍ତି ଘରେ ପହଞ୍ଚି ରାତିରେ ରହିବାକୁ ଇଚ୍ଛାକଲେ ସମସ୍ତେ ଲଙ୍ଗଳା ହୋଇ ଗୋଟିଏ ଶିଲ (seal) ଚମଡ଼ା ଭିତରେ ଏକାଠି ଶୋଇ-ପଡ଼ନ୍ତି । ଅତିଥି ବ୍ୟକ୍ତି କିଛି ପଇସା ଦେଲେ ଘରର ସ୍ୱାମୀ ଆତିଥ୍ୟ ଦେଖାଇବା ପାଇଁ ତାହା ପାଖରେ ନିଜର ଯୁବତୀ ଝିଅକୁ ଶୁଆଇ ଦେଇଥାଏ । ଅତିଥି ବ୍ୟକ୍ତିର ସାମନାରେ ବା ନିଜ ପୁଅଝିଅଙ୍କ ସାମନାରେ ବାପାମା ରତି କରିବାକୁ କୁଣ୍ଠାବୋଧ କରନ୍ତି ନାହିଁ ।

ବାସୁତୋଷ (Basutos) ସମାଜରେ ଅନ୍ୟ ପୁରୁଷ ସହିତ ରତି କରି ଯୁବତୀର ଗର୍ଭସଂଚ୍ଚାର ହେଲେ ପୁରୁଷକୁ ଜରିମାନା ଦେବାକୁ ହୁଏ । ଯୁବତୀର ଗର୍ଭସଂଚ୍ଚାର ହେଲେ କେତେକ ସମାଜରେ ପୁରୁଷକୁ ଜରିମାନା ସ୍ୱରୂପ ଦୁଇଟି ଛେଳି ଦେବାକୁ ପଡ଼େ ଓ ଆଉ କେତେକ

ସ୍ଥାନରେ ସାତୋଟି ଗାଈ ପର୍ଯ୍ୟନ୍ତ ଜରିମାନା ଦେବାକୁ ହୁଏ । ଏହି ସମାଜରେ ରଜସ୍ୱଳା ହୁଅବେଳେ ନାରୀ ଅନେକ ସମୟରେ ପୁରୁଷଙ୍କୁ କହେ —'ମତେ ଖରାପ କରନାହିଁ । ମୋର ଗର୍ଭସଞ୍ଚାର କର ନାହିଁ ।' ଯେତେ-ଦିନ ପର୍ଯ୍ୟନ୍ତ ଗର୍ଭସଂଞ୍ଚାର ହୁଏ ନାହିଁ ସେତେଦିନ ପର୍ଯ୍ୟନ୍ତ ପୁରୁଷକୁ ଜରିମାନା ଦେବାକୁ ପଡେ ନାହିଁ କିମ୍ବା ନାରୀକୁ ବ୍ୟଭିଚାରିଣୀ ବୋଲି ଧରାଯାଏ ନାହିଁ । ବାଳକ ଓ ବାଳିକା କିମ୍ବା କିଶୋର ଓ କିଶୋରୀ-ମାନଙ୍କ ରତିକ୍ରିୟାକୁ ଖେଳ ସ୍ୱରୂପ ବିଚାର କରି ସମାଜର ବୃଦ୍ଧାମାନେ ଦେଖିଥାନ୍ତି ।

ଏସ୍କିମୋ, ଆଫ୍ରିକା, ସାଇବେରିଆ, ରୁଷିଆ ପ୍ରଭୃତି ଦେଶର କେତେକ ଆଦିବାସୀ ସମାଜରେ ଗୋଟିଏ ରୀତି ଅଛି ଯେ କୌଣସି ଅତିଥି ଘରେ ପହଞ୍ଚିଲେ ଗୃହକର୍ତ୍ତା ନିଜର କୁଡ଼ିଆଟି ଅତିଥିର ସୁବିଧା ଓ ବ୍ୟବହାର ନିମନ୍ତେ ଛାଡ଼ିଦିଏ । କୁଡ଼ିଆ ସହିତ ସ୍ତ୍ରୀ ଓ ଝିଅମାନେ ମଧ୍ୟ ଅତିଥିର ସୁବିଧା ଓ ବ୍ୟବହାର ନିମନ୍ତେ ରହନ୍ତି । ଅତିଥି ଯଦି ଏହି ବ୍ୟବସ୍ଥାକୁ ମନା କରେ ତାହାହେଲେ ଗୃହକର୍ତ୍ତା ନିଜକୁ ଅପମାନିତ ମନେ କରେ ।

ଗ୍ରେଟ ବ୍ରିଟେନର ପୋର୍ଟଲେଣ୍ଡ ସହରରେ ଅବିବାହିତ ଯୁବତୀ-ମାନେ ଯୁବକ ସହିତ ପ୍ରେମ କରିଥାନ୍ତି । ଯୁବତୀର ଯଦି ଗର୍ଭସଂଞ୍ଚାର ହୁଏ ତାହାହେଲେ ଯୁବକ ତାହାକୁ ବିବାହ କରିବା ପାଇଁ ବାଧ୍ୟ ହୁଏ । ଯୁବତୀର ଗର୍ଭସଂଞ୍ଚାର ହେବା ପୂର୍ବରୁ ଯୁବକ ତାହାକୁ ଛାଡ଼ିଦେଇ ଚାଲିଯାଇପାରେ ।

ନାରୀର ସତୀତ୍ୱ ନେଇ ଉପରେ ବର୍ଣ୍ଣିତ ଅବସ୍ଥା ପୃଥିବୀର କେତେକ ସମାଜରେ ଚାଲିଥିଲାବେଳେ ପୃଥିବୀର ଅନ୍ୟ କେତେକ ସମାଜରେ ପ୍ରାଚୀନକାଳରୁ ନାରୀର ସତୀତ୍ୱ ଉପରେ ଜୋର ଦିଆଯାଉ-ଥିଲା । ନାରୀ ନିଜର ସତୀତ୍ୱ ରକ୍ଷା ନ କଲେ ସେଥି ନିମନ୍ତେ ତାହାକୁ ଦଣ୍ଡ ଭୋଗିବାକୁ ପଡୁଥିଲା ।

ପ୍ରାଚୀନକାଳରେ କୁମେଇ ଓ କାମ୍ପେନିଆ (Cumae and Companía) ଦେଶରେ କୌଣସି ବିବାହିତା ନାରୀ ବ୍ୟଭିଚାର କଲେ

ତାହାକୁ ଜନସାଧାରଣଙ୍କ ସାମନାରେ ଲଙ୍ଗଳା କରି ଉପହାସ କରୁଥିଲେ ଏବଂ ସେହି ନଗ୍ନ ଅବସ୍ଥାରେ ତାହାକୁ ଗୋଟିଏ ଗଧ ଉପରେ ବସାଇ ସହରରେ ବୁଲାଉଥିଲେ । ଲେଟିଅମ (Latium) ରେ ବ୍ୟଭିଚାର କରିଥିବା ନାରୀକୁ ପ୍ରାଚୀନକାଳରେ ଦଣ୍ଡ ସ୍ୱରୂପ ଜୋରଜବରଦସ୍ତ କରି ଗୋଟିଏ ଗଧ ସହିତ ତାର ରତିକ୍ରିୟା କରାଉଥିଲେ ବୋଲି ଶୁଣାଯାଏ । ବ୍ୟଭିଚାର କରିଥିବା ନାରୀକୁ ଲଙ୍ଗଳା କରି ଗଧ ଉପରେ ବସାଇ ସହରରେ ବୁଲାଇବା ୫ମ ଶତାବ୍ଦୀ ପର୍ଯ୍ୟନ୍ତ ଚାଲୁଥିବା ଗ୍ରୀସର ଦାର୍ଶନିକ ସକ୍ରେଟିସଙ୍କ ଲେଖାରୁ ପ୍ରମାଣ ମିଳେ ।

ମାର୍କୋପୋଲୋ ଲେଖିଛନ୍ତି ଯେ ତିବ୍ବତର ପୂର୍ବଭାଗରେ କୌଣସି ବିଦେଶୀ ବ୍ୟକ୍ତି ସ୍ତ୍ରୀ, ଝିଅ ବା ଭଉଣୀ ସହିତ ରତି କଲେ ଗୃହସ୍ୱାମୀ ନିଜର ମର୍ଯ୍ୟାଦା ହାନିହେବ ବୋଲି ମନେ ନ କରି ଶୁଭସୂଚକ ବୋଲି ମନେ କରେ । ଆଉ କେତେକ ଏହିପରି ବିଦେଶୀଙ୍କ ସହିତ ସମ୍ବନ୍ଧଦ୍ୱାରା ଉଚ୍ଚମନା ଶିଶୁ ସନ୍ତାନ ଜନ୍ମ ହୁଏ ବୋଲି ବିଚାର କରନ୍ତି ।

ଏହା ପରେ ମଧ୍ୟଯୁଗରେ ବ୍ୟଭିଚାର କରିଥିବା ନାରୀକୁ ଦଣ୍ଡ-ଦେବା ନିମନ୍ତେ ଗୋଟିଏ ଖୁଣ୍ଟରେ ବାନ୍ଧି ଖୁଣ୍ଟ ଉପରେ ଗୋଟିଏ ଗଧର ମୁଣ୍ଡ ଝୁଲାଇ ଦେଉଥିଲେ । ନାରୀ ସେହି ଅବସ୍ଥାରେ ଥିବା ସମୟରେ ତା ସହିତ ରତିକ୍ରିୟା କରିବା ନିମନ୍ତେ ଯେକୌଣସି ପୁରୁଷର ସ୍ୱାଧୀନତା ରହିଥିଲା । କାଳକ୍ରମେ ଯୁଗର ପରିବର୍ତ୍ତନ ଏବଂ ଶିକ୍ଷା ଓ ସଭ୍ୟତାର ପ୍ରସାର ଯୋଗୁଁ ଏହିପରି ଦଣ୍ଡ ଲୋପ ପାଇ ଛାଡ଼ପତ୍ର ଦେବାର ବ୍ୟବସ୍ଥା ହେଲା ।

ପୃଥିବୀର କେତେକ ଆଦିବାସୀ ତଥା ସଭ୍ୟ ସମାଜରେ ପ୍ରାଚୀନ କାଳରୁ ବିଶ୍ୱାସ ଅଛି ଯେ ନାରୀର ନଗ୍ନ ଅବସ୍ଥାରେ ତାହାଠାରେ କେତେକ ଧର୍ମସମ୍ବନ୍ଧୀୟ ଓ ଅନ୍ୟାନ୍ୟ ରକମ ଅଦ୍ଭୁତ ଶକ୍ତି ରହେ । ଗୋପସେଭିକ (Gopcevic) ଙ୍କୁ ଉଦ୍ଧାର କରି ଯୌନବିଜ୍ଞ ହେବଲକ ଇଲିସ ତାହାଙ୍କ ବହିରେ ଲେଖିଛନ୍ତି ଯେ—ପୂର୍ବେ ଆଲବେନିଆ ଓ ମାନଟେନେ ଗ୍ରିଅନସଙ୍କ ମଧ୍ୟରେ ଅନେକ ଦିନ ପର୍ଯ୍ୟନ୍ତ ଯୁଦ୍ଧ ଚାଲିଥିଲା । ଯୁଦ୍ଧରେ ବିଜୟ ହାସଲ କରିବା ଆଶାରେ ଶୁଭସୂଚକ ବୋଲି ଯୁଦ୍ଧକ୍ଷେତ୍ରରେ ନାରୀମାନେ ପ୍ରଥମ ଧାଡ଼ିରେ ଠିଆ ହେଉଥିଲେ ଓ ସୈନ୍ୟମାନେ ସେମାନଙ୍କ ପଛକୁ

ରହୁଥିଲେ । ଯୁଦ୍ଧ ଆରମ୍ଭ ହେବାବେଳେ ନାରୀମାନେ ପିନ୍ଧିଥିବା ଲୁଗା ଉପରକୁ ଟେକି ସେମାନଙ୍କ ନଗ୍ନ ଶରୀରକୁ ଶତ୍ରୁପକ୍ଷର ସୈନ୍ୟମାନଙ୍କୁ ପ୍ରଥମେ ଦେଖାଇ ଦେଉଥିଲେ । ଯୁଦ୍ଧରେ ଶତ୍ରୁପକ୍ଷ ନାରୀମାନଙ୍କୁ ଲଜ୍ଜି-ଦେବା ଯୋଗୁଁ ଓ ଅଲବେନିଆ ଦେଶ ବରାବର ଯୁଦ୍ଧରେ ପରାସ୍ତ ହେବା ଯୋଗୁଁ ଏହି ପ୍ରଥାର ପ୍ରଚଳନ ଲୋପ ପାଇଗଲା । ଭାରତରେ ମଧ୍ୟ ଏହିପରି କିଛି ବିଶ୍ୱାସ କେତେକ ସ୍ଥାନରେ ରହିଥିବା ଜଣାଯାଏ । ୧୯୬୩ ମସିହାରେ ଠିକ ସମୟରେ ବର୍ଷା ନ ହେବା ଯୋଗୁଁ ବାରାଣସୀ ଅଞ୍ଚଳରେ ନାରୀମାନେ ବର୍ଷାହେବା ନିମନ୍ତେ ଅନ୍ଧାର ରାତିରେ ଲଙ୍ଗଳା ହୋଇ ଲଣ୍ଠନ ଧରି କେତେକ ସମୟ ପାଇଁ ବିଲରେ ହଳ ବୁଲାଇ କୃଷି କରିଥିଲେ । ବାଳିକା ବା ଯୁବତୀ ନଗ୍ନ ଶରୀରରେ ଜଳୁଥିବା ଦୀପକୁ ମାଟିରେ ପୋତି-ଦେଲେ ବର୍ଷା ହୁଏ ନାହିଁ ବୋଲି କହନ୍ତି । ଭାରତର ତାନ୍ତ୍ରିକମାନେ ନାରୀର ନଗ୍ନ ଶରୀରକୁ ସିଦ୍ଧି ନିମନ୍ତେ ପୂଜା କରୁଥିବା ଜଣାଯାଏ ।

## ସତୀତ୍ୱ

ଯେପରି ଲଜ୍ଜା ଓ ଶୀଳତା ସମାଜର ଶିକ୍ଷା ଓ ସଭ୍ୟତାର ମାନଦଣ୍ଡ ଉପରେ ନିର୍ଭର କରେ ସେହିପରି ନାରୀର ସତୀତ୍ୱ ମଧ୍ୟ ସମାଜର ମାନଦଣ୍ଡ ଉପରେ ନିର୍ଭର କରେ, ଯାହା ଉପରେ ଶିକ୍ଷା ଓ ସଭ୍ୟତାର ପ୍ରଭାବ ରହେ ।

ୟୁରୋପ ପ୍ରଭୃତି ଦେଶମାନଙ୍କରେ ଯେଉଁ ରକମର ରୀତିନୀତି ଚଳେ ସେଥିରୁ ବୁଝାଯାଏ ଯେ ବିବାହିତ ଜୀବନରେ ନାରୀ ଅନ୍ୟ ପୁରୁଷ ପ୍ରତି ଆସକ୍ତ ନ ରହିବା ବା ଯୌନସମ୍ପର୍କ ନ ରଖିବାକୁ ସତୀତ୍ୱ ବୋଲି ଭାବିଥାନ୍ତି । କିନ୍ତୁ ଭାରତୀୟମାନଙ୍କ ମତରେ ବିବାହ କରିଥିବା ପୁରୁଷର ଅବସ୍ଥା ଯାହାହେଲେ ମଧ୍ୟ ବିଶ୍ୱର ନ କରି କାୟ-ମନୋ-ବାକ୍ୟରେ ତାହାକୁ ହିଁ ଜୀବନସାରା ପ୍ରେମ ଓ ସ୍ନେହ କରି ରହିବାକୁ ନାରୀର ସତୀତ୍ୱ କହନ୍ତି । ସତୀ ନାରୀର ଜୀବନରେ ଦ୍ୱିତୀୟ ବିବାହ ନାହିଁ କିମ୍ବା ସେ ସ୍ୱାମୀକୁ ଭୁଲରେ ଘୃଣା କରେ ନାହିଁ । ଏପରି ସ୍ଥଳରେ ଅନ୍ୟ ପୁରୁଷକୁ ପ୍ରେମ କରିବାର ପ୍ରଶ୍ନ ଉଠେ ନାହିଁ । ଏହିପରି ନାରୀକୁ ପତିବ୍ରତା ନାରୀ ବୋଲି ମଧ୍ୟ କହିଥାନ୍ତି । ଜଣେ ଅନ୍ୟର ମାନସିକ ଚିନ୍ତା ଦେଖିବା

କଷ୍ଟକର । ସେତେକୁ କାୟା-ଶୁଦ୍ଧି ଉପରେ ସମାଜ ଜୋର୍ ଦିଏ । ଏତଦ୍ୱ୍ୟ ସମାଜ ନାରୀର ସତୀତ୍ୱ ଉପରେ ଜୋର୍ ଦେଇଥାଏ । ବାତ୍ସାୟନ କହିଛନ୍ତି ଯେ ନିମ୍ନଲିଖିତ ଶ୍ରେଣୀର ନାରୀମାନେ ସହଜରେ ଅନ୍ୟ ପୁରୁଷର ଆୟତ୍ତକୁ ଆସିଯିବା ଯୋଗୁଁ ନିଜର ସତୀତ୍ୱ ସାଧାରଣତଃ ରଖିପାରନ୍ତି ନାହିଁ—

(୧) ଯେଉଁ ନାରୀ ଘରର ଦ୍ୱାରମୁହଁରେ ବା ଘରର ଛାତଉପରେ ଠିଆହୋଇ ରାସ୍ତାର ପୁରୁଷମାନଙ୍କୁ ଚାହିଁ ପ୍ରେମାକର୍ଷଣର ଅଙ୍ଗଭଙ୍ଗୀ ଦେଖାନ୍ତି କିମ୍ବା ଏକାକୀ ଥିବା ଅବସ୍ଥାରେ ଅସଂଯତ ବେଶରେ ଶରୀରକୁ ଦେଖାଇଥାନ୍ତି । (୨) ଯେଉଁ ନାରୀ ପୁରୁଷମାନଙ୍କ ସହିତ ବେଶୀ ସାଙ୍ଗସାଥୀ ହେବାକୁ ଚେଷ୍ଟାକରେ ବା ପୁରୁଷମାନଙ୍କ ସହିତ ବେଶୀ ଗପ ଭୋଜିରେ ଅଂଶଗ୍ରହଣ କରେ ବା ଯାହାର ଏହିପରି ଭୋଜିଉତ୍ସବରେ ବେଶୀ ଝୁଙ୍କ ରହେ । (୩) ଅଚିହ୍ନା ଲୋକ ଚାହିଁବାବେଳେ ଯେଉଁ ନାରୀ ବୁଲି ବୁଲି ଚାହେଁ । (୪) ବିନା କାରଣରେ ଯାହାର ସ୍ୱାମୀ ଦ୍ୱିତୀୟ ବିବାହ କରେ । (୫) ଯେଉଁ ନାରୀ ନିଜର ସ୍ୱାମୀକୁ ଘୃଣାକରେ ବା ଯେ ସ୍ୱାମୀଦ୍ୱାରା ଘୃଣିତ । (୬) ଯେଉଁ ନାରୀ ସନ୍ତାନ ପ୍ରସବ କରିପାରେ ନାହିଁ । (୭) ଯାହାର ସ୍ୱାମୀ ବିଦେଶରେ ବେଶି ଦିନ ରହେ ବା ଯେଉଁ ନାରୀ ବାପଘରେ ବେଶି ଦିନ ରହେ ବା ସ୍ୱାମୀଠାରୁ ବେଶି ଦିନ ଦୂରରେ ରହୁଥାଏ । (୮) ଯେଉଁ ନାରୀର ପିଲାମାନେ ଶୀଘ୍ର ମରିଯାଉଥାନ୍ତି । (୯) କଳାକାରର ସ୍ତ୍ରୀ । (୧୦) ବାଲ୍ୟ ବିଧବା । (୧୧) ଯେଉଁ ନାରୀ ଗରିବ ହୋଇ ପୁରୁଷଠାରୁ ମୂଲ୍ୟବାନ୍ ଉପହାର ଗ୍ରହଣ କରେ । (୧୨) ନୀଚ ଓ କୁଣ୍ଠିତ ସ୍ୱଭାବ ପୁରୁଷର ଗର୍ବିତା ସ୍ତ୍ରୀ । (୧୩) କଳାଶାସ୍ତ୍ରନିପୁଣା ସ୍ତ୍ରୀଯାହାର ସ୍ୱାମୀ ମାତ୍ରା ପ୍ରକୃତିର । (୧୪) ଯେଉଁ ପୁରୁଷ ସହିତ ବିବାହ କରିବା ନାରୀର ପ୍ରଥମେ ଉଦ୍ଦେଶ୍ୟ ଥିଲା, କିନ୍ତୁ ଅବସ୍ଥାଚକ୍ରରେ ପଡ଼ି ଅନ୍ୟକୁ ବିବାହ କରିବାକୁ ବାଧ୍ୟ ହେଲା । (୧୫) ଯେଉଁ ନାରୀ ଅନ୍ୟ ପୁରୁଷର ସ୍ୱଭାବ, ଚତୁରପଣିଆ ଓ ମର୍ଯ୍ୟାଦା ସହିତ ନିଜକୁ ସମାନ ମନେକରେ । (୧୬) ଅତ୍ୟଧିକ ଯୌନ ଉତ୍ତେଜନା ଭୋଗୁଥିବା ନାରୀମାନେ । (୧୭) ଯେଉଁ ନାରୀ ଅତି ସାମାନ୍ୟ କାରଣରେ ସ୍ୱାମୀଠାରୁ ବରାବର ଭର୍ତ୍ସନା

ପାଉଥାଏ । (୧୮) ଯାହାର ସ୍ୱଭାବ ଓ ଚରିତ୍ର ନେଇ ସ୍ୱାମୀ ଅତିଶୟ ସତର୍କ ରହେ । (୧୯) ଯାହାର ସ୍ୱାମୀ ମନ୍ଦ ପ୍ରକୃତିର ବା ମନ୍ଦ ସ୍ୱଭାବର । (୨୦) ଯାହାର ସ୍ୱାମୀ ନିଷ୍ଠୁର, କ୍ଲୀବ, ଅଳସୁଆ, ଭୀରୁ, ଅସୁନ୍ଦର, ବାମନ, କୁଜା, କେମ୍ପା, ରୁଗ୍ଣ ବା ବୃଦ୍ଧ । (୨୧) ଗ୍ରାମର ଖଳନାରୀ ଘରକୁ ଆସିଲେ । (୨୨) ଯାହାର ସ୍ୱାମୀର ଦେହରୁ ଦୁର୍ଗନ୍ଧ ବାହାରେ ।

ଅବସ୍ଥା ଓ ସ୍ୱଭାବରୁ ଇଚ୍ଛା ଜାତ ହୁଏ । ପୁରୁଷମାନଙ୍କ ସଂସ୍ପର୍ଶରେ ବାରବାର ଆସିବା ଯୋଗୁଁ ଅନ୍ୟ ପୁରୁଷ ପ୍ରତି ଆକୃଷ୍ଟ ହୋଇ ବିବାହିତା ନାରୀର ମଧ୍ୟ ପଦସ୍ଖଳନ ହେବାର ସମ୍ଭାବନା ରହେ ଏବଂ ଅବିବାହିତା ଯୁବତୀମାନଙ୍କ ପକ୍ଷେ ଅନୁଭୂତି ଅଭାବରୁ ଏହା ଆହୁରି ସହଜ ହୋଇ ପଡ଼େ । ଫଳରେ ଅବସ୍ଥାଚକ୍ରରେ ପଡ଼ି ଅନେକ ନାରୀ ନିଜର ସତୀତ୍ୱ ହରାଇଥାନ୍ତି ।

ଆଜିକାଲି ୟୁରୋପୀୟ ଦେଶମାନଙ୍କରେ ସ୍ୱାମୀ ଓ ସ୍ତ୍ରୀ ମଧ୍ୟ ସାମାନ୍ୟ ମନୋମାଳିନ୍ୟ ଘଟିଲେ ଛାଡ଼ପତ୍ର ଦେବାର ଆଇନ ଅଛି । ସ୍ତ୍ରୀ ଅନ୍ୟ ପୁରୁଷ ସହିତ ଆସକ୍ତ ହେଲେ କିମ୍ବା ଯୌନସମ୍ପର୍କ ରଖିବାର ଜଣାଗଲେ ମଧ୍ୟ ଛାଡ଼ପତ୍ର ଦିଆଯାଉଛି । ବିବାହିତା ନାରୀ ସ୍ୱାମୀଠାରୁ ଛାଡ଼ପତ୍ର ପାଇବା ପରେ ପୁଣି ବିବାହ କରିବାର ସୁବିଧା ପାଉଛି ।

ସତୀର ଶକ୍ତି ନେଇ ବିଭିନ୍ନ ଦେଶରେ ଭିନ୍ନ ଭିନ୍ନ ରକମର ବିଶ୍ୱାସ ରହିଛି । ସତୀନାରୀକୁ ଅଗ୍ନି ସ୍ପର୍ଶ ନ କରିବା ଓ କହିବା କଥା ପ୍ରକୃତରେ ଫଳିଯାଏ ବୋଲି ରାମାୟଣ ଓ ମହାଭାରତରେ ବର୍ଣ୍ଣିତ ଅଛି ଓ ଭାରତୀୟ ଲୋକମାନେ ମଧ୍ୟ ବିଶ୍ୱାସ କରିଥାନ୍ତି । ରୋମର ଭେସ୍ତା (Vesta) ମନ୍ଦିରର ପୂଜାରିଣୀମାନେ ତିରିଶ ବର୍ଷ ପର୍ଯ୍ୟନ୍ତ ପୂଜାରିଣୀ ହୋଇ ରହିଥିବା ଯାଏ ବାଧ୍ୟହୋଇ ଅବିବାହିତ ରହୁଥିଲେ । ତିରିଶି ବର୍ଷ ପରେ ପୂଜାରୀ କାମ ଛାଡ଼ିଦେଇ କେତେକ ବିବାହ କରୁଥିଲେ । ଏଥିଯୋଗୁ ପୂଜାରିଣୀମାନଙ୍କ ଅଦ୍ଭୁତ ଶକ୍ତି ରହେ ବୋଲି କହନ୍ତି । ପୂର୍ବେ ଥରେ ଏହି ମନ୍ଦିରର ଦୀପ ଲିଭିଯାଇଥିଲା । ସେହେତୁ ସେହି ସମୟର ପୂଜାରିଣୀକୁ ଯୌନ ଅପରାଧ କରିଥିବା ଦୋଷ ଦିଆଯାଇଥିଲା । ଏଥିରେ ପୂଜାରିଣୀ ରାଗିଯାଇ ପିନ୍ଧିଥିବା ଲୁଗାର କାନି ଚିରି ମନ୍ଦିର ପ୍ରାଙ୍ଗଣରେ ଫିଙ୍ଗି-

ଦେବା ମାନେ ତାହା ଜଳ ଉଠିଥିଲା ବୋଲି ସେହି ଦେଶରେ କମ୍ବଦନ୍ତୀ ରହିଛି । ଏହିପରି ଆଉ ଜଣେ ପୂଜାରଣୀ ସ୍ୱଗିଯାଇ ନିଜର ସତୀତ୍ୱର ପରୀକ୍ଷା ଦେବାକୁ ଯାଇ ଗୃଳ୍ପଣିରେ ନଦୀରୁ ପାଣି ବୋହିନେଇ ମନ୍ଦିରରେ ପ୍ରବେଶ କରିଥିଲେ ବୋଲି ମଧ୍ୟ କୁହାଯାଏ । ଏହିପରି ବିଶ୍ୱାସ ପ୍ରାଚ୍ୟ ଓ ପାଶ୍ଚାତ୍ୟର ଅନେକ ଦେଶରେ ଦେଖିବାକୁ ମିଳେ । ଆଫ୍ରିକାର କଙ୍ଗୋ ଦେଶର ଆଦିବାସୀ ସମାଜର ଦଳପତିମାନେ ନିଜର ସେବାରେ ଜଣେ ଅକ୍ଷତ ଯୁବତୀଙ୍କୁ ରଖିଥାନ୍ତି । ଏହି ଯୁବତୀର ରହିବା ଘରେ ବା ସେ ରହିବା ଘର ନିକଟର ଗଛରେ ସେମାନଙ୍କର ଯୁଦ୍ଧରେ ବ୍ୟବହାର ହେବା ଅସ୍ତ୍ରଶସ୍ତ୍ର ଅର୍ଥାତ୍ ଧନୁଶର, ଖଣ୍ଡା, ବର୍ଚ୍ଛା, ଢାଲ ପ୍ରଭୃତି ଓହଳାଇ ରଖନ୍ତି । ଏହାଦ୍ୱାରା ସେହି ଅସ୍ତ୍ରଶସ୍ତ୍ରର ଶକ୍ତି ବା ତାହାକୁ ଯୁଦ୍ଧରେ ବ୍ୟବହାର କରୁଥିବା ବ୍ୟକ୍ତିର ଶକ୍ତି ବୃଦ୍ଧି ପାଏ ବୋଲି ଦଳପତିମାନଙ୍କର ବିଶ୍ୱାସ । ଯୁବତୀର ସତୀତ୍ୱ ନଷ୍ଟ ହେବା ଜାଣିପାରିଲେ ସେହି ଅସ୍ତ୍ରଶସ୍ତ୍ରଗୁଡ଼ିକୁ ନଷ୍ଟ କରିଦିଅନ୍ତି ଯେହେତୁ ସେଗୁଡ଼ିକୁ ବ୍ୟବହାର କରିବା ବ୍ୟକ୍ତିର ଶକ୍ତି ହ୍ରାସ ପାଏ ବୋଲି ସେମାନଙ୍କର ବିଶ୍ୱାସ । ପେରେଗୁଏ (Paraguay) ଦେଶରେ ସତୀ ବା ଅକ୍ଷତ ଯୁବତୀଙ୍କ ଠାରୁ ଅଣାଯିବା ଔଷଧ ଅଧିକ ଗୁଣ ଦିଏ ବୋଲି ବିଶ୍ୱାସ କରନ୍ତି । ରୋମ ଦେଶରେ ଅକ୍ଷତ ଯୁବତୀ-ମାନଙ୍କର ଯାଦୁଶକ୍ତି ରହେ ବୋଲି ବିଶ୍ୱାସ କରନ୍ତି ।



# ସ୍ଥାନେ ସ୍ଥାନେ ନାରୀର ସୌନ୍ଦର୍ଯ୍ୟ

ଯୌନବିତ୍ ପ୍ଲସ (Ploss) କହିଛନ୍ତି ଯେ ଜଳବାୟୁ, ଜୀବନଯାତ୍ରା ପ୍ରଣାଳୀ ଓ ନାରୀର ସମାଜରେ ସ୍ଥାନ ନେଇ ତାହାର ସୌନ୍ଦର୍ଯ୍ୟର ମାନଦଣ୍ଡ ସ୍ଥିର ହୋଇଥାଏ । କିନ୍ତୁ ଆଉ କେତେକ ଯୌନବିତ୍ କହନ୍ତି ଯେ ପ୍ରତ୍ୟେକ ଦେଶ ଓ ଜାତି ଉପରେ ସୌନ୍ଦର୍ଯ୍ୟର ମାନଦଣ୍ଡ ନିର୍ଭର କରେ ଏବଂ ଏହା ସମାଜରେ ପୁରୁଷାନୁକ୍ରମେ ଚଳି ଆସୁଥିବା ଅନୁଭୂତି ଉପରେ ନିର୍ଭର କରେ ।

ଆମେରିକାର ଉତ୍ତର ଭାରତୀୟ ସମାଜରେ ଚଉଡ଼ା ଓ ଚେପଟା ମୁହଁ, ଛୋଟ ଆଖି, ବଡ଼ ବଡ଼ ଗାଲର ହାଡ଼ ଓ ଗାଲ ଉପରେ ତିନି ବା ଚାରୋଟି କଳାଦାଗ, ନୀଚ କପାଳ, ବଡ଼ ଓଠ, ନାଭି ପର୍ଯ୍ୟନ୍ତ ଓହଳିଥିବା ସ୍ତନ ଓ ବଙ୍କା ନାକ ଥିବା ନାରୀ ସୁନ୍ଦର ବୋଲି ଭାବନ୍ତି ।

ଆଫ୍ରିକାର ହଟେନଟଟ୍ (Hottentot) ସମାଜରେ ଯେଉଁ ନାରୀମାନଙ୍କର ପିଠିଭାଗ ସାମାନ୍ୟ ପଦାକୁ ବାହାରି ରହେ ତାହାକୁ ଅଧିକ ସୁନ୍ଦର ବୋଲି ଭାବନ୍ତି । ହଟେନଟଟ୍ ନାରୀମାନଙ୍କୁ ଭିନ୍ନ ରକମ ଖାଦ୍ୟ ଦେଇ ସେମାନଙ୍କୁ ଏପରି ମୋଟୀ କରାଇଥାନ୍ତି ଯେ ସେମାନେ ଚଳପ୍ରଚଳ ହେବାକୁ ଅସୁବିଧା ହୁଏ । ଯେଉଁ ନାରୀ ଯେତିକି ମୋଟୀ ସେ ସେତିକି ସୁନ୍ଦର ବୋଲି ସେହି ସମାଜରେ ଭାବନ୍ତି । ସବୁଠାରୁ ଅଧିକ ମୋଟୀ ନାରୀମାନେ ରାଣୀ ଅର୍ଥାତ୍ ରାଜାର ସ୍ତ୍ରୀ ହେବା ପାଇଁ ଉପଯୁକ୍ତ ବୋଲି ଭାବନ୍ତି ।

ସାର ଏନଡ୍ରୁ ସ୍ମିଥ (Sir Andrew Smith) କହିଛନ୍ତି ଯେ ଥରେ ସେହି ସମାଜର ଜଣେ ପ୍ରଶଂସିତ ସୁନ୍ଦରୀ ରମଣୀକୁ ଦେଖିଥିଲେ । ସେହି ନାରୀର ପଛପଟଟି ଏତିକି ବୃଦ୍ଧି ହୋଇଯାଇଥିଲା ଯେ ସେ ସମତଳ ଭୂମିରେ ବସିବା ପରେ ଉଠିପାରି ନ ଥିଲା ।

ବରଟନ (Burton) ଲେଖିଛନ୍ତି ଯେ ସୋମାଲି (Somali) ର ନିଗ୍ରୋ ସମାଜରେ ଯୁବତୀମାନଙ୍କୁ ଧାଡ଼ିରେ ଠିଆକରି କନ୍ୟା ବଛାଯାଏ । ଯେଉଁ ଯୁବତୀର ପଛପଟ ପଦାକୁ ବାହାରି ରହେ ପୁରୁଷ ତାହାକୁ ବାଛି ବିବାହ କରେ ।

କେତେକ ସମାଜରେ ବାଳିକାମାନଙ୍କ ଗାଲରେ ଚିତା କୁଟାଇ ଦିଅନ୍ତି ବା କଳାଦାଗ କାଟିଦେଇଥାନ୍ତି । ବାଳିକାର ସୌନ୍ଦର୍ଯ୍ୟ ବୃଦ୍ଧି କରାଇବା ନିମନ୍ତେ ଏହା କରାଯାଇଥାଏ । ମାନବ ସମାଜରେ ଲକ୍ଷ୍ୟ କରାଯାଇପାରେ ଯେ ପୁରୁଷମାନଙ୍କ ସୌନ୍ଦର୍ଯ୍ୟର ଭାବନା ନେଇ ନାରୀମାନେ ଯେତେ କଷ୍ଟ ହେଲେ ମଧ୍ୟ ସହ୍ୟ କରି ସେମାନଙ୍କ ମତଗତ ଅନୁରୂପ ସୌନ୍ଦର୍ଯ୍ୟକୁ ନିଜ ଶରୀରରେ ଫୁଟାଇବାକୁ ଚେଷ୍ଟା କରିଥାନ୍ତି ।

କିର୍‌ଚ୍ଛୋଫ (Kirchoff) କହିଛନ୍ତି ଯେ ଏନୁ (Ainu) ର ପୁରୁଷମାନେ ନାରୀମାନଙ୍କଠାରେ ନିଶ ଦେଖିବାକୁ ଭାରି ପସନ୍ଦ କରନ୍ତି । ସେଥିପାଇଁ ଏ ସମାଜରେ ଝିଅମାନଙ୍କର ସୌନ୍ଦର୍ଯ୍ୟବୃଦ୍ଧି କରିବା ନିମନ୍ତେ ବାଳିକାମାନଙ୍କର ଉପର ଓଷ୍ଠର ନାକତଳେ କଳାଚିତା କୁଟାଇଥାନ୍ତି ।

ଜାପାନରେ ଚିତାକୁଟା ପ୍ରଥା ଆଇନଦ୍ୱାରା ନିବାରଣ କରିବା-ବେଳେ ସେଠାର ଅନେକ ମା କହିଲେ ଯେ ସେମାନଙ୍କ ଝିଅମାନେ ଆଉ ସୁବିଧାରେ ସ୍ୱାମୀ ପାଇପାରିବେ ନାହିଁ ।

ଆଫ୍ରିକାରେ ମୋଟୀ ନାରୀମାନଙ୍କୁ ଅଧିକ ସୁନ୍ଦରୀ ବୋଲି ଭାବନ୍ତି । ସେଥିପାଇଁ କେତେକ ନାରୀଙ୍କୁ ଭିନ୍ନ ରକମର ଖାଦ୍ୟ ଓ ଦୁଧ ଦିଆଯାଇ ମୋଟା କରାଯାଏ । କେତେକ ନାରୀ ଏପରି ମୋଟୀ ହୋଇଯାନ୍ତି ଯେ ସେମାନେ ଚଲବୁଲ କରିବାରେ ଅସୁବିଧା ହୁଏ । ଆଫ୍ରିକାର ଅନେକ ଆଦିବାସୀ ସମାଜରେ ମୋଟା ଓ ଚୌଡ଼ା ନିତମ୍ବକୁ ପସନ୍ଦ କରନ୍ତି ।

କେତେକ ସମାଜରେ ଶାରୀରିକ ସୌନ୍ଦର୍ଯ୍ୟ ନିମନ୍ତେ ସ୍ୱାଭାବିକ ବୃଦ୍ଧିକୁ କୃତ୍ରିମ ପ୍ରଣାଳୀରେ ବନ୍ଦ କରିଦିଆଯାଏ । ଛୋଟ ପାଦକୁ ସୁନ୍ଦର ବୋଲି ଚୀନର ନାରୀମାନେ ଜୋର କରି ପାଦକୁ ଛୋଟ କରିଥାନ୍ତି ।

କେତେକ ଆଦିବାସୀ ସମାଜରେ ମୁଣ୍ଡ ଚେପଟା ଦିଶିଲେ ସୁନ୍ଦର ବୋଲି ବାଲ୍ୟାବସ୍ଥାରେ ଅର୍ଥାତ୍ ୪ ବର୍ଷ ବୟସ ବେଳକୁ କପାଳ

ଉପରେ ଓ ମୁଣ୍ଡର ତଳ ଭାଗରେ କାଠ ପଟାଦେଇ ଦଉଡ଼ିରେ ଭିଡ଼ି-ଦିଅନ୍ତି ମୁଣ୍ଡକୁ ଚେପଟା କରିବା ପାଇଁ ।

ନାରୀମାନଙ୍କ ଶରୀରର ସୌନ୍ଦର୍ଯ୍ୟ ବୃଦ୍ଧି କରିବା ନିମନ୍ତେ ବାଳିକା ବା ଯୁବତୀ ଅବସ୍ଥାରେ ଚିତାକୁଟାଇବା ପ୍ରଥା ଅନେକ ସମାଜରେ ଦେଖାଯାଏ । ମୁହଁରେ ବା ଶରୀରରେ ଏହା କରାଯାଇଥାଏ । ମୁଣ୍ଡର ବାଳ ବିଭିନ୍ନ ଢଙ୍ଗରେ କୁଣ୍ଡାଇବା, ନାକ ଓ ଓଷ୍ଠରେ ବଳା ପିନ୍ଧିବା ପ୍ରଭୃତି ସୌନ୍ଦର୍ଯ୍ୟ ବୃଦ୍ଧି କରିବା ନିମନ୍ତେ କରାଯାଇଥାଏ ।

ଚୀନ ଓ ଜାପାନରେ ନାରୀର ସୌନ୍ଦର୍ଯ୍ୟରେ କୁଚ ଅପେକ୍ଷା ନିତମ୍ବ ବିଶେଷ ସ୍ଥାନ ପାଇଥାଏ । କୁଚ ଯୁଗଳ ଘନ ନ ହୋଇ ଶୁଖିଲା କିମ୍ବା ଲମ୍ବିଯାଇଥିଲେ ବିଶେଷ ଲକ୍ଷ୍ୟ କରାଯାଏ ନାହିଁ । କିନ୍ତୁ ନିତମ୍ବ ବଡ଼ ବା ଚଉଡ଼ା ହେଲେ ନାରୀକୁ ଅସୁନ୍ଦର ବୋଲି ମନେକରନ୍ତି । ସେହେତୁ ସେଠାର ଯୁବତୀମାନେ ପ୍ରତ୍ୟେକ ଦିନ ଉପରଓଳି ଖଣ୍ଡିଏ ଚଉଡ଼ା ଓ ମୋଟା ଲୁଗା ଅଣ୍ଟାରେ ଗୁଡ଼ାଇଦିଅନ୍ତି ନିତମ୍ବର ଚଉଡ଼ା କମାଇବା ପାଇଁ । ନାରୀର ଶ୍ଲେଟ ଓ ସୁଦୃଢ଼ ସ୍ତନକୁ ଜାପାନର ପୁରୁଷମାନେ ପସନ୍ଦ କରନ୍ତି ।

ସମାଜର ସୌନ୍ଦର୍ଯ୍ୟ-ମାନଦଣ୍ଡ ନେଇ ନାରୀମାନେ ସାଧାରଣତଃ ସେମାନଙ୍କ ଶାରୀରିକ ସୌନ୍ଦର୍ଯ୍ୟକୁ ଗଢ଼ିଥାନ୍ତି । ସମାଜରେ ସୌନ୍ଦର୍ଯ୍ୟର ମାନଦଣ୍ଡ ଅନେକ ସମୟରେ ବଦଳେ । ଏହି ବଦଳିବା ମୂଳରେ ରହେ ଉତ୍ତେଜନା କରିବା ଶକ୍ତିର ମାତ୍ରା ।

ଜର୍ମାନୀରେ ପାତଳୀ ନାରୀମାନଙ୍କୁ ପସନ୍ଦ କରାଯାଏ ବୋଲି ନାରୀମାନେ ବିଶେଷ ଦାମୀ ମଜା ଦିଅନ୍ତି ଓ ଭିଡ଼ ହେଉଥିବା ଲୁଗାପଟା ବ୍ୟବହାର କରିଥାନ୍ତି ଯେପରି ସେମାନେ ମୋଟୀ ହେଲପରି ପଦାକୁ ଦେଖାଯିବ ନାହିଁ ।

## ସ୍ଥାନେ ସ୍ଥାନେ ସ୍ତନର ସୌନ୍ଦର୍ଯ୍ୟ

ସ୍ତନର ସୌନ୍ଦର୍ଯ୍ୟ ନେଇ ଯୌନବିତ୍ Dr. Havelock Ellis ଲେଖିଛନ୍ତି—"ସଭ୍ୟ ଓ ଅସଭ୍ୟ ସମାଜରେ ସ୍ତନର ସୌନ୍ଦର୍ଯ୍ୟ ଉଚ୍ଚ ପ୍ରଶଂସିତ । ୧୮ଶ ଶତାବ୍ଦୀରେ ଯେଉଁ ନାରୀମାନଙ୍କର ସ୍ତନ ଶୁଖିଯାଏ

ସେମାନେ ମହମର କୃତ୍ରିମ ସ୍ତନ ଲଗାଉଥିଲେ । କେତେକ ଆଦିବାସୀ ସମାଜରେ ଏପରି ଗୀତ ଅଛି ଯାହାର ଅର୍ଥ ହୁଏ ଯେ ନାରୀର ସୌନ୍ଦର୍ଯ୍ୟ ତାହାର ଉନ୍ନତ ସ୍ତନରେ । ଆଉ କେତେକ ଆଦିବାସୀ ସମାଜରେ ଉନ୍ନତ ସ୍ତନକୁ ଅସୁନ୍ଦର ମନେକରି ଚେପ୍‌ଟା କରି ଦେଇଥାନ୍ତି । ବୁଲଗେରିଆରେ ମଧ୍ୟ ଉନ୍ନତ ସ୍ତନକୁ ଅସୁନ୍ଦର ବୋଲି ମନେ କରୁଥିଲେ । କିନ୍ତୁ ଏ ଯୁଗର ଶିକ୍ଷିତ ଓ ସଭ୍ୟ ସମାଜରେ ଏପରି କି ଅନେକ ଆଦିବାସୀ ସମାଜରେ ମଧ୍ୟ ଉନ୍ନତ ଓ ସୁଗଠିତ ସ୍ତନ ଆନନ୍ଦ ଦାୟକ ବୋଲି ମନେକରନ୍ତି ।

ଡାକ୍ତର ଓ୍ୟାଲ (O. A. Wall) ଲେଖିଛନ୍ତି--"About the breasts have clustered some of the sweetest memories and the purest practices of mankind." (ସ୍ତନରେ ଘେରି ବା ବେଢ଼ି ରହେ କେତେକ ମଧୁସ୍ମୃତି ଓ ମାନବ ସମାଜର ପ୍ରକୃତ ଅଭ୍ୟାସ ସମୂହ) ।

ପ୍ରତ୍ୟେକ ଦେଶ ଓ ଜାତିର ଶିଳ୍ପକର, ଲେଖକ ପ୍ରଭୃତି ଗଦ୍ୟ ଓ ପଦ୍ୟରେ ନାରୀ ସୌନ୍ଦର୍ଯ୍ୟର ବର୍ଣ୍ଣନା କରି ଆସିଛନ୍ତି ଓ ଆସୁଛନ୍ତି । ଏପରି କୌଣସି ଦେଶ ନାହିଁ ଯେଉଁଠାରେ ନାରୀ ସୌନ୍ଦର୍ଯ୍ୟ କେହି କେବେହେଲେ ବର୍ଣ୍ଣନା କରିନାହାନ୍ତି । ନାରୀ ସ୍ତନର ସୁନ୍ଦର ଗଠନରେ ତାହାର ଶାରୀରିକ ସୌନ୍ଦର୍ଯ୍ୟ ବୃଦ୍ଧିପାଏ ।

ହଜାର ହଜାର ବର୍ଷ ପୂର୍ବରୁ ନାରୀର ସୌନ୍ଦର୍ଯ୍ୟକୁ ବିଶେଷ ସ୍ଥାନ ଦିଆଯାଇଛି । ଭାରତୀୟ କୋକଶାସ୍ତ୍ର, ରତିରହସ୍ୟ, ବାତ୍ସାୟନଙ୍କ କାମସୂତ୍ରରେ ନାରୀର ସ୍ତନକୁ ପ୍ରାଧାନ୍ୟ ଦିଆଯାଇଛି । ଏପରି କି ସ୍ତନ ଦୁଇଟିକୁ ସୁଦୃଢ଼ ରଖିବା ନିମନ୍ତେ Rice water ସହିତ Antimony ମିଶାଇ ମାଲିସ କଲେ ସ୍ତନ ବର୍ଦ୍ଧିତ ହୁଏ ବୋଲି ଉକ୍ତ ପୋଥିମାନଙ୍କରେ କୁହାଯାଇଛି ।

ଜାତି ନେଇ ସ୍ତନର ଆକାର ଭିନ୍ନ ରହେ । ଆଫ୍ରିକା ଦେଶରେ ନାରୀମାନଙ୍କ ସ୍ତନ ମାଂସଳ, ନଳ ପରି ଲମ୍ବାଳିଆ ଓ ଶିଙ୍ଘମୁନ ପରି ସ୍ତନାଗ୍ର ବା ସ୍ତନମୁଣ୍ଡି । ଯୌବନାବସ୍ଥାରେ ସ୍ତନର ଆକାର ଓ ଗଠନ ସୁନ୍ଦର ଥିଲେ ମଧ୍ୟ ୩୦ ବର୍ଷ ବୟସବେଳକୁ ଅସୁନ୍ଦର ହୋଇଯାଏ ।

ନ୍ୟୁବା (Nuba) ସମାଜରେ ପୂର୍ବ ଲିବସ୍ଥାର ମେଂସା ଓ ଟିବୁ (Tibu) ପ୍ରଭୃତି ସମାଜରେ ନାରୀମାନଙ୍କ ଠାରେ ଏହିପରି ଦେଖଯାଏ । କିନ୍ତୁ ଲଆଁଗୋ (Loango) ଅଞ୍ଚଳର ନିଗ୍ରୋ ନାରୀମାନଙ୍କ ଠାରେ ଏହିପରି ଲମ୍ବାଳିଆ ସ୍ତନ ଦେଖାଯାଏ ନାହିଁ । ଏଠାରେ ଯୁବତୀମାନଙ୍କର ସ୍ତନ ଶକ୍ତ ଓ ସୁଦୃଢ଼ ଏବଂ ସ୍ତନମୂଳ ଉଚ୍ଚତାର ଅନୁପାତରେ ସରୁ ।

ଇଜିପ୍ଟ ଦେଶରେ ଯୁବତୀମାନଙ୍କର ସ୍ତନ ଡିମ୍ବାକୃତି ଓ ଦୃଢ଼ (Oval) । କିନ୍ତୁ ବୟସ ବୃଦ୍ଧି ହେଲେ ସ୍ତନ ଦୁଇଟି ଓହଳି ପଡ଼େ । ଆଫ୍ରିକା ଦେଶର ସୁଦାନ ରାଜ୍ୟର ଯୁବତୀମାନଙ୍କ ସ୍ତନ ଅର୍ଦ୍ଧଗୋଲାକୃତି, କୋମଳ ଓ ସୁଦୃଢ଼ ଏବଂ ସ୍ତନାଗ୍ର ବା ସ୍ତନମୁଣ୍ଡି ସ୍ଥୂଳ । ଝିଅମାନଙ୍କୁ ବେଶି ଦିନ ସ୍ତନ୍ୟଦାନ କରିବାରେ ସ୍ତନ ଶୁଖିଯାଇ ଶୀଘ୍ର ଓହଳିପଡ଼େ ।

ଦକ୍ଷିଣ ଆଫ୍ରିକାର ନାରୀମାନଙ୍କ ସ୍ତନ ସାଧାରଣତଃ ଆକାରରେ ବଡ଼ । ସେହେତୁ ସ୍ତନ ଦୁଇଟି ଶୀଘ୍ର ମୁଣା ପରି ଦେହରେ ଝୁଲି ରହେ ।

ଆଫ୍ରିକାର ହଟେନଟଟ (Hottentot) ରମଣୀମାନଙ୍କ ସ୍ତନ ୟୁରୋପୀୟ ରମଣୀମାନଙ୍କ ପରି । ସେଗୁଡ଼ିକ ସ୍ଥୂଳ ହେଲେ ମଧ୍ୟ ସୁଗଠିତ, ଉନ୍ନତ ଏବଂ ସ୍ତନାଗ୍ର ସୁସ୍ପଷ୍ଟ ରହେ ।

ପଲ୍ ରିଚର୍ଡ଼ (Paul Riechard) ଲେଖିଛନ୍ତି ଯେ ୱେନ୍ୟାମୱେଜି (Wanyamwagi) ସମାଜରେ ସାତବର୍ଷ ବୟସର ବାଳିକାମାନଙ୍କ ଗୁଡ଼ିରେ ସ୍ତନ ବୃଦ୍ଧି ହେବାର ଆରମ୍ଭ ହୁଏ । କିନ୍ତୁ ତେର ବର୍ଷ ବୟସବେଳକୁ ସ୍ତନ ଦୁଇଟି ଶୁଖି ଭିତରକୁ ପଶିଯାଏ ଓ ସ୍ତନମୂଳଟି ସରୁ ରହେ ।

ଓସିଟିସ (Osseties) ର ଓ ସିରକେସିଅନ (Circassians) ସମାଜରେ ସତୀତ୍ୱ ରକ୍ଷା ନିମନ୍ତେ ଦଶ ବା ବାର ବର୍ଷ ବୟସର ବାଳିକାମାନଙ୍କ ସ୍ତନ ଉପରେ ଓ ପିଠିପଟେ ଟାଣ କାଠପଟା ଧଇଯାଇ ଜୋରରେ ବନ୍ଧାଯାଏ ଓ ଶରୀରକୁ ଗୋଟିଏ ଚମଡ଼ାର ଆବରଣ ଲଗାଇ ସିଲେଇ କରାଯାଏ । ସେହେତୁ ଯୁବତୀମାନଙ୍କର ସ୍ତନ ଦୁଇଟି ଠିକ ଭାବେ ବୃଦ୍ଧି ହୁଏ ନାହିଁ ।

ବାଭେରିଆ, ଉତ୍ତର ଟାଇରୋଲ (Tyrol) ରେ ବାଳିକା ଯୌବନରେ ପଦାର୍ପଣ କରିବା ମାତ୍ରେ ଗୋଟିଏ କାଠର ବେଲ୍ଟ

(Girdle) ଗୁଡ଼ରେ ଏପରି ଜୋରରେ ବାନ୍ଧି ଦିଅନ୍ତି ଯେ ସ୍ତନ ଦୁଇଟି ଶେଷରେ ଗୁଡ଼ରେ ପଶିରହି କେବଳ ସ୍ତନମୁଣ୍ଡି ବା ସ୍ତନାଗ୍ର ଦୁଇଟି ବାହାରକୁ ଦିଶେ । ସ୍ତନ ପଦାକୁ ଦିଶିବା ଅସୁନ୍ଦର ବୋଲି ଏହିପରି କରିଥାନ୍ତି ।

ଅଷ୍ଟ୍ରିଆର ଡକ୍ଟର ହିରଟିଲ (Hyrtl) କହନ୍ତି ଯେ ଶ୍ୱେତାଙ୍ଗୀ ଓ ମଙ୍ଗୋଲ ଜାତୀୟ ନାରୀମାନଙ୍କର ସ୍ତନ ସାଧାରଣତଃ ଗୋଲାକାର ହୋଇ ସୁଦୃଢ଼ ରହେ । ୟୁରୋପୀୟ ନାରୀମାନଙ୍କ ପରି ଏସିଆ ମହାଦେଶର ନାରୀମାନଙ୍କ ସ୍ତନର ଗଠନ ସୁଦୃଢ଼ ଓ ସୁନ୍ଦର । କଳା ଓ ନିଗ୍ରୋ ଜାତୀୟ ନାରୀମାନଙ୍କ ସ୍ତନ ସମବୟସର ଅନ୍ୟ ଜାତିର ନାରୀମାନଙ୍କ ତୁଳନାରେ ଗୋଜିଆ ହୋଇ ଲମ୍ବି ଯାଏ ବା ଓହଳିପଡ଼େ । ନାରୀ ସ୍ତନର ଆକାର କେବଳ ଜାତି ନେଇ ନିର୍ଭର କରେ ନାହିଁ । ସାମାଜିକ ଅବସ୍ଥା ଯୋଗୁଁ ଯେଉଁ କୃତ୍ରିମ ପ୍ରଣାଳୀମାନ ବ୍ୟବହୃତ ହୁଏ, ସେଥିଉପରେ ମଧ୍ୟ ନିର୍ଭର କରେ । କେତେକ ସମାଜରେ ଶିଶୁକୁ ଦୁଧ ଖୁଆଇବାର ସୁବିଧା ନିମନ୍ତେ ଏହିପରି କରିଥାନ୍ତି ।

ମାଳୟ, ସିଂହଳର ବେଡ୍ଡା (Veddahs) ଏବଂ ଏଇନୁ (Ainu) ନାରୀମାନଙ୍କର ସ୍ତନ ଶଙ୍କାକୃତି (conical) ଓ ସୁଗଠିତ । ସୁମାତ୍ରା ଦ୍ୱୀପର ଏଚିନିଜ ଓ ସୁଲୁ (Achinese and Sulu) ପ୍ରଭୃତି ସମାଜର ନାରୀମାନଙ୍କ ସ୍ତନର ଆକାର ଅର୍ଦ୍ଧଗୋଲାକୃତି (hemispherical) । ଏସିଆର ନାରୀମାନଙ୍କ ସ୍ତନ ଯୌବନରେ ସୁନ୍ଦର ରହେ । ପ୍ରଥମ ପ୍ରସବ ଓ ସ୍ତନ୍ୟଦାନ ପରେ ପ୍ରାୟ ଓହଳିଯାଇ ସେଥିର ସୌନ୍ଦର୍ଯ୍ୟ ନଷ୍ଟ ହୁଏ ।

ଜାପାନୀ ନାରୀମାନଙ୍କର ସ୍ତନ ସୁଗଠିତ ଓ ମଧ୍ୟମ ଧରଣର । ସେହିପରି ଚୀନା ନାରୀମାନଙ୍କର ସ୍ତନ ଅର୍ଦ୍ଧଗୋଲାକୃତି । କିନ୍ତୁ ୨୫ ବର୍ଷ ବୟସ ବେଳକୁ ସ୍ତନରେ ଚର୍ବି ଜମିଯାଇ ଆକାରରେ ବଡ଼ ହୋଇଯାଏ ।

ଲାଓସ୍‌ର (Laos) ନାରୀମାନଙ୍କ ସ୍ତନ ଉନ୍ନତ ଓ ସୁନ୍ଦର । ବୟସର ବୃଦ୍ଧି ହୋଇ ଚର୍ବି ଜମିଗଲେ ମଧ୍ୟ ସ୍ତନ ଦୁଇଟି ବଡ଼ ଦିଶେ । କିନ୍ତୁ ଓହଳି ପଡ଼େନାହିଁ ।

ୟୁରୋପ ମହାଦେଶରେ ନାନା ରକମ ଆକୃତିର ସ୍ତନ ଦେଖିବାକୁ ମିଳେ । ଯଥା—ଶଙ୍ଖାକୃତି, କଟୋରାକୃତି (Bowl-shaped), ଅର୍ଦ୍ଧଗୋଲାକୃତି ଏବଂ ଲମ୍ବାଳିଆ । ସେମାନଙ୍କର କୋମଳତା ଓ ସୁଦୃଢ଼ତା ଶିଶୁକୁ ସ୍ତନ୍ୟଦାନ ଓ କର୍ମଧନ୍ଦା ଉପରେ ନିର୍ଭର କରେ । ଏପରି କି ସ୍ତନାଗ୍ରଗୁଡ଼ିକ ଆକାରରେ ଓ ରଙ୍ଗରେ ବିଭିନ୍ନ ରକମର ଦେଖାଯାଏ ।

ସାଇଲେସିଆ (Silesia) ଅଞ୍ଚଳରେ ସ୍ତନ ଚେପ୍‌ଟା ହୋଇ ବକ୍ଷରେ ମିଶିରହେ ଏବଂ ବର୍ଦ୍ଧିତ ହୋଇ ନ ଥାଏ । ବାଲ୍‌ଟିକ୍ (Baltic) ଉପକୂଳ ଅଞ୍ଚଳ, ରାଇନ ନଦୀର କୂଳ ଅଞ୍ଚଳ, ଭିଏନା ଓ ଅଷ୍ଟ୍ରିଆର ଯୁବତୀମାନଙ୍କ ସ୍ତନ ସୁନ୍ଦର ଭାବେ ଗଠିତ ଓ ବର୍ଦ୍ଧିତ ।

ସ୍ଲାଭ (Slavonic) ନାରୀମାନଙ୍କର ଟ୍ୟୁଟନ୍ ଜାତୀୟ (Tutonic) ନାରୀମାନଙ୍କ ଅପେକ୍ଷା ସ୍ତନ ଦୁଇଟି ଶୀଘ୍ର ବୃଦ୍ଧି ହୁଏ । କ୍ରୋରେସିଅନ (Croratian), ଡାଲମେସିଅନ (Dalmatian), ଯୁଗୋସ୍ଲାଭ (Yugaslav) ନାରୀମାନଙ୍କ ସ୍ତନ ସୁନ୍ଦର ଭାବେ ଗଠିତ ଓ ସୁଦୃଢ଼ । ବୁଲଗେରିଆ (Bulgaria) ଦେଶରେ ବଡ଼ ବଡ଼ ସ୍ତନକୁ ଅସୁନ୍ଦର ବୋଲି ଭାବନ୍ତି । ସେଠାର ଯୁବତୀମାନେ ଘରର ପ୍ରାଙ୍ଗଣ ବା ବାରଣ୍ଡାରେ ଝାଡ଼ୁ ଦେଲେ ସ୍ତନ ବଡ଼ ହୋଇଯାଏ ବୋଲି ବିଶ୍ୱାସ କରନ୍ତି । ଇସଥୋନିଆର ନାରୀମାନେ ଶାରୀରିକ ପରିଶ୍ରମ କରୁଥିବା ଯୋଗୁଁ ସେମାନଙ୍କ ସ୍ତନ ବର୍ଦ୍ଧିତ ନ ହୋଇ ଛାତିରେ ମିଶି ରହିଥାଏ । କ୍ରାଉସ (Krauss) କହୁଛନ୍ତି ଯେ ଦକ୍ଷିଣ ସ୍ଲାଭର କେତେକ ନାରୀଙ୍କ ସ୍ତନ ଏତେ ବଡ଼ ହୋଇଯାଏ ଯେ ସେମାନେ ତାହାକୁ କାନ୍ଧ ଉପରକୁ ଟେକି ଦେଇଥାନ୍ତି ।

ୟୁରୋପୀୟ ନାରୀମାନଙ୍କ ମଧ୍ୟରେ ପାରିସ ସହରର ନାରୀମାନଙ୍କ ସ୍ତନ ସୁନ୍ଦର ଓ ସୁଗଠିତ । ସେମାନଙ୍କ ସ୍ତନର ଆକାର ବହୁତ ବଡ଼ ନୁହେ କିମ୍ବା ଚେପ୍‌ଟା ନୁହେ । ପୋର୍ତ୍ତୁଗୀଜ ରମଣୀମାନଙ୍କ ସ୍ତନ ୟୁରୋପର ଅନ୍ୟାନ୍ୟ ଦେଶର ରମଣୀମାନଙ୍କ ତୁଳନାରେ ଭଲଭାବେ ବର୍ଦ୍ଧିତ ।

ଆମେରିକାର ରମଣୀମାନଙ୍କ ଜାତି ଅନୁଯାୟୀ ସେମାନଙ୍କ ସ୍ତନର ଗଠନ ରହେ । ଜଳବାୟୁ ପ୍ରଭୃତିର ପ୍ରଭାବ ଯୋଗୁଁ ସାମାନ୍ୟ

ପରିବର୍ତ୍ତିନ ହୋଇପାରେ; କିନ୍ତୁ ଜାତିଗତ ଆକାର ସେମାନଙ୍କ ଠାରେ ସ୍ପଷ୍ଟରୂପେ ଜଣାପଡ଼େ ।

ମେକ୍ସିକୋ, ଏସ୍କିମୋ, ଗାଏନା (Guiana) ନାରୀମାନଙ୍କ ସ୍ତନ ଶଙ୍ଖାକୃତି ।

ନାରୀବକ୍ଷର ସ୍ତନ ଦୁଇଟି ଏକାପରି ନ ଥିବା ଅର୍ଥାତ୍ ଗୋଟିଏ ବଡ଼ ଓ ଅନ୍ୟଟି ସାନ ଥିବା କେତେକ ସ୍ଥାନରେ ଦେଖାଯାଏ । ଆଫ୍ରିକାର ଆଦିବାସୀ ସମାଜମାନଙ୍କରେ, ସିଂହଳର ବେଡ୍ଡା (Veddas) ସମାଜରେ ଏହି ରକମ ଅନେକଙ୍କ ଠାରେ ଦେଖିବାକୁ ମିଳେ । ଭାରତରେ ମଧ୍ୟ ଏହିପରି ହେଉଥିବା ରତି ବା କାମଶାସ୍ତ୍ରମାନଙ୍କରୁ ସୂଚନା ମିଳେ । ୟୁରୋପର ପ୍ରତ୍ୟେକ ଦେଶରେ ମଧ୍ୟ ଏହି ରକମ ଦେଖିବାକୁ ମିଳେ ବୋଲି ୟୁରୋପୀୟ ଯୌନବିତ୍ମାନେ କହନ୍ତି । ଗୋଟିଏ ସ୍ତନରୁ ବରାବର ଶିଶୁକୁ ଦୁଧ ଖୁଆଇବା ଦ୍ୱାରା ସ୍ତନ ବଡ଼ସାନ ହୋଇଯାଏ ।

ଆଫ୍ରିକାର ବଗଣ୍ଡା (Baganda) ଆଦିବାସୀ ସମାଜରେ ନରମ ଓ ଝୁଲିପଡ଼ିଥିବା ସ୍ତନକୁ ବେଶି ପସନ୍ଦ କରନ୍ତି । ସେଥିହେତୁ ବାଳିକାମାନେ ଯୌବନର ଆରମ୍ଭରୁ ସ୍ତନକୁ ତଳକୁ ଝୁଲାଇ ବାନ୍ଧି-ଦେଇଥାନ୍ତି । ଦକ୍ଷିଣ ଆଫ୍ରିକାର ଆଦିବାସୀ ସମାଜରେ ବାଳିକାର ସ୍ତନରେ କେତେକ ରକମ ଚେରମୂଳ ଗୁଣ୍ଡ କରି ସେଥିରେ ଗୀଜ ମିଶାଇ ଘଷିଥାନ୍ତି । ସ୍ତନାଗ୍ରରେ ଏହା ଜୋରରେ ଘଷାଯାଇଥାଏ । ସ୍ତନମୂଳିକୁ ଟାଣି ତାହାକୁ ଖୋଟ ବା ଖୋଟ ପରି କୌଣସି ତନ୍ତୁରେ ବାନ୍ଧନ୍ତି । ବାସୁତୁ (Basuto) ଆଦିବାସୀ ସମାଜରେ ସନ୍ତାନ ପ୍ରସବ କରିବା ପୂର୍ବରୁ ନାରୀମାନେ ସ୍ତନକୁ ଦୈନନ୍ଦିନ ଟାଣନ୍ତି । ସ୍ତନ ଲମ୍ବା ହେଲେ ଶିଶୁକୁ ଦୁଧ ଖୁଆଇବା ପାଇଁ ସୁବିଧା ହେବ ବୋଲି ଏହିପରି କରିଥାନ୍ତି ।

ଆଫ୍ରିକାର କେତେକ ଆଦିବାସୀ ସମାଜରେ ସ୍ତନକୁ ସରୁ ବା ସାନ କରିବା ପାଇଁ ଚିପି ରଖନ୍ତି । ଦକ୍ଷିଣ ଆଫ୍ରିକାର ବାନ୍ଟୁସ୍ (Bantus), ଅଶାନ୍ତି (Ashanti) ସମାଜ, ପୂର୍ବ ଆଫ୍ରିକାର ଗଲାସ (Gallas) ଆଦିବାସୀ ସମାଜ, ଟାଙ୍ଗାନାୟିକାର ବାହୁତୁ (Bahutu) ସମାଜରେ, ବୁସ୍ ସମାଜରେ, ଫ୍ରେଞ୍ଚ-କୋଚିନ-ଚିନାରେ (French-Cochin-China) ମଧ୍ୟ ଏହିପରି କରିଥାନ୍ତି ।

ସିରକେସିଅନ (Circasian) ସମାଜରେ ୧୦ ବା ୧୨ ବର୍ଷ ବୟସର ବାଳକାମାନଙ୍କୁ ବୁକଠାରୁ ନିତମ୍ବ ପର୍ଯ୍ୟନ୍ତ ଗୋଟିଏ ଚମଡ଼ା ଆବରଣ ପୂରମାତ୍ରାରେ ଦେଇ ସିଲେଇ କରିଦେଇଥାନ୍ତି । ଧନୀ ଘରର ବାଳିକା ହୋଇଥିଲେ ସିଲାଇଟା ସୁନା ବା ରୂପା ତାରରେ ହୋଇଥାଏ । ଏହି ଚମଡ଼ା ଆବରଣ ବିବାହ ପର୍ଯ୍ୟନ୍ତ ସେହିପରି ଦେହରେ ରହିଥାଏ । ବିବାହର ମଧୁଶଯ୍ୟା ରାତିରେ ସ୍ୱାମୀ ତାହାର ଖଣ୍ଡା ବା ଛୁରୀରେ ଶରୀରର ଏହି ଚମଡ଼ା ଆବରଣଟିକୁ କାଟି ବାହାର କରେ । ଚମଡ଼ା ଆବରଣଟିକୁ କାଟି ବାହାର କରିଦେଲା ପରେ ଯୁବତୀର ସ୍ତନ ଦୁଇଟି ଖୁବ୍ ଶୀଘ୍ର ବୃଦ୍ଧି ହୁଏ ।

ନିଉଗିନି (New Guinea) ର କେଇ (Kai) ସମାଜରେ ଏକରକମ ପିମ୍ପୁଡ଼ି ସଂଗ୍ରହ କରାଯାଏ । ପିମ୍ପୁଡ଼ିଗୁଡ଼ିକର ମୁଣ୍ଡ ଛିଣ୍ଡାଇ ସ୍ତନରେ ଘଷନ୍ତି । ପିମ୍ପୁଡ଼ି ମୁଣ୍ଡର ରସ ଲାଗି ସ୍ତନ ଫୁଲିଯାଏ । ଯୁବତୀର ସ୍ତନ ଶୀଘ୍ର ଫୁଲି ଉଠିବା ପାଇଁ ଏହିପରି କରିଥାନ୍ତି ।

ଆବସିନିଆର ନାରୀମାନେ ସ୍ତନରେ ମହୁମାଛିର ଦଂଶନ ନେଇ ତାହାର ଆକାର ବୃଦ୍ଧି କରନ୍ତି ବୋଲି ଇ. ନିଉମେନ (E. Neuman) କହନ୍ତି ।

ନିଆସ ଦ୍ୱୀପ (Island of Nias) ର ନାରୀମାନଙ୍କ ସ୍ତନ ସୁଗଠିତ, ଉନ୍ନତ (erect) ଏବଂ ସ୍ତନାଗ୍ର ସ୍ଥୂଳ ଓ କାଳିଆ । ଉଗନ୍ଦା କଙ୍ଗୋ ଏବଂ ପଶ୍ଚିମ ଆଫ୍ରିକାର ଆଦିବାସୀ ସମାଜରେ ମାଂସଳ ଓ ଝୁଲୁଥିବା ସ୍ତନକୁ ବିଶେଷ ପସନ୍ଦ କରନ୍ତି । ସେହେତୁ ଏହି ଆକାର ଦେବା ନିମନ୍ତେ କମ୍ ବୟସରୁ ସ୍ତନକୁ ତଳକୁ ଝୁଲାଇ ବାନ୍ଧି ଦିଅନ୍ତି ।

୧୬ଶ ଓ ୧୭ଶ ଶତାବ୍ଦୀରେ ସ୍ପେନର ଯୁବତୀମାନେ ସୀସାର ପଟା ଛାତିରେ ବାନ୍ଧି ସ୍ତନର ବୃଦ୍ଧି ହେବା ବନ୍ଦ କରୁଥିଲେ । ସେତେବେଳେ ସ୍ତନ ବାହାରକୁ ଦିଶିବା ଅସୁନ୍ଦର ବୋଲି ସମାଜରେ ଧରୁଥିଲେ ।

ଅନେକ ସମାଜରେ ନାରୀ ସ୍ତନର ଆକାରପ୍ରକାର ସମାଜର ପ୍ରଥା ନେଇ କାର୍ଯ୍ୟ କରିଥାଏ । ସ୍ଲାଭିକ ଜାତିର (Slavic race) ରେ ନାରୀମାନଙ୍କ ସ୍ତନ ସାଧାରଣତଃ ଆକାରରେ ବଡ଼ । ଇଂଲଣ୍ଡ ଓ ଉତ୍ତର

ଆମେରିକାର ନାରୀମାନଙ୍କ ସ୍ତନ ସ୍ଲାଭିକ୍ ଜାତିର ନାରୀମାନଙ୍କ ଅନୁପାତରେ ଶ୍ରେଷ୍ଠ । ଏପରି କି ଇଂଲଣ୍ଡ ଓ ଉତ୍ତର ଆମେରିକାର ନାରୀମାନଙ୍କ ସ୍ତନ ଗୁଡ଼ିକରୁ ସାମାନ୍ୟ ପଦାକୁ ବାହାରେ ।

କାଫିର ସମାଜର ସାମାଜିକ ପ୍ରଥା ଅନୁଯାୟୀ ବାଳିକା ୭ ବା ୮ ବର୍ଷ ବୟସର ହେଲେ ସ୍ତନ ପ୍ରତି ସେମାନେ ଦୃଷ୍ଟି ଦେଇଥାନ୍ତି । ବାଳିକାମାନଙ୍କର ଏହି ବୟସରେ ଗୁଡ଼ିରେ କୌଣସି ରକମର ତେଲରେ କେତେକ ରକମର ଚେରମୂଳ ମିଶାଇ ଆଙ୍ଗୁଠି ଟିପ ସାହାଯ୍ୟରେ ମାଲିସ କରାଯାଏ । ଏହିପରି ମାଲିସ କରାଯାଇ ସ୍ତନର ମୁଣ୍ଡିକୁ ପଦାକୁ ବାହାର କରିଦିଅନ୍ତି । ପ୍ରତିଦିନ ସେମାନଙ୍କ ସ୍ତନ ଦୁଇଟିକୁ ଟାଣିବା ଫଳରେ ସେହି ଦୁଇଟି ସରୁ ଓ ଲମ୍ବାଳିଆ ହୋଇଆସେ । କୌଣସି ନିର୍ଦ୍ଦିଷ୍ଟ ଆକାରରେ ପହଞ୍ଚିଲେ ତାହାକୁ କୌଣସି ଗଛ ଛେଲିର ପଟି ଦେଇ ଭଲଭାବେ ବାନ୍ଧିଦିଅନ୍ତି । ଫଳରେ ସ୍ତନର ଆକାର ଆଉ ବୃଦ୍ଧି ନ ହୋଇ ସେହି ଆକାରରେ ରହେ, ଅର୍ଥାତ୍ ଆକାର ଆଉ ବୃଦ୍ଧି ନ ପାଇ ଲମ୍ବା ଓ ସରୁ ନଳି ପରି ଝୁଲିରହେ ଓ ସ୍ତନାଗ୍ରଟି ଭଲଭାବେ ଦିଶୁଥାଏ ।

ବେଶୁସ ଆଦିବାସୀ ସମାଜରେ (Basutos) ନାରୀମାନଙ୍କ ସ୍ତନ ଦୁଇଟି ଲମ୍ବା ଓ ସରୁ ନଳୀ ପରି ରହିଥିବା ଯୋଗୁଁ ସେମାନେ ଶିଶୁମାନଙ୍କୁ ପିଠିରେ ବାନ୍ଧି ବୋହିନେବାବେଳେ କାଖତଳ ଦେଇ ସ୍ତନକୁ ଶିଶୁର ମୁହଁକୁ ବଢ଼େଇ ଦେଇଥାନ୍ତି । ଶିଶୁକୁ ଏହି ରକମ ସ୍ତନ୍ୟଦାନର ସୁବିଧା ପାଇଁ ସ୍ତନ ଦୁଇଟିକୁ ଲମ୍ବା କରିବା ନିମନ୍ତେ ଚେଷ୍ଟାକରିଥାନ୍ତି ।

କାଫିର ଯୁବତୀମାନଙ୍କର ସ୍ତନ ପ୍ରଥମ ଅବସ୍ଥାରେ ଯେତେ ସୁନ୍ଦର ହେଲେ ମଧ୍ୟ ପ୍ରଥମ ପ୍ରସବ ପରେ ପୂର୍ବର ଆକାର ନ ରହି ଦୁଇଟି ଲମ୍ବା ନଳୀ ପରି ଓହଳିଯାଏ ।

ପରସିଆ ଦେଶରେ ନାରୀମାନଙ୍କ ସ୍ତନ ସାଧାରଣତଃ ଶ୍ରେଷ୍ଠ ଦେଖାଯାଏ । କେତୋଟି ସନ୍ତାନ ପ୍ରସବ କରିବା ପରେ ସ୍ତନ ଦୁଇଟି ବୃଦ୍ଧି-ହୁଏ । ସ୍ତନର ଆକାର ଶ୍ରେଷ୍ଠ ବା ଚପିହୋଇ ରହିଲେ ଦୁଧ ଖାଇବାରେ ଶିଶୁକୁ ସୁବିଧା ରହେ ନାହିଁ । ଏହାର ସୁବିଧା କରିବା ନିମନ୍ତେ କେତେକ

ସମାଜରେ କୁକୁରଛୁଆଙ୍କୁ ନାରୀମାନେ ଦୁଧ ଖୁଆଉଥାନ୍ତି । କୁକୁରଛୁଆ ଦୁଧ ଖାଇବାବେଳେ ସ୍ତନକୁ ଟାଣି ଟାଣି ବଡ଼ କରିଦିଏ ।

ସ୍ୱାସ୍ଥ୍ୟଦୃଷ୍ଟିରୁ ସ୍ତନ ଦୁଇଟି ଭଲଭାବେ ଓ ଠିକ୍‌ଭାବେ ବୃଦ୍ଧି ପାଇବା ଉଚିତ । ଯାହା ଦ୍ୱାରା ଶିଶୁ ଭଲଭାବେ ଖାଦ୍ୟ ପାଇ ପାରିବ । ଅଙ୍ଗ-ଆବରଣ ବା ବେଶଭୂଷାର ସୌଖିନ ବା ଫେସନ୍ ନିମନ୍ତେ ଏପରି ବେଶ ପିନ୍ଧିବ ନାହିଁ ଯଦ୍ଦ୍ୱାରା ସ୍ତନ ଚାପିହୋଇ ରହି ବୃଦ୍ଧି ହେବା ନିମନ୍ତେ ସୁବିଧା ରହିବ ନାହିଁ ।

ସ୍ତନର ସୌନ୍ଦର୍ଯ୍ୟ ନିମନ୍ତେ ତାହା ଉପରେ ଚିତା କୁଟାଇବା ଆଦିବାସୀ ସମାଜରେ ବହୁଳ ଭାବେ ଦେଖାଯାଏ । କେତେକ ଆଦିବାସୀ ସମାଜରେ ନାରୀମାନେ ସ୍ତନରେ ବଳା ଲଗାଇଥାନ୍ତି । ୧୯ଶ ଶତାବ୍ଦୀରେ ଇଂରେଜ ଓ ଫ୍ରାନ୍‌ସର ନାରୀମାନେ ମଧ୍ୟ ସ୍ତନରେ ବଳା ପିନ୍ଧୁଥିଲେ । ନାକ ଓ କାନରେ ଯେପରି ଫୋଡ଼ି କରି ବଳା ବା ଗୁଣା ପିନ୍ଧାଯାଏ ସେହିପରି ସ୍ତନାଗ୍ର ବା ସ୍ତନର ମୁଣ୍ଡିରେ କଣା କରି ସେହି କଣାରେ ସୁନାର ବଳା ଲଗାଉଥାନ୍ତି । ଏହି ସୁନାର ବଳାରେ ନାନା ରକମର ପଥର ବସାଯାଇଥାଏ । ଇଟାଲି, ଇଜିପ୍ଟ ଓ ସ୍ପେନ ଦେଶମାନଙ୍କରେ ମଧ୍ୟ ନାରୀ-ମାନେ ସ୍ତନବଳା ଲଗାଉଥିବା ସେହି ଦେଶମାନଙ୍କର ସାହିତ୍ୟରୁ ମିଳେ ।

ଆଉ କେତେକ ନାରୀ ଗୋଟିଏ ସ୍ତନରୁ ଅନ୍ୟ ସ୍ତନ ପର୍ଯ୍ୟନ୍ତ ସୁନାର ଚେନ ଲଗାଉଥିଲେ । ଚେନର ଦୁଇପଟର ଶେଷରେ ଆଙ୍କୁଡ଼ା ରହେ । ଏହି ଚେନଟି ଦୁଇ ସ୍ତନରେ କରାଯାଇଥିବା କଣାରେ ଲଟକେଇ ଦିଆଯାଉଥାଏ । ସ୍ତନଯୁଗଳରେ ଚେନ ଲଟକାଇବା ଏହି ଯୁଗରେ ମଧ୍ୟ ଟ୍ୟୁନିସ (Tunis) ଏବଂ ଗ୍ରୀକ୍ ଆର୍ଚିପିଲେଗୋରେ (Greek Archipelago) ଦେଖିବାକୁ ମିଳେ ।

୧୯ ଶ ଶତାବ୍ଦୀରେ ଇଂଲଣ୍ଡ ଓ ଫ୍ରାନ୍‌ସର କେତେକ ନାରୀ ସ୍ତନବଳା ହଲିବା ବା ସାମାନ୍ୟ ଘଷିହେବା ଦ୍ୱାରା ଉତ୍ତେଜନା ସୃଷ୍ଟି ହେଉଥିବା ଯୋଗୁଁ ସ୍ତନବଳା ଲଗାଉଥିଲେ । ଯୌନବିତ୍ ଇଭାନ ବ୍ଲଚ (Ivan Bloch) ଙ୍କ ମତରେ ଇଜିପ୍ଟ, ଇଟାଲି ଓ ସ୍ପେନର ପ୍ରାଚୀନ ସାହିତ୍ୟରୁ ସେହି ଦେଶମାନଙ୍କରେ ସ୍ତନବନ୍ଧାର ବ୍ୟବହାର ହେଉଥିବା ଜଣାଯାଏ । କିନ୍ତୁ ପରେ ନାରୀମାନଙ୍କୁ ଦଣ୍ଡ ଦେବା ନିମନ୍ତେ

ସ୍ତନବନ୍ଧାର ସୁବିଧା ହିଆଗଲା । ନାରୀମାନଙ୍କ ସ୍ତନାଗ୍ର ବା ସ୍ତନର ଦେହରେ ଛାଞ୍ଚିଲା କଣ୍ଟା ସାହାଯ୍ୟରେ କଣା କରାଯାଉଥିଲା । ଏହା ପରେ ଗୋଟିଏ ଲୁହାର ବଳା ସେଥିରେ ଲଗାଇ ଦେଉଥିଲେ । କୋଡ଼ିଏ ବର୍ଷ ବୟସ ପର୍ଯ୍ୟନ୍ତ ବାଳିକାମାନଙ୍କୁ ଦଣ୍ଡ ଦେବାକୁ ହେଲେ ତାହାକୁ ଲଙ୍ଗଳା କରି ତାହାର ସ୍ତନବନ୍ଧାକୁ ଗୋଟିଏ ଖୁଣ୍ଟରେ ବାନ୍ଧି ଦେଉଥିଲେ । ପରେ ଗୋଟିଏ ଗୁଡ଼ିଆ ବା ବାଡ଼ିରେ ତାହାକୁ ପିଟୁଥିଲେ । ବୋଧହୁଏ ଏହି କାରଣରୁ ସ୍ତନବନ୍ଧାର ବ୍ୟବହାର କମିଗଲା ।

ଆମେଜନ୍ ସମାଜ ନାରୀପ୍ରଧାନ । ସେଠାର ନାରୀମାନେ ଯୁଦ୍ଧ-କୌଶଳରେ ନିପୁଣ । ସେମାନଙ୍କର ପ୍ରାଚୀନ ପୁରାଣରୁ ଜଣାଯାଏ ଯେ ଏହି ସମାଜର ନାରୀମାନେ ଅନେକ ଯୁଦ୍ଧ ଜୟକରିଥିଲେ । ଅନ୍ୟ ସମାଜର ପୁରୁଷମାନଙ୍କ ସହିତ ଯୌନସଙ୍ଗମ କରି ଏହି ସମାଜର ନାରୀମାନେ ସନ୍ତାନ ପ୍ରସବ କରୁଥିଲେ । କିନ୍ତୁ ପ୍ରସବଜାତ ସନ୍ତାନ ପୁଅ ହେଲେ ତାହାକୁ ନାଶ କରିଦେଉଥିଲେ । ହିପୋକ୍ରେଟସ (Hippocrates) କହନ୍ତି ଯେ ଏହି ସମାଜର ନାରୀମାନେ ବିଶେଷ ଯୌନାସକ୍ତ ନୁହନ୍ତି । ସେମାନେ ତତଲା ପିତଳର ଥାଳି ବା ପ୍ଲେଟ ବ୍ୟବହାର କରି ଡାହାଣ ସ୍ତନକୁ ନଷ୍ଟ କରିଦେଉଥିଲେ । ସେମାନେ ଭାବୁଥିଲେ ଯେ ଡାହାଣ ସ୍ତନ ନଷ୍ଟ ହୋଇଗଲେ ଡାହାଣହାତ ଓ କାନ୍ଧକୁ ବହୁତ ରକ୍ତ ପ୍ରବାହିତ କରି ତାହାକୁ ଅଧିକ ଶକ୍ତି ଯୋଗାଇବ ଯାହା କି ଯୁଦ୍ଧବେଳେ ଶକ୍ତି ଦେବ ।

ଟାଙ୍ଗାନାଇକା ହ୍ରଦର ଆକାଲଙ୍ଗା (Akalungas) ଆଦିବାସୀ ସମାଜରେ ଯେଉଁ ଯୁବତୀ ବା ନାରୀମାନେ ସନ୍ତାନ ପ୍ରସବ କରିବାକୁ ଉପଯୁକ୍ତ ନ ଥିଲେ ସେମାନେ ନିଜ ସ୍ତନକୁ ନଷ୍ଟ କରିଦେଉଥିଲେ । ସେମାନେ ଭାବୁଥିଲେ ଯେ ଏହା ଫଳରେ ସେହି ନାରୀମାନେ ଶିଶୁମାନଙ୍କ ଲାଳନପାଳନ କରିପାରିବେ ନାହିଁ । ୧୯ଶ ଶତାବ୍ଦୀରେ ୟୁରୋପର ଧର୍ମାନ୍ଧ ଖ୍ରୀଷ୍ଟିୟାନମାନେ ମୁକ୍ତି ପାଇବା ନିମନ୍ତେ ନିଜ ଶରୀରରେ ପୀଡ଼ା ପ୍ରୟୋଗ କରୁଥିଲେ ଏବଂ କେତେକ ନିଜର ଜନନେନ୍ଦ୍ରିୟକୁ ମଧ୍ୟ ନଷ୍ଟ କରିଦେଉଥିଲେ । ପେଲିକାନ (E. V. Pelikan) ଓ କୋଚ (W. Koch) କହିଛନ୍ତି ଯେ ସାତବର୍ଷ ଠାରୁ ଦଶ ବର୍ଷ ବୟସ ବାଳିକାମାନଙ୍କର ସ୍ତନାଗ୍ର ବା ସ୍ତନମୁଣ୍ଡିକୁ କଟାଯାଉଥିଲା ।

ପ୍ରାଚୀନ ୟୁରୋପରେ ଯେଉଁ ଦେଶ ଯୁଦ୍ଧରେ ଜୟୀ ହେଉଥିଲା ବିଜିତ ଦେଶର ରମଣୀମାନଙ୍କ ଉପରେ ଅତ୍ୟାଚାର କରୁଥିଲା । ଏହି ଅତ୍ୟାଚାରମାନଙ୍କ ମଧ୍ୟରେ ନାରୀର ସ୍ତନ ଉପରେ ଭୀଷଣ ରକମ ଆଘାତ କରିବା ଅନ୍ୟତମ । କରନେଲିଆ (Cornelia) ଦେଶକୁ ହୁନମାନେ (Huns) ମାନେ ଯୁଦ୍ଧରେ ପରାସ୍ତ କରିବା ପରେ ଏହିପରି କରିଥିଲେ । ମଧ୍ୟ ଯୁଗରେ ୟୁହୁଦ ନାରୀମାନଙ୍କୁ ଏହିପରି ଅତ୍ୟାଚାରିତ କରାଯାଇଥିଲା । ୧୫ ଶ ଶତାବ୍ଦୀରେ ୟୁହୁଦ ନାରୀମାନଙ୍କ ସ୍ତନରେ ଦଉଡ଼ି ବାନ୍ଧି ଗଛରେ ଝୁଲାଇ ଦେଉଥିବା ଗୋଟିଏ ପ୍ରାଚୀନ ପୋଥିରେ ଲେଖାଅଛି ।

ୟୁହୁଦମାନଙ୍କ ଶାସ୍ତ୍ରରେ ସ୍ତନ ଦୁଇଟି ନାରୀର ସୌନ୍ଦର୍ଯ୍ୟର ନିଦର୍ଶନ ବୋଲି କୁହାଯାଏ । ପ୍ରାଚୀନ ରୋମ ରାଜ୍ୟରେ ପୁରୁଷମାନେ ନିଜ ପ୍ରେମିକା ସ୍ତନର ଅନୁକରଣରେ ବା ସ୍ତନର ଛାଞ୍ଚ ନେଇ ସୁନାରେ ନିଜର ସୁରାପାତ୍ରକୁ ତିଆରି କରୁଥିଲେ । ଶକ୍ତି ବା ମାତୃପୂଜାରେ ନାରୀର ସ୍ତନକୁ ନାନା ଦେଶରେ ପୂଜା କରାଯାଏ । ଆରବ ସମାଜରେ କୌଣସି ବ୍ୟକ୍ତି ଶତ୍ରୁଦ୍ୱାରା ଆକ୍ରାନ୍ତ ହେଲେ ସେ ଦଉଡ଼ିଯାଇ ଯେକୌଣସି ନିକଟସ୍ଥ ତମ୍ବୁରେ ପଶିଯାଏ ଓ ତମ୍ବୁରେ ବାସ କରୁଥିବା ମହିଳାର ନଗ୍ନ ସ୍ତନରେ ଚୁମ୍ବନ ଦେଲେ ନାରୀ ତାହାକୁ ପୁଅ ପରି ମନେକରେ । ତେଣୁ ତାହାକୁ ସେହି ଗୋଷ୍ଠୀର ଲୋକ ବୋଲି ଭାବି ଆଶ୍ରୟ ଦେଇ ପାଳନ୍ତି ।

ଆଜିକାଲି ଯୁଗରେ ନାରୀମାନେ ସ୍ତନର ସୌନ୍ଦର୍ଯ୍ୟ ପ୍ରତି ବହୁତ ଦୃଷ୍ଟି ଦେଉଛନ୍ତି । ସ୍ତନ ଦୁଇଟି ସୁଦୃଢ଼ ଓ ଉନ୍ନତ ନ ଥିଲେ ଶିକ୍ଷିତ ସମାଜର ନାରୀ ନିଜକୁ ଅସୁନ୍ଦର ମନେକରେ । ବେଶଭୂଷାବେଳେ ସ୍ତନକୁ ଠିକ ଆକାର ଦେବା ନିମନ୍ତେ ସେ ନାନା ଉପାୟର ଆଶ୍ରୟ ନିଏ । ଏପରି କି ଯେଉଁଠାରେ ସ୍ତନଯୁଗଳ ଅନୁନ୍ନତ ବା ଆକାରହୀନ, ରବରନିର୍ମିତ ନକଲି ସ୍ତନର ବ୍ୟବହାର ମଧ୍ୟ ଦେଖାଯାଏ ।

